* କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ କୃତ *

# ବୈଦେହୀଶ ବିଳାସ



କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ବିରଚିତ

## ସଚିତ୍ର




## ପ୍ରଥମ ଖଣ୍ଡ

( ବିଜୟବୈଜୟନ୍ତୀ ଟୀକା ସହ )

ସମ୍ପାଦକ ଓ ଟୀକାକାର :—
ଶ୍ରୀ ଉଦୟନାଥ ଷଡ଼ଙ୍ଗୀ

ପ୍ରକାଶକ :—
ନାରାୟଣ-ପୁସ୍ତକାଳୟ
ଶ୍ରୀ ନାରାୟଣ ଚନ୍ଦ୍ର ଦାସ
ପୋ: ବୁଧମାର୍କେଟ, କଟକ

* ଦ୍ୱିତୀୟ ସଂସ୍କରଣ *

ମୂଲ୍ୟ ଟ ୬୯ ଦୁଇଟଙ୍କା ମାତ୍ର

# ଭୂମିକା

---

ମହାକାବ୍ୟ 'ବୈଦେହୀଶବିଳାସ' ଅମର କବି ଉପେନ୍ଦ୍ର ଭଞ୍ଜଙ୍କର ଶ୍ରେଷ୍ଠ ଅବଦାନ । ଭାବର ଗାମ୍ଭୀର୍ଯ୍ୟରେ, ଭାଷାର ମାଧୁର୍ଯ୍ୟରେ, ଛନ୍ଦର ଲାଳିତ୍ୟରେ, ଅପରୂପ ଶବ୍ଦ ବିନ୍ୟାସ ଓ ଅଳଙ୍କାରିକ ଶୈଳୀରେ ଏହା ପ୍ରାଚୀନ ଉତ୍କଳ ସାହିତ୍ୟର ଏକ ଅମୂଲ୍ୟରତ୍ନ । ଏକା ଉତ୍କଳ ସାହିତ୍ୟ କାହିଁକି, ବିଶ୍ୱ ସାହିତ୍ୟରେ ଯେ ଏହାର ସ୍ଥାନ ଅତି ଉଚ୍ଚରେ;—ଏହା ସମସ୍ତେ ମୁକ୍ତ କଣ୍ଠରେ ସ୍ୱୀକାର କରିବେ ।

କବିଙ୍କର ଦୁର୍ଭାଗ୍ୟ ଯେ, ସେ ଆମ ଉତ୍କଳ ପ୍ରଦେଶରେ ଜନ୍ମ ଗ୍ରହଣ କରିଥିଲେ । ପାଶ୍ଚାତ୍ୟ ଦେଶ ତାଙ୍କର ଜନ୍ମଭୂମି ହୋଇଥିଲେ ସେ ବର୍ତ୍ତମାନ ଯେ କୌଣସି ବିଶ୍ୱବିଖ୍ୟାତ କବିଙ୍କର ସମାନ ଆସନରେ ପୂଜା ପାଉଥାନ୍ତେ;—ଏହା ଗତ 'ଝଙ୍କାର' 'ଇନ୍ଦ୍ରଧନୁ' କଳହ ସମୟରେ ତାଙ୍କର ନିତାନ୍ତ ଶତ୍ରୁପକ୍ଷ ମଧ୍ୟ ସ୍ୱୀକାର କରି ଯାଇ ଅଛନ୍ତି । ଆଧୁନିକ ତଥାକଥିତ ଶିକ୍ଷିତ ତାଙ୍କର କେତେକ ଲେଖାରେ ଅଶ୍ଳୀଳତାର ଦୋଷ ଦେଖାଇଥାନ୍ତି, ମାତ୍ର 'ବୈଦେହୀଶ-ବିଳାସ' ଏ ଦୋଷରୁ ଏକାବେଳକେ ମୁକ୍ତ ।

ଏହି କାବ୍ୟରେ ଛନ୍ଦମାନ ଅନେକ ସ୍ଥଳରେ ସହଜବୋଧ୍ୟ ନ ହେଲେ ମଧ୍ୟ ଗାଁ ଗଣ୍ଡାର ଅର୍ଦ୍ଧଶିକ୍ଷିତ, ଅଶିକ୍ଷିତଙ୍କ ମନକୁ ଏପରି ଅଧିକାର କରି ରଖିଛି ଯେ, ଗାଈଜଗୁଆଳ ପିଲା ମୁଖରୁ ବି 'ଶତଳକୁ ଆଲିଙ୍ଗନ' ଛନ୍ଦ କବିତ ସମସ୍ୱରେ ଶୁଣାଯାଏ; ଛନ୍ଦମାନଙ୍କର ମନ ମୋହନ କରିବାର କ୍ଷମତା ଏଥିରୁ ବେଶ୍ ସୂଚିତ ହେଉଅଛି ।

ଏହା ପୂର୍ବରୁ ସଟୀକ ବୈଦେହୀଶବିଳାସ କେତେଥର ପ୍ରକାଶିତ ହୋଇଥିଲା, ମାତ୍ର ତାହାର ଟୀକା ପୂର୍ଣ୍ଣତା ପ୍ରାପ୍ତ ହୁଏ ବା ଛନ୍ଦର ମାଧୁର୍ଯ୍ୟ ଟିକେ ରଖାଯାଇ ନାହିଁ । ଅନେକ ସ୍ଥାନରେ ମଧ୍ୟ ଛନ୍ଦର ଭାବକୁ ଅଯଥା ପୀଡ଼ିତ ଓ ବିକଳାଙ୍ଗ କରାଯାଇଅଛି । ଏହି ସବୁ ଅଭାବ ଦେଖି, ଉତ୍କଳ-ସାହିତ୍ୟରେ ଧୁରୀଣ ନ ହୋଇଥିଲେ ମଧ୍ୟ ଏହି କାବ୍ୟର ଯଥାସାଧ୍ୟପୂର୍ଣ୍ଣ ଯେତେଦୂର ସମ୍ଭବ ଦୋଷ ରହିତ ଟୀକା କରିବାକୁ ମୁଁ ଚେଷ୍ଟା କରିଛି । ଅଳ୍ପ ମଧ୍ୟ ଏହାକୁ ଚିତ୍ତରଞ୍ଜନ

ଓ ସର୍ବାଙ୍ଗସୁନ୍ଦର କରିବା ପାଇଁ କେତେଗୋଟି ମନୋହର ଛବି ଏବଂ ଗ୍ରନ୍ଥ ନିହିତ ଚରିତ୍ରମାନଙ୍କର ସୁଗମ ପରିଚୟ ଦେବା ପାଇଁ ଚିତ୍ରର ବ୍ଲକ୍‌ସମାନ ଏଥିରେ ଦିଆଯାଇଛି । ଏହାଦ୍ୱାରା ଏ ମହାକାବ୍ୟର ଉପାଦେୟତା ଯେ କେତେ ବଢି ଯାଇଛି, ତା ପାଠକମାନେ ବିବେଚନା କରିବେ ।

ପରିଶେଷରେ ନିବେଦନ, ଯେତେପ୍ରକାର ଚେଷ୍ଟା ଓ ପରିଶ୍ରମ କରାଗଲେ ମଧ୍ୟ 'ବୈଦେହୀଶବିଳାସ' ପରି ମହାକାବ୍ୟର ଟୀକା କରିବାରେ ଯେ ତ୍ରୁଟି ନ ରହିବ, ଏହା ଦୃଢ଼ତାର ସହିତ କୁହାଯାଇ ନ ପାରେ । ତେଣୁ ଏଥିରେ ସ୍ଥାନେ ସ୍ଥାନେ ଦୋଷ ରହିଯାଇଥିବା ଅସମ୍ଭବ ନୁହେଁ । ସହୃଦୟ ରସଜ୍ଞ ପାଠକମାନେ ଦୟା କରି ତ୍ରୁଟିମାନ ଦର୍ଶାଇ ଦେଲେ, ଉପଯୁକ୍ତ ବିବେଚିତ ହେଲେ ପରସଂସ୍କରଣରେ ତାହା ସଂଶୋଧନ କରି ନେବି ।

ଶ୍ରୀ ଉଦୟନାଥ ଷଡ଼ଙ୍ଗୀ



# ସୂଚୀପତ୍ର







# ବୈଦେହୀଶବିଳାସ

## ପ୍ରଥମଖଣ୍ଡ

---

### ପ୍ରଥମ ଛାନ୍ଦ

### ରାଗ—ପାହାଡ଼ିଆ କେଦାର

ବନ୍ଦଇ ଦା(ଦ) ନବାନ୍ଧବ ହରି        ଯେ ତମଚକ୍ର ଖଣ୍ଡନକାରୀ
ସଦା କମଳାନନ୍ଦ ବିସ୍ତାରୀ ସ୍ୱଭାବେ ଇନ ଯେ ।

---

୧ମ ପଦ—( ବିଷ୍ଣୁଙ୍କ ପକ୍ଷରେ ) ଦାନବାନ୍ଧବ—ଦଇତ୍ୟର ବନ୍ଧୁ ( ବିଷ୍ଣୁ ) । ତମ—ରାହୁ । ଚକ୍ର ଖଣ୍ଡନ କାରୀ—ଯେ ରାହୁକୁ ଚକ୍ରଦ୍ୱାରା ଛେଦନ କରିଥିଲେ । ( ଅନ୍ୟାର୍ଥ—ଯେ ଶୋକ ସମୂହକୁ ଛେଦନ କରନ୍ତି ) । କମଳାନନ୍ଦ ବିସ୍ତାରୀ—ଯେ ଲକ୍ଷ୍ମୀଙ୍କର ଆନନ୍ଦ ବଢ଼ାନ୍ତି । ଇନ (ଇ = ଲକ୍ଷ୍ମୀ)—ଲକ୍ଷ୍ମୀପତି । ଅନନ୍ତ-ଅଙ୍କ-ବିହାରୀ—ଅନନ୍ତ ନାଗର କୋଳରେ ଯେ ବିହାର କରୁଥାନ୍ତି ।

---

୧ମ ପଦ—( ବିଷ୍ଣୁଙ୍କ ପକ୍ଷରେ ) ଯେଉଁ ଦଇତ୍ୟର ବନ୍ଧୁ ବିଷ୍ଣୁ ରାହୁକୁ ଚକ୍ର ଦ୍ୱାରା ଛେଦନ କରିଥିଲେ ( ଯେ ଶୋକ ସମୂହକୁ ଦୂର କରନ୍ତି ବା ଅଜ୍ଞାନତା ବିନାଶ କରନ୍ତି ) ଯେ ଲକ୍ଷ୍ମୀଙ୍କର ଆନନ୍ଦ ବଢ଼ାନ୍ତି, ଯେ ଲକ୍ଷ୍ମୀପତି ( ଶୋକର ଅଧାର ), ଯେ ଅନନ୍ତ ନାଗର କୋଳରେ ବିହାର କରନ୍ତି, ଯାହାର ବାହୁ ପରାକ୍ରମରେ ଅସୁରମାନଙ୍କ ଆନନ୍ଦ

ବନ୍ଧୁ ଅନନ୍ତ-ଅଙ୍କ-ବିହାରୀ          କର ପ୍ରତାପ ଯାର ସଞ୍ଚରି
ନିଶାଚରଙ୍କ ଉଲ୍ଲାସ ହରି ପୂଜେ ସୁମନ ଯେ ।
ବିନତେୟ ଯାହା ଅଗ୍ରତେ ସ୍ଥିତ ଯେ ।
ବଇକୁଣ୍ଠ-ପକ୍ଷଜ-ଲୋକ ତୋଷିତ ଯେ ।

---

କର ପ୍ରତାପ—ବାହୁ ପରାକ୍ରମ । ନିଶାଚରଙ୍କ—ରାକ୍ଷସମାନଙ୍କର । ସୁମନ—ଦେବତା । ବିନତେୟ—ଗରୁଡ଼ । ବଇକୁଣ୍ଠ—ପକ୍ଷଜ ଲୋକ—ବିଷ୍ଣୁଭକ୍ତ ଲୋକ । ଅଖଣ୍ଡିତ ମଣ୍ଡଳେ—ସମସ୍ତ ବ୍ରହ୍ମାଣ୍ଡରେ । ସିଂହ ଭାବରେ—ନୃସିଂହ ଅବତାରରେ । ଭବେ—ସଂସାରରେ । ତରଣୀ—ନୌକା । ମଞ୍ଜୁଳ—ସୁନ୍ଦର । ଗିରି ଉଦୟ—ନୀଳଗିରିରେ ପ୍ରକାଶିତ ।

(ସୂର୍ଯ୍ୟଙ୍କ ପକ୍ଷରେ) ଦିନବାନ୍ଧବ—ଦିନର ବନ୍ଧୁ (ସୂର୍ଯ୍ୟ) । ତମ-ଚକ୍ରଖଣ୍ଡନକାରୀ—ଯେ ଅନ୍ଧାରସବୁକୁ ନାଶ କରନ୍ତି । କମଳାନନ୍ଦ ବିସ୍ତାରି—ପଦ୍ମ ଫୁଲର ଆନନ୍ଦ ବଢ଼ାଇ । ଇନ—ସୂର୍ଯ୍ୟ । ଅନନ୍ତଅଙ୍କ ବିହାରୀ—ଆକାଶ କ୍ରୋଡ଼ରେ ଯେ ବିହାର କରେ । କରପ୍ରତାପ—ତେଜ ପରାକ୍ରମ । ନିଶାଚରଙ୍କ—ପେଚକଙ୍କର । ସୁମନ—ପଣ୍ଡିତ ଲୋକ । ବୈନତେୟ—ଅରୁଣ । ବୈକୁଣ୍ଠପକ୍ଷଜ ଲୋକ—ଇନ୍ଦ୍ର ଯାହାଙ୍କର ସାହାଯ୍ୟକାରୀ । ଅଖଣ୍ଡିତ ମଣ୍ଡଳେ

---

ସ୍ମରଣ ହୋଇଥାଏ, ଯାହାଙ୍କୁ ଦେବତାମାନେ ପୂଜା କରନ୍ତି, ଯାହାଙ୍କ ଅଗ୍ରେ ଗରୁଡ଼ ସର୍ବଦା ଅବସ୍ଥାନ କରିଥାଏ, ଯେ ବିଷ୍ଣୁଭକ୍ତ ଲୋକମାନଙ୍କୁ ତୋଷ କରନ୍ତି, ଯେ ସମସ୍ତ ବ୍ରହ୍ମାଣ୍ଡରେ ପ୍ରକାଶିତ ହୋଇ ଅଛନ୍ତି, ଯେ ନୃସିଂହ ଅବତାରରେ ସମୟରେ ବିହାର କରିଥିଲେ, ଯେ ସଂସାରରୂପ ସାଗରରେ ନୌକା ସ୍ୱରୂପ ଅଟନ୍ତି, ଯେ ନୀଳଗିରିରେ [ ଶ୍ରୀକ୍ଷେତ୍ରରେ ପ୍ରକାଶିତ ହୋଇଅଛନ୍ତି, ସେହି ବିଷ୍ଣୁଙ୍କୁ ବନ୍ଦନା କରେ ।

(ସୂର୍ଯ୍ୟଙ୍କ ପକ୍ଷରେ) ଦିବସର ବନ୍ଧୁ ଯେଉଁ ସୂର୍ଯ୍ୟ ଅନ୍ଧକାର ସମୂହକୁ ନାଶ କରନ୍ତି, ଯେ ସର୍ବଦା ପଦ୍ମର ଆନନ୍ଦ ବଢ଼ାନ୍ତି, ଯେଉଁ ସୂର୍ଯ୍ୟ (ଇନ) ସ୍ୱୀୟ କିରଣରେ ଚତୁର୍ଦ୍ଦିଗକୁ ଉଜ୍ଜ୍ୱଳ କରନ୍ତି, ଯେ ଅନନ୍ତ ଆକାଶ କୋଳରେ ବିହାର କରନ୍ତି, ଯାହାଙ୍କର ତେଜପ୍ରଭାବରେ ପେଚକଙ୍କ ଆନନ୍ଦ ଦୂର ହୁଏ, ପଣ୍ଡିତମାନେ ଯାହାଙ୍କୁ ପୂଜା କରନ୍ତି, ଯାହାଙ୍କ ଆଗରେ ଅରୁଣ ସର୍ବଦା ବିଦ୍ୟମାନ, ଇନ୍ଦ୍ର ଯାହାଙ୍କର ସାହାଯ୍ୟକାରୀ, ଯାହାଙ୍କ ଦର୍ଶନରେ ଲୋକମାନେ ସନ୍ତୋଷ ଲାଭ କରନ୍ତି, ଯେ ପୂର୍ଣ୍ଣ ଗୋଲାକାର ରୂପରେ ବିଦ୍ୟମାନ, ହିମମାସରେ

ଆକାଶ ଅଖଣ୍ଡିତ-ମଣ୍ଡଳେ    ସିଂହସ୍କନ୍ଧରେ ଶୋଭିତ କାଳେ
ଉଦେ ତରଣି ହୋଇ ମଞ୍ଜୁଳେ. ଗିରି ଉଦିତ ଯେ । ୧ ।
ବନ୍ଦିତ ଯେତୁ ଶ୍ୱେତମୂର୍ତ୍ତି    ଶ୍ରୁ(ଶ୍ରୁ)ତି ରଞ୍ଜନକାରକ ପତି,
ହଂସ ହୋଇଣ ଯାହା ପ୍ରଶସ୍ତି ଅଛୁ ପ୍ରକୀର୍ତ୍ତି ଯେ ।
ବିରାଜ ରୂପ ଯାହାର ପୁଣି    ଦ୍ୱିଜଚୟ ଯା ଦର୍ଶନ ଗୁଣି,
ଆତ୍ମଭୂପର ସଂସାରେ ଭଣି କି ଶୁଭ୍ରକୀର୍ତ୍ତି ଯେ ।

---

ପୂର୍ଣ୍ଣ ଗୋଲାକାର ସ୍ୱରୂପରେ । ସିଂହ—ସିଂହ ରାଶିରେ । ସ୍କନ୍ଧରେ—ଶ୍ରେଷ୍ଠ ଜ୍ୟୋତି (ସ୍ୱ-ଜ୍ୟୋତି) । ତରଣି—ସୂର୍ଯ୍ୟ । ଗିରିଉଦିତ—ଉଦୟ ଗିରିରେ ପ୍ରକାଶିତ ।

୨ୟ ପଦ—(ବିଷ୍ଣୁଙ୍କ ପକ୍ଷରେ) ବନ୍ଦିତ—ବନ୍ଦନ କରି । ଶ୍ୱେତମୂର୍ତ୍ତି—ଶ୍ୱେତ ମତ୍ସ୍ୟ ସ୍ୱରୂପ । ଶ୍ରୁତି-ରଞ୍ଜନକାରକ—ବେଦର ମଣ୍ଡନକାରୀ । ହଂସ—ପରମାତ୍ମା । ପ୍ରଶସ୍ତି—ଯଶ, ପ୍ରସିଦ୍ଧ । ବିରାଜ ରୂପ—ବିରାଟ ରୂପ । ଦ୍ୱିଜଚୟ-ବ୍ରାହ୍ମଣ ସମୂହ । ଆତ୍ମଭୂ—ବ୍ରହ୍ମା, କନ୍ଦର୍ପ । ପର—ଶ୍ରେଷ୍ଠ । ବୁଧଜନକ (ଚନ୍ଦ୍ର)-ଶିର ଭୂଷଣ—ଚନ୍ଦ୍ର ଶିରରେ ଭୂଷିତ ଯାହାର ଅର୍ଥାତ ମହାଦେବ । ଦ୍ୱିପ—ହାତୀ । ଧର୍ମ ସ୍ୱରୂପରକ୍ଷୀ—ଧାର୍ମିକର ରକ୍ଷାକର୍ତ୍ତା । କି ସ୍ତୁତି କହୁଁ—ସେଠାରେ କି ସ୍ତୁତି କରିବି ? ଅର୍ଥାତ୍ ସ୍ତୁତି କରି ହେବ ନାହିଁ ।

---

ଯାହାଙ୍କ ତେଜ ଶ୍ରେଷ୍ଠତ୍ୱ ଲଭିଥାଏ, ଯେ ସଂସାରରେ ତରଣି ନାମରେ ପ୍ରସିଦ୍ଧ, ଯେ ପ୍ରତ୍ୟହ ଉଦୟ ପର୍ବତରେ ଉଦିତ ହୁଅନ୍ତି, ସେହି ସୂର୍ଯ୍ୟଦେବଙ୍କୁ ବନ୍ଦନା କରେ ।

୨ୟ ପଦ—(ବିଷ୍ଣୁଙ୍କର ପକ୍ଷରେ) ଯେଉଁ ବିଷ୍ଣୁ ଶ୍ୱେତ ମତ୍ସ୍ୟର ରୂପ ଧାରଣ କରିଥିଲେ, ବେଦରେ ଯେ ପରମାତ୍ମା ବୋଲି ଖ୍ୟାତି ଲାଭ କରିଅଛନ୍ତି, ଯେ ବିରାଟ ରୂପବାନ୍, ବ୍ରାହ୍ମଣମାନେ ଯାହାଙ୍କ ଦର୍ଶନ ପାଇବା ପାଇଁ ସର୍ବଦା ବ୍ୟଗ୍ର ହେଉଛନ୍ତି, ଯେ କନ୍ଦର୍ପଠାରୁ ବେଶି ରୂପବାନ୍ (ଅଥବା ବ୍ରହ୍ମାଙ୍କଠାରୁ ଉତ୍କୃଷ୍ଟ), (ଯାହାଙ୍କର କୀର୍ତ୍ତି ସମୂହ ଶୁଭ୍ରବର୍ଣ୍ଣ, ମହାଦେବ ଯାହାଙ୍କ ସହିତ ଏକାନ୍ତ ସ୍ଥଳରେ କଥାବାର୍ତ୍ତା କରନ୍ତି, ଯାହାଙ୍କଠାରୁ ବ୍ରହ୍ମାଣ୍ଡରେ ବଳବାନ୍ ଆଉ କେହି ନାହାନ୍ତି, ଯେ ଗଜକୁ ଆନନ୍ଦ ପ୍ରଦାନ କରିଥିଲେ (କୁମ୍ଭୀର ମୁଖରୁ ରକ୍ଷା କରି), ଯେ ଧାର୍ମିକର ରକ୍ଷାକର୍ତ୍ତା, ଏପରି ଯେ ବିଷ୍ଣୁ, ତାଙ୍କୁ କେଉଁ ବାକ୍ୟରେ ବା ସ୍ତୁତି କରିବି ?

ବୁଧଜନକ-ଶିରଭୂଷଣ ଯେହୁ ଯେ ।
ବିନୟରୁ ପେ ଅନ ବାଣୀ ନ କହୁ ଯେ ।
ବଳ ଯାହାକୁ ସର୍ବଦା ନାହିଁ ଦ୍ୱୀ(ଦ୍ୱି)ପ ପ୍ରସନ୍ନ କରତା ସେହି,
ପୁନଚ ଧର୍ମ ସ୍ୱରୂପଗ୍ରାହୀ କି ସ୍ତୁତି ଚହୁଁ ଯେ । ୨ ।
ବିଷ୍ଟରଶ୍ରବା ବ୍ରହ୍ମାଣ୍ଡେଶ୍ୱର ପରମ ପଦ ଭଜିଲ ନର,
ଲଭେ ଏ ସେବନ ଗ୍ରନ୍ଥ ଅଦ୍ୟର ଭାବିତ ତାଙ୍କୁ ଯେ ।
ବଂଶ ଯହାରଠାରୁ ଉତ୍ପତ୍ତି କବି ବର୍ଗରେ ସେ ଦେବେ ସ୍ତୁତି,
ବିଧାନ କରୁ ଅଛ ସୁମତି ଅଣ ମନକୁ ଯେ ।

---

(ସୂର୍ଯ୍ୟଙ୍କ ପକ୍ଷରେ ) ଲୋହିତ—ରକ୍ତବର୍ଣ୍ଣ । ହଠ—କାଠ । ହଂସ—ସୂର୍ଯ୍ୟଙ୍କ ଅପର ନାମ । ଦ୍ୱିଜ—ପକ୍ଷୀ । ଚକ୍ର—ଚକ୍ରବାକ ( ଚକୁଆ ) ବୁଧଜନ=ପଣ୍ଡିତବର୍ଗ । କ-ଭୂଷଣ ଶିରୋମଣି । ଦ୍ୱୀପପ୍ରସନ୍ନକରତା— ସପ୍ତ ଦ୍ୱୀପର ଉଜ୍ଜ୍ୱଳକର୍ତ୍ତା । ଧର୍ମ ସ୍ୱରୂପ ଗ୍ରାହୀ-ଯେ ଧର୍ମ ନାମରେ ଅଭିହିତ ।

ଅନ୍ୟ ପକ୍ଷ—ବିଷ୍ଟରଶ୍ରବା—( ବିଷ୍ଟର—ଲୋମକୂପ, ଶ୍ରବା—ଶ୍ରବଣ ଯାହାର ) ବିଷ୍ଣୁ । ବ୍ରହ୍ମାଣ୍ଡେଶ୍ୱର—ଜଗତ୍‌କର୍ତ୍ତା । ପରମପଦ—ବୈକୁଣ୍ଠ । ସୁମତି—ପଣ୍ଡିତବର୍ଗ । ଶ୍ଳେଷ—ଦୁଇ ଅର୍ଥ ପ୍ରକାଶକ ଅଳଙ୍କାର ।

---

(ସୂର୍ଯ୍ୟଙ୍କ ପକ୍ଷରେ) ଯେଉଁ ସୂର୍ଯ୍ୟ ରକ୍ତବର୍ଣ୍ଣ ମୂର୍ତ୍ତି ଧାରଣ କରନ୍ତି, ଯେ ମାର୍ଗର ଶୋଭା ବଢ଼ାନ୍ତି, ଯାହାଙ୍କର ନାମ ହଂସ, ଯାହାଙ୍କର ବିଷ୍ଟମାନ ରୂପକୁ ଦର୍ଶନ କରିବା ପାଇଁ ଚକ୍ରବାକ ସର୍ବଦା ଗୁଣି ହେଉଥାଏ, ଯେହୁ ଶ୍ରେଷ୍ଠ ବ୍ରହ୍ମ ବୋଲି ଖ୍ୟାତ, ଯାହାଙ୍କର କିରଣ ଅତ୍ୟନ୍ତ ଶୁଭ୍ର, ପଣ୍ଡିତମାନେ ଯାହାଙ୍କୁ ସର୍ବଦା ବିନୟ କହନ୍ତି, ଯାହାଙ୍କର ତେଜକୁ କଳି ଶ୍ରେଷ୍ଠ ତେଜୀୟାନ ଅଉ କେହି ନାହିଁ, ଯେ ସପ୍ତଦ୍ୱୀପର ଉଜ୍ଜ୍ୱଳକର୍ତ୍ତା ପୁଣ ଯେ ଧର୍ମ ନାମରେ ଅଭିହିତ, ଏପରି ଯେ ସୂର୍ଯ୍ୟଦେବ, ତାଙ୍କୁ କିପରି ବା ସ୍ତୁତି କରିବ ?

ଅନ୍ୟ ପକ୍ଷ--ଜଗତ୍‌କର୍ତ୍ତା ବିଷ୍ଣୁଙ୍କୁ ଭଜନ କରିବା ଦ୍ୱାରା ବୈକୁଣ୍ଠ ପ୍ରାପ୍ତ ହୁଏ । ଅଉ ମଧ୍ୟ ସୂର୍ଯ୍ୟଦେବଙ୍କଠାରୁ ସୂର୍ଯ୍ୟବଂଶର ଉଦ୍ଭବ ହୋଇଛି । ତେଣୁ ବିଷ୍ଣୁ ଓ ସୂର୍ଯ୍ୟଙ୍କ ସ୍ତୁତି କରି ଗ୍ରନ୍ଥ ଆରମ୍ଭ କରିବ । ହେ ବୁଦ୍ଧିମାନ୍ ପଣ୍ଡିତମାନେ ! ଏ ବିଷୟ ମନକୁ ଆଣ । କର୍ତ୍ତାର ଅଭଙ୍ଗ ଓ ସଭଙ୍ଗ ଦୁଇ ଅର୍ଥବୋଧକ ଶ୍ଳେଷ ଅଳଙ୍କାରରେ ସ୍ଥାନେ ସ୍ଥାନେ ଏହା ପ୍ରକାଶ କରିବ । ସବୁବେଳେ କବିତା ଲେଖିବାକୁ ମନ କଳାଇଥିଲି । ଭାଗ୍ୟକୁ ରାମଚାରିତ ମନ ଗ୍ରହଣ କଲି ।

ବର୍ଣ୍ଣ ଅଭଙ୍ଗ ସଭଙ୍ଗରେ ଏ ଶ୍ଳେଷ ଯେ ।
ଦୃଷ୍ଟ ସ୍ଥାନ ସ୍ଥାନକେ କରୁ ପ୍ରକାଶ ଯେ ।
ବଳାଇ ଶବ୍ଦ ଅନବରତ    ଭାଗ୍ୟେ ଗ୍ରହଣ ତାରକ ମନ୍ତ୍ର;
ସୀତା ଶ୍ରୀରାମ ଚରିତ ଗୀତ ରଚେ ଲାଳସ ଯେ । ୩ ।
ବାଲ୍ମୀକି, ବ୍ୟାସ, କବି ପଣ୍ଡିରେ    ମହାକାବ୍ୟ କେ ପୁରାଣ କରେ,
ମହାନାଟକ ବାତସୁତରେ ହେଲେ ରଚିତା ଯେ ।
କହିଲେ କାବ୍ୟ ଯେ କାଳିଦାସେ    ଚମ୍ପୂ ରଚନା ଭୋଜନରେଶେ,
କୃପାସିନ୍ଧୁଏ ଗୀତ ପ୍ରକାଶେ ଗ୍ରଥିଲ ଶାସ୍ତ୍ର ଯେ ।
କବେ ଚନ୍ଦ୍ର ଉଦୟ ଏମନ୍ତ ଧାରି ଯେ ।
ବ୍ୟୋମେ ତାରକା ଯେବେ ଝଲକୁଥାଇ ଯେ ।
ଶର୍ବରୀରେ ଜ୍ୟୋତିରିଙ୍ଗଣ—    ଗଣ ଜ୍ୟୋତିକି ଦେଖାନ୍ତି ପୁଣ ।
ସୁଜନେ ସାବଧାନରେ ଶୁଣ ଛାନ୍ଦ ରଚଇ ଯେ । ୪ ।

---

୪ର୍ଥ ପଦ—ବାତସୁତ—ହନୁମାନ । କୃପାସିନ୍ଧୁ—ସିଦ୍ଧକବି ବଳରାମ ଦାସ । ବ୍ୟୋମ—ଆକାଶ । ଶର୍ବରୀ—ରାତ୍ର । ଜ୍ୟୋତିରିଙ୍ଗଣ—ଜୁଳୁଜୁଳା ପୋକ ସବୁ ।

---

ସେହି ମନ୍ତ୍ର ପ୍ରସାଦରୁ ମୋହର କବିତ୍ୱର ସ୍ଫୂର୍ତ୍ତି ହେଲା, ତେଣୁ ସୀତା ରାମଙ୍କ ଚରିତମାନ ଗୀତରେ ରଚନା କରିବାକୁ ଅଭିଳାଷ ହେଲା ।

୪ର୍ଥ—ଯେଉଁ ରାମସୀତାଙ୍କ ବିଷୟ ନେଇ ବାଲ୍ମୀକି ରାମାୟଣ, ବ୍ୟାସଦେବ ଅଧ୍ୟାତ୍ମ ରାମାୟଣ, ହନୁମାନ ମହାନାଟକ, କାଳିଦାସ ରଘୁବଂଶ କାବ୍ୟ, ଭୋଜରାଜ ଚମ୍ପୂ, ସିଦ୍ଧ କବି ବଳରାମ ଦାସ ଦାଣ୍ଡି ରାମାୟଣ ପ୍ରଭୃତି ଗ୍ରନ୍ଥ ରଚନା କରିଯାଇ ଅଛନ୍ତି; ମୁଁ କା ଅଧିକା ଆଉ କଣ ଲେଖିବି ? ତେଣୁ ମୁଁ ତାହା ରଚନା କରିବା ପାଇଁ ବଡ ସଙ୍କୁଚିତ ହେଉଥିଲି । ମାତ୍ର ରାତ୍ରିରେ ଉଜ୍ଜ୍ୱଳ ତାରକାଗଣ ଆକାଶରେ ବିଦ୍ୟମାନ ଥିଲେହେଁ, ଜୁଳୁଜୁଳା ପୋକମାନେ ସେମାନଙ୍କର ଜ୍ୟୋତି ପ୍ରକାଶ କରିଥାନ୍ତି, ଏହି କଥା ଭାବି ମୁଁ ଛାନ୍ଦ ରଚନା କରିବାକୁ ମନ ବଳାଇଛି । ହେ ସୁଜନମାନେ; ସାବଧାନରେ ଶୁଣ ।

ବିଦ୍ୟୁତକେଶ ବଂଶରେ ଜାତ, ସୁମାଳୀ ମାଳୀ ଯେ ମାଲ୍ୟବନ୍ତ,
ସ୍ୱର୍ଗ ଲୁଣ୍ଠନେ ଅହି ଅହିତ ଧିଆନ କରି ଯେ ।
ବିଧୁ-ସମରେ ଜ୍ୟୋତ ଜ୍ୱଳିତ ବିଧୁ ସମରେ ହୋଇଲେ ଆଗତ
ସେ ଅରୋହିତ ଅହି-ଅହିତ ଗଦାବ୍ଜ ଧରି ଯେ ।
ତକାଇଣ ଶଙ୍ଖାସ୍ତ୍ର କରଣେ ଘାତ ଯେ ।
ବଧ କଲେ ଶଙ୍ଖାରି ହିଂସାପ୍ର ଭ୍ରାତ ଯେ ।
ବଡ଼ଶ୍ରୀ ଲଭି ପାତାଳେ ଲଶ ଲଙ୍କା ବଡ଼ଭପୁରକୁ ମୁଞ୍ଚି,
ଲଙ୍କା ଯେ ଦଣ୍ଡ ପାଣିରେ ଘରି ଭୟ ଯେମନ୍ତ ଯେ । ୫ ।
ବାହାର ପୁଣ୍ୟଜନେ ହୋଇଲେ ବିହାର ପୁଣ୍ୟଜନେ ବହୁଲେ,
ରଞ୍ଜିନ ପୁଣ୍ୟଜନ କୁବେରେ ସେ ଦୀପ୍ତିମାନ ଯେ ।

---

୫ମ ପଦ—ଅହି-ଅହିତ—( ଅହି—ବୃତ୍ରାସୁର, ତାହାର ଯେ ଅହିତାଚରଣ କରିଥିଲେ ) ଇନ୍ଦ୍ର । ବିଧୁ-ସମରେ—ଚନ୍ଦ୍ର ସମାନରେ । ଜ୍ୟୋତଜ୍ୱଳିତ—ଦେଦୀପ୍ୟମାନ । ବିଧୁସମରେ—ଦେବ ଯୁଦ୍ଧରେ । ଅହି-ଅହିତ—ଗରୁଡ଼ [ ଅହି—ସର୍ପ, ଯେ ସେମାନଙ୍କର ଅହିତାଚରଣ କରେ ] । ଗଦାବ୍ଜ—ଗଦାପଦ୍ମ । ଶଙ୍ଖାରି—ଶଙ୍ଖ ଓ ଚକ୍ର । ଶଙ୍ଖାରି- (ଶଙ୍ଖ+ଅରି) ଅର୍ଥାତ୍ ଶଙ୍ଖ ନାମକ ରାକ୍ଷସର ଶତ୍ରୁ, ବିଷ୍ଣୁ । ଦଣ୍ଡପାଣି—ଦଣ୍ଡ ଅସି ।

୬ଷ୍ଠ ପଦ—ପୁଣ୍ୟଜନେ—ରାକ୍ଷସମାନେ । ପୁଣ୍ୟଜନେ—ଉତ୍ତମ ଲୋକମାନେ । ପୁଣ୍ୟଜନ—ଯକ୍ଷଗଣ । ବାସ ନଗର—ଲଙ୍କାପୁର । ପାଶ-

---

୫ମ ପଦ—ବିଦ୍ୟୁତକେଶ ରାକ୍ଷସବଂଶରେ ମାଳୀ, ସୁମାଳୀ ଓ ମାଲ୍ୟବନ୍ତ ନାମରେ ତିନିପୁତ୍ର ଜାତ ହୋଇଥିଲେ । ସେମାନେ ସ୍ୱର୍ଗ ଲୁଟି କରନ୍ତେ ଇନ୍ଦ୍ର ବିଷ୍ଣୁଙ୍କୁ ଧ୍ୟାନ କଲେ । ଚନ୍ଦ୍ର କିରଣ ପରି ଜ୍ୟୋତିର୍ମୟ ବିଷ୍ଣୁ ଗରୁଡ଼ ଆରୋହଣ କରି, ଗଦା ପଦ୍ମ ହସ୍ତରେ ଧରି ଦେବାସୁର ଯୁଦ୍ଧରେ ଉପସ୍ଥିତ ହେଲେ । ସେ କ୍ରୋଧାବେଗରେ ମାଳୀ ଓ ମାଲ୍ୟବନ୍ତ ରାକ୍ଷସଙ୍କୁ ବଧ କରି ଶଙ୍ଖନାଦ କଲେ । ତାହା ଦେଖି ସୁମାଳୀ ଅତ୍ୟନ୍ତ ଭୀତ ହୋଇ ବାଟପୀ ସ୍ତ୍ରୀ ରାଜଦଣ୍ଡ ଅସିକୁ ଡରି ଲୁଚିଲା ପରି, ଲଙ୍କାଗଡ଼ ତ୍ୟାଗ କରି ପାତାଳରେ ଲୁଚିଲା ।

୬ଷ୍ଠ ପଦ—ରାକ୍ଷସମାନେ ଲଙ୍କାପୁରରୁ ବାହାର ହୋଇଗଲେ, ଉତ୍ତମ ଲୋକମାନେ ଆସି ତହିଁରେ ବିହାର କଲେ, କୁବେର ଯକ୍ଷମାନଙ୍କ ସହିତ

ବାସ ନଗର ପାଶ ନଗର ନଗର ତଳେ କରି ସନ୍ଧିର,
ଜଗତତାତ-ସୁତ-କୁମର ଭଲେ ସେ ସ୍ଥାନ ଯେ ।
ବହୁ ସମସ୍ତ ଅନ୍ତେ ଏହୁ ପ୍ରକାରେ ଯେ ।
ବାଣ୍ଡି ପାଇ ସୁମାଳୀ ଏମାନ ଗୃହେ ଯେ ।
ବିଶ୍ରବାଋଷିର ସନ୍ନିଧିକ ନେଲା ଦୁହିତା ରସନିଧିକ
ଶୋଭାରେ କରେ ସେ ଧିକ ଧିକ ନ ସ୍ୱମାତରେ ଯେ ।୬।
ବାଙ୍କେ ଅନାଇଁ ଅଙ୍କେ ପକାଇ ସେ ପଙ୍କେରୁହ ଶରକୁ ନେଇ
ଶଙ୍କେ ମଦନ ଆତଙ୍କେ ତହୁଁ ମୁନିଉତ୍ତମ ଯେ ।
ବୋଲେ ସୁନ୍ଦରୀ କୋଳେ ମୋ ବସ ତୁଲେ ମନ୍ତ୍ର ତୋ ହୋଇବ ତୋଷ
ତୁଲେ ତୋ ରୂପେ ମୋର ମାନସ ପ୍ରକାଶ ପ୍ରେମ ରେ ।

---

ନଗର—ପାଖରେ ଥିବା ପର୍ବତ, ସୁବଳ । ନଗର ତଳେ—ବୃକ୍ଷ ମୂଳରେ ଜଗତ-ତାତ-ସୁତ-କୁମର—( ଜଗତ ତାତ=ବ୍ରହ୍ମା, ତାଙ୍କ ସୁତ ପୁଲସ୍ତ୍ୟ, ତାଙ୍କ କୁମର ) ବିଶ୍ରବା ଋଷି । ଧିକ ଧିକ କରେ—ନିନ୍ଦାକରେ ।

୭ମ ପଦ—ଅଙ୍କ—କ୍ରୋଡ଼ । ପଙ୍କେରୁହ—ପଦ୍ମ । ମଦନ ଆତଙ୍କେ—କନ୍ଦର୍ପ ଭୟରେ । ରକ୍ଷଈଶ୍ୱରେ—ଅସୁର ଦେହରେ । ସନ୍ଧ୍ୟାମନ୍ତ୍ରୀ—ସ୍ୱର୍ଣ୍ଣବତୀ, ସ୍ୱପସୀ ।

---

ସେଠାରେ ବାସ କରିବାକୁ ତାଙ୍କ ଅଶେଷ ଶୋଭ ଧାରଣ କଲା । ଲଙ୍କା ନଗରର ଅଦୂରରେ ଥିବା ସୁବଳ ପର୍ବତର ନିମ୍ନଦେଶରେ ଗୋଟିଏ ବୃକ୍ଷ ମୂଳକୁ ଭଲ ସ୍ଥାନ ମନେ କରି ବିଶ୍ରବା ଋଷି ସେହିଠାରେ ବାସ କଲେ । କେତେକ ଦିନପରେ ସୁମାଳୀ ଏ ସମସ୍ତ ବିଷୟ ଗୃହଦ୍ୱାରା ଶୁଣିପାରି, ଶୃଙ୍ଗାର ରସର ନିଧି ଅଟେ ଯେ ଦୁହିତା ( କନ୍ୟା ) ତାହାକୁ ବିଶ୍ରବା ଋଷିଙ୍କ ନିକଟକୁ ନେଲା । ସେହି କନ୍ୟା ନିଜର ଶୋଭାରେ ସମସ୍ତ ନାରୀଙ୍କୁ ଧିକ୍କାର କରୁଥିଲା ।

୭ମ ପଦ—ସେହି କନ୍ୟା ଋଷିଙ୍କୁ ବକ୍ରଭାବରେ ଅନାଇ, ତାଙ୍କ ଉପରେ ନିଜର ଶର ରୂପ ପଦ୍ମ ନେଇ ନିକ୍ଷେପ କଲା (କଟାକ୍ଷ ପାତ କଲା); ତେଣୁ ମୁନିଶ୍ରେଷ୍ଠ ବିଶ୍ରବା କନ୍ଦର୍ପ ଭୟରେ ଭୀତ ହୋଇ କହିଲେ, "ହେ ସୁନ୍ଦରୀ ! ମୋ କୋଳରେ ବସ ତୋ ସହିତ ମନ୍ତ୍ରି ମୁଁ ସନ୍ତୁଷ୍ଟ ହେବି । ତୋହର ରୂପ ଶୋଭା ଦେଖି ମୋ ମନ ଭୁଲି ଗଲା, ତୁ ପ୍ରେମ ପ୍ରକାଶ କର ।" ଋଷି ଏହା କହିବାରୁ କନ୍ୟା ତାଙ୍କୁ ନିକଟ ହୋଇ

ବାମା ଓଳଟି ସନମତ ଭସିଲ ଯେ ।
ବହ୍ନି ସାକ୍ଷିରେ ବିଲ୍ଲଭାବ ବତାଇ ଯେ ।
ବେଗେ ସୁରତ ରତ ସନ୍ଧ୍ୟାରେ    ସନ୍ଧ୍ୟାମଣ୍ଡୀ ସେ ତାର ଗର୍ଭରେ
ଜାତ ହୋଇଲେ ରକ୍ଷ ଶରୀରେ ସୁତ ତନୟୀ ଯେ ।୭।
ବିଂଶତିଭୁଜ ଦଶାନନରେ    କି ଦଶା ଦେବ ଦେବ ଜନରେ,
ନର ନାଗରେ ଧରଣୀ ଥରେ ହେଉଁ ପତନ ଯେ ।
ବିକଟରୂପ ପ୍ରକଟ ଅତି    ରକତପସ୍ର ଦ୍ୟୁକତ କାନ୍ତି,
ଘଟଣ ଘଟ ସଦୃଶ ଶ୍ରୁତି ଭୈରବ ସ୍ୱନ ଯେ ।
ବଧୀରତା ନିକଟ ଶୁଣିଲ ଜନ ଯେ ।
ଜଗତ ଯେ ଲୋପଣେ ତିନି ନନ୍ଦନ ଯେ ।
ବୋଲାଇଲେ ସେ ଦଶ ବଦନ,    କୁମ୍ଭ-ଶ୍ରବଣ ଯେ ବିଭୀଷଣ
ନନ୍ଦନୀ ଶୂର୍ପଣଖାର ନଖ ସୂର୍ପସମାନ ଯେ ।୮।

---

୮ମ ପଦ—ନର ନାଗରେ—ନର ଲୋକରେ ଓ ନାଗ ଲୋକରେ । ଘଟସଦୃଶ—ମାଠିଆପରି । ଘଟଣ—ଗର୍ଜନ । ଶ୍ରୁତି—କର୍ଣ୍ଣ । ଭୈରବ—ଭୟଙ୍କର । ଜଗତ—ରଞ୍ଜକ । ସୂର୍ପସମାନ—କୁଲାପରି ।

---

ସମ୍ପନ୍ନ ପ୍ରକାଶ କଲା । ଉଚିତ ଅଗ୍ନି ସାକ୍ଷିକର ବିବାହବାର୍ତ୍ତା କହାଇଲେ । ସନ୍ଧ୍ୟା ସମୟରେ ତାହା ସହିତ ସୁରତରେ ରତ ହେଲେ । ସେ ତ ରାକ୍ଷସୀ, ତେଣୁ ତାହା ଗର୍ଭରୁ ରାକ୍ଷସ ଶରୀରରେ ପୁତ୍ର ଓ କନ୍ୟା ଜାତ ହେଲେ ।୭।

୮ମ ପଦ—କୋଡ଼ିଏ ହାତ, ଦଶମୁଖ ବିଶିଷ୍ଟ ପୁତ୍ରର ଗର୍ଭରୁ ଜନ୍ମ ହେବାରୁ 'ଦେବ ବାନର ନର ନାଗ ଲୋକଙ୍କୁ କି ଦଶା ଦେବ ?'—ଏହା ଭାବି ଧରଣୀ କମ୍ପିଲା । ଅତି ବିକଟାଳ ରୂପବିଶିଷ୍ଟ ରକ୍ତବର୍ଣ୍ଣ କାନ୍ତି, ମାଠିଆ ପରି କାନକୁ ଧାରଣ କରି ଦ୍ୱିତୀୟ ପୁତ୍ର ଜାତ ହେଲା । ତାହାର ଗର୍ଜନରେ ନିକଟରେ ଥିବା ଲୋକମାନେ ବଧିର ହୋଇଗଲେ । ଲୋପଣ ରଞ୍ଜକ (ଅର୍ଥାତ୍ ସୁନ୍ଦର) ତୃତୀୟ ପୁତ୍ର ଜାତ ହେଲା । ସେମାନେ ଦଶାନନ, କୁମ୍ଭକର୍ଣ୍ଣ, ବିଭୀଷଣ ନାମରେ ଖ୍ୟାତ ହେଲେ । ଯେଉଁ କନ୍ୟା ଜାତ ହେଲା, ତାହାର ନଖସବୁ କୁଲାପରି ଥିବାରୁ ତାହାର ନାମ ଶୂର୍ପଣଖା ହେଲା ।

ବୃଦ୍ଧି ଯତନ ଦିନକୁ ଦିନୁ, ଗିରି ସମରେ ଦିଶିଲା ତନୁ,
ଗ୍ରୀଷ୍ମସମୟରେ ଏ ଅନୁମାନୁ ନହଇ ଆନ ଯେ ।
ବିଶାଳ ମହାଶାଳ କି କର, ସାନୁ ସମାନେ ଉନତ ଶିର,
କୃଶାନୁ ସରି ତେଜନଭର ଜ୍ୱଳନ୍ତ ଘେନ ଯେ ।
ବିଦ୍ୟମାନ କୋଟର ତଥା ଲୋଚନ ଯେ ।
ବର୍ଦ୍ଧମାନକରତା ଜୀବ ଶୋଚନ ଯେ ।
ବୁଲିଲେ ପୁରେ ପୁରେ ସ୍ୱଚ୍ଛରେ ମାଡିଲେ ନାନାଦ୍ରବ୍ୟ ଉପରେ
ଗଲା ଦ୍ୱାଦଶ ସମ୍ବତ୍ସରରେ ଯେ କୁମ୍ଭକର୍ଣ୍ଣ ଯେ । ୯ ।
ବହୁତ ଜନ ଜୀବନ ନେଇ ଉତ୍ତରକୁରୁ ପ୍ରଦେଶେ ଯାଇ
ଉତ୍ତର କ୍ରୂରତର ନ ସହୁ ଇନ୍ଦ୍ର ନ ମାନି ଯେ ।
ବଜ୍ରାଘାତକୁ ମଣି ଇତର ଉତ୍ପାଟି ଦନ୍ତ ଐରାବତର
ପ୍ରହାରେ ମୋହି ସୁରଈଶ୍ୱର ପଳାଇ ଘେନି ସେ ।

---

୯ମ ପଦ :—ଗିରି—ପର୍ବତ । ତନୁ—ଦେହ । କର—ହାତ । ସାନୁ—ଶୃଙ୍ଗ । କୃଶାନୁ—ଅନଳ । କୋଟର – କନ୍ଦର । ଶୋଚନ—ଶୋକ ।

୧୦ମ ପଦ :—ଉତ୍ତରକୁରୁ ପ୍ରଦେଶ—ସ୍ୱର୍ଗ । କ୍ରୂରତର—କର୍କଶ, ନିଷ୍ଠୁର । ଉତ୍ତର ପ୍ରତିବାକ୍ୟ । ଇତର—ତୁଚ୍ଛ । ସୁରଈଶ୍ୱର—ଇନ୍ଦ୍ର । କପ୍ରାଶ୍ୱର-ସ୍ଥାନ—ବାପର ଶଶୁର ଘର, ସୁମାଳିର ବାସଭବନ, ପାତାଳ । ଦଶାସ୍ୟ—

---

୯ମ ପଦ :—ପୁଷ୍ଟମାନେ ଯତ୍ନରେ ଦିନକୁ ଦିନ ବଢିଲେ । ସେମାନଙ୍କର ଦେହ ଗ୍ରୀଷ୍ମକାଳର ପର୍ବତପରି ଦେଖାଗଲା । ଏହା ଅନୁମାନରୁ ଆନ ନୁହେ । ତାହାଙ୍କର ହାତ ମହାଶାଳ ପରି ବିଶାଳ, ଶିର ପର୍ବତ, ନେତ୍ର କନ୍ଦରର ଆକାର ଧାରଣ କଲା ଏବଂ ଦେହର ତେଜ ଅଗ୍ନି ସମାନ ଦିଶିବ ଉଠିଲା । ସେମାନେ ସମସ୍ତ ପ୍ରାଣୀଙ୍କର ଶୋକ ବଢ଼ାଇଲେ । ମନ ଇଚ୍ଛାରେ ଗୃହେ ଗୃହେ ବୁଲି ନାନାପ୍ରକାର ଦ୍ରବ୍ୟ ସବୁ ଖାଇଲେ । ଏହିପରି ବାରବର୍ଷ ବିତିଗଲା; ତତ୍ପରେ କୁମ୍ଭକର୍ଣ୍ଣ—

୧୦ମ ପଦ—(ତତ୍ପରେ କୁମ୍ଭକର୍ଣ୍ଣ) ବାଟରେ ବହୁତ ପ୍ରାଣୀ ବିନାଶ କରି ସ୍ୱର୍ଗକୁ ଯାଇ ନାନା ଉପଦ୍ରବ କଲା । ଇନ୍ଦ୍ରଙ୍କୁ ନ ମାନି ତାଙ୍କୁ ନିଷ୍ଠୁର କଥାମାନ କହିଲା । ଇନ୍ଦ୍ରଙ୍କ ବଜ୍ର ପ୍ରହାରକୁ ତୁଚ୍ଛ ମନେ କରି ଐରାବତ ହସ୍ତୀର ଦନ୍ତକୁ ଉପାଡ଼ି ଇନ୍ଦ୍ରଙ୍କୁ ପ୍ରହାରନ୍ତେ, ଇନ୍ଦ୍ର ଅଚେତନ ହେଲେ । ଐରାବତ ତାହାଙ୍କୁ

ବିଭୀଷଣ ଯକ୍ଷରେ ଦ୍ୱନ୍ଦ୍ୱ ବଳିତ ଯେ ।
ବପ୍ରାଣ୍ଣଙ୍କର ସ୍ଥାପନ ଦଶାସ୍ୟ ଗତ ଯେ ।
ବିରଜା ମଣ୍ଡଳରେ ତପସ୍ୟା ଜଗଜ୍ଜୟରେ କରି ମନୀଷା
ଅଶନହାନେ ଦିବସ ନିଶା କାଳ ବଞ୍ଚିତ ଯେ । ୧୦ ।
ବିଖନ ଭାଲ ଲେଖନବର୍ଣ୍ଣ ମୁଣ୍ଡ ପ୍ରଚଣ୍ଡାନଳେ ଦହନ
କହିଣ ଭଲ ଜ୍ୟେଷ୍ଠ ପଠନ କଷ୍ଟ ଅତ୍ୟନ୍ତ ଯେ ।
ବଲ୍ଲକୀ ରଚି ଭୁଜ ମୂର୍ଦ୍ଧାରେ ସେ ଦଣ୍ଡ ତୁମ୍ବୀ ସ୍ୱରେ ଝଙ୍କାରେ
ଧମନୀ ଗୁଣ କରି ବେଧାରେ ବିନସ୍ତୁତି ଗୀତ ଯେ ।
ବାଞ୍ଛି ଗଞ୍ଜି ହୋଇଲେ ଆସି ପ୍ରସନ୍ନ ଯେ ।
ବର କାମନାପୂର୍ଣ୍ଣେ କଲେ ପ୍ରଦାନ ଯେ ।
ବଞ୍ଚିବୁ ଯୁଗ ଛପନଗଣ୍ଡା ବରଣୀ ହେବ ବ୍ରହ୍ମାଣ୍ଡେ ଖଣ୍ଡା
ସୀତା ହରଣ ନିଷ୍ଠେ ମରଣ କାରଣ ଜାଣ ରେ । ୧୧ ।

---

ରାବଣ । ବିରଜାମଣ୍ଡଳରେ—ଦେବୀ ପୀଠରେ । ମନୀଷା—ଇଚ୍ଛା । ଅଶନହାନେ—ଅନାହାରରେ ।

୧୧ଶ ପଦ :—ବିଖନ—ବିଧାତା । ଭାଲ—କପାଳ । ଲେଖନବର୍ଣ୍ଣ ମୁଣ୍ଡ—ଅକ୍ଷର ଲେଖାଥିବା ମୁଣ୍ଡ । ଜ୍ୟେଷ୍ଠ—ରାବଣ । ବଲ୍ଲକୀ—ବୀଣା । ଧମନୀ—ଶିରା । ବେଧାରେ—ବ୍ରହ୍ମାଙ୍କୁ । ବରଣୀ ହେବ—ପୂଜା ପାଇବ ।

---

ନେଇ ପଳାଇ ଗଲା । ବିଭୀଷଣ ଯକ୍ଷ ସେବକରେ ଯୁଦ୍ଧ ଆରମ୍ଭ କଲା । ରାବଣ ପାତାଳପୁରକୁ ଜୟ କରିବାକୁ ଗଲା । (ଏହାପରେ ଜନଭାଇଙ୍କୁ ଜନପୁରରେ ଯୁଦ୍ଧ କରି ସାରି) ଜଗତ୍ ଜୟ କରିବା ଇଚ୍ଛାରେ ବିରଜା ଦେବୀଙ୍କ ପୀଠରେ ଅନାହାରରେ ଦିନ ରାତି ତପସ୍ୟା କରିବାକୁ ଲାଗିଲେ ।

୧୧ ପଦ :—(ଜ୍ୟେଷ୍ଠ) ରାବଣ ଆପଣାର ମୁଣ୍ଡମାନଙ୍କୁ ପ୍ରଚଣ୍ଡ ଅନଳରେ ଦଗ୍ଧ କରି ଲଲାଟରେ ଥିବା ବିଧାତା ଲିଖିତ ଅକ୍ଷରମାନଙ୍କୁ ଅତି କଷ୍ଟରେ ପାଠ କଲା । (ନିଜ ଲଲାଟରେ ଭଲ ଲେଖା ନାହିଁ—ଏହା ଜାଣି) ସେ ନିଜ ଭୁଜକୁ ଦଣ୍ଡ, ମୁଣ୍ଡକୁ ତୁମ୍ବୀ, ଶିରାକୁ ତାର କରି ସେହି ବୀଣାରେ ବିନୟରେ ବ୍ରହ୍ମାଙ୍କର ସ୍ତବ ଗାନ କଲା । ବ୍ରହ୍ମା ପ୍ରସନ୍ନ ହୋଇ ଆସି କହିଲେ, "ତୁ ଛପନଗଣ୍ଡା ଯୁଗ ଯାଏ ବଞ୍ଚି ରହିବୁ । ତୋହର ଖଣ୍ଡା ସମସ୍ତ ଜଗତରେ ପୂଜା ପାଇବ (ତୁ ଜଗଜ୍ଜୟୀ ହେବୁ) । ମାତ୍ର ସୀତା ହରଣ ତୋହର ମରଣ କାରଣ ଅଟେ—ଏହା ମନେ ରଖ ।"

କ୍ଷେତ୍ରରେ ସୀତା ବହୁ ଯୋଷିତା ଯେ ହୋଇଥିବ ଜନକସୁତା
ବହୁତ ରାମ ପରକାଶିତା ଯେ ଦାଶରଥି ଯେ ।
ବାଗ୍‌ଦେବୀ ଆସି ବସିଲେ ଗଳେ କୁମ୍ଭକର୍ଣ୍ଣର ବରଦକାଳେ
ନିଦ୍ରା ମୁଁ ଯିବି ବୋଲି ଚପଳେ ମାଗିଲା ତହିଁ ଯେ ।
ବତ୍ସରକ ନ ପୂରୁ ଉଠିବୁ ଯେବେ ରେ ।
ବଧ ଅବଶ୍ୟ ହେବ ତୋହର ତେବେ ରେ ।
ବିଷ୍ଣୁ ଭକତ ହୋଇ ଅମର ଜଗତ ମଧ୍ୟେ କର ବିହାର
ଗତ ପଦ୍ମଜ ଦେଇ ଏ ବର ସାନୁଜେ ଜବେ ଯେ । ୧୨ ।
ବାହୁଡ଼ି ତହୁଁ ପାତାଳେ ରଞ୍ଜି ନିକଷାତ୍ମଜଯୂଥଙ୍କୁ ସାଜି
ବେଢିଲେ ଲଙ୍କା କୁବେର ତେଜି ଗଲା ସେ ପୁର ଯେ ।
ବିମାନେ ନେଇ ସବୁ ସମ୍ପତ୍ତି ଦ୍ୱି-ମାନେ ଯଥା ଗଗନେ ଗତି
ସେ ମନୋରଥ ରଥ ପ୍ରାପତ ଇଚ୍ଛୁ ସମର ଯେ ।

---

୧୨ଶ ପଦ :—କ୍ଷେତ୍ରରେ—ଜଗତରେ । ଯୋଷିତା—ସ୍ତ୍ରୀ । ବାଗ୍‌ଦେବୀ—ସରସ୍ୱତୀ । ବରଦକାଳେ—ବରଦେବା ସମୟରେ । ଚପଳେ—ଶୀଘ୍ର । ପଦ୍ମଜ—ବ୍ରହ୍ମା । ସାନୁଜ—ବିଭୀଷଣ । ଜବ—ଶୀଘ୍ର ।

୧୩ଶ ପଦ :—ରଞ୍ଜି—ଶୋଭିତ ହୋଇ । ନିକଷାତ୍ମଜଯୂଥଙ୍କୁ—ଅସୁରଗଣଙ୍କୁ । ସାଜି—ସଜ କରି । ଦ୍ୱି-ମାନେ—ପକ୍ଷୀମାନେ । ମନୋରଥ-(ମନ

---

୧୨ଶ ପଦ :—'ଜଗତରେ ବହୁତ ସ୍ତ୍ରୀ ଲୋକ ସୀତା ନାମ ବହନ୍ତି; ରାମ ନାମରେ ବହୁତ ଲୋକ ଥାଇ ପାରନ୍ତି, ମାତ୍ର ଯେଉଁ ସୀତା ଜନକରାଜାଙ୍କର କନ୍ୟା ହୋଇଥିବେ, ତାହାଙ୍କୁ ହରିଲେ, ଦଶରଥଙ୍କର ପୁତ୍ର ରାମଚନ୍ଦ୍ର ତୋତେ ମାରିବେ ।' କୁମ୍ଭକର୍ଣ୍ଣଙ୍କୁ ବରଦେବା ସମୟରେ ସରସ୍ୱତୀ ଆସି ତାହା କଣ୍ଠରେ ବସିଲେ । ତେଣୁ ସେ ବରବରରେ 'ମୁଁ ନିଦ୍ରା ଯିବି' ବୋଲି ବର ମାଗି ଦେଲା । ତାହା ଶୁଣି ବ୍ରହ୍ମା ବର ଦେଲେ "ବର୍ଷେ ପୂର୍ଣ୍ଣ ନ ହେଉଣୁ ଯେବେ ନିଦ୍ରାରୁ ଉଠିବୁ, ତାହା ହେଲେ ଅବଶ୍ୟ ତୋର ବିନାଶ ହେବ ।" "ବିଷ୍ଣୁ ଭକ୍ତ ଓ ଅମର ହୋଇ ଜଗତରେ ବିହାର କରିବୁ"—ଏହି ବର ସାନ ଭାଇ ବିଭୀଷଣଙ୍କୁ ଦେଇ ବ୍ରହ୍ମା ବେଗରେ ସେଠାରୁ ଚାଲିଗଲେ ।

୧୩ଶ ପଦ :—( ସେ ତିନିଭାଇ ବ୍ରହ୍ମାଙ୍କଠାରୁ ବର ପାଇଲା ପରେ ) ସେଠାରୁ ବାହୁଡ଼ି ପାତାଳ ପୁରରେ ବିରାଜିତ ହେଲେ । ଅସୁରମାନଙ୍କୁ ସଜ୍ଜୀଭୂତ କରି ଲଙ୍କାକୁ ଯାଇ ଚଢ଼ାଉ କଲେ । କୁବେର ପୁଷ୍ପକଯାନରେ ବସି ସମସ୍ତ ସମ୍ପତ୍ତି ନେଇ ପକ୍ଷୀମାନେ ଆକାଶରେ ଉଡ଼ିଗଲା ପରି ଲଙ୍କାପୁର ଛାଡ଼ି ଚାଲିଗଲେ । ରାବଣ

ବଶେ ଉଲ୍କ ସ୍ୱପ୍ରଭା ପ୍ରକଟ କର ଯେ ।
ବଧ ନୁଦ ବନ୍ଧୁଙ୍କୁ ଗ୍ରାସିଲି ପର ଯେ ।
ବଣ୍ଣ କେତୁରେ ହୋଇ ଅଦମ୍ଭା  ଶୋଭା ଅରମ୍ଭ ରମ୍ଭା ସୁରମ୍ଭା
ଉରୁକୁ ହର ହୋଇଲ ବିଭା ମୟକୁମାରୀ ଯେ । ୧୩ ।
ବୃଷସଦୃଶ ସୁରଭିଅଳୀ  ଗୋଷ୍ଠ କୋଷ୍ଠିରେ କଲା ସେ କେଳି
ପ୍ରଜାପତିଙ୍କ ସମାନେ ହେଲେ ଅନେକ ସୁତ ଯେ ।
ବର୍ଣ୍ଣିବା କିସ ଜ୍ୟେଷ୍ଠକୁମାର  ଜାତ ରଡ଼କ ଶୁଣି କୁମାର
ଗ୍ଲାନ ସେ ମେଘନାଦ ଉପର ପଡ଼ି ଅଚେତ ଯେ ।

---

ଅନୁସାରେ ଯେଉଁ ରଥ ଗତି କରେ) ପୁଷ୍ପକବିମାନ । ବଧୂନୁଦ—ସନ୍ଧି ବର୍ଣ୍ଣକେତୁ—କନ୍ଦର୍ପ । ଅଦମ୍ଭା—ଦମ୍ଭହୀନ । ଶୋଭା ଅରମ୍ଭା—( ଶୋଭାରେ ଯେ ପ୍ରଥମ ) ଅତି ସୁନ୍ଦରୀ । ସୁରମ୍ଭା—ଉତ୍ତମ କଦଳୀଗଛ । ମୟକୁମାରୀ ମୟଦୈତ୍ୟର କନ୍ୟା ମନ୍ଦୋଦରୀ ।

୧୪ଶ ପଦ :—ସୁରଭି—କାମଧେନୁ । ଅଳୀ—ସଖୀ ( ଏଠାରେ ସ୍ତ୍ରୀ ) । ଗୋଷ୍ଠରେ—ସମ୍ମୁଖରେ । କୋଷ୍ଠି—ଘର । ପ୍ରଜାପତି—ବ୍ରହ୍ମା । କୁମାର—କାର୍ତ୍ତିକେୟ । ମେଘନାଦ—ମୟୂର । ଜଳ ବେଷ୍ଟିତ-ସ୍ଥାନ—ଜଳବେଷ୍ଟିତ ସ୍ଥାନ ଅର୍ଥାତ୍ ଲଙ୍କା । ପିଶିତ—ମାଂସ ।

---

ମନ ଜାଣି ଗତି କରୁଥିବା ପୁଷ୍ପକବିମାନ ପାଇବା ଇଚ୍ଛାରେ କୁବେରଙ୍କ ସଙ୍ଗରେ ଯୁଦ୍ଧ କରିବାକୁ ଗଲେ ଓ ବିମାନକୁ ବଳାତ୍କାରରେ ତାଙ୍କଠାରୁ ଛଡ଼ାଇ ଆଣିଲେ । ରାହୁ ଚନ୍ଦ୍ରମାଙ୍କୁ ଗ୍ରାସ କଲାପରି ସେ ଦେବଙ୍କର ତେଜ ପ୍ରତାପ ଭର ସମସ୍ତ ସମ୍ପଦ ରତ୍ନ ଗ୍ରାସ କଲେ ( ଜୟ କଲେ ) । କନ୍ଦର୍ପ ପୀଡ଼ାରେ ଅସ୍ଥିର ହୋଇ ସେ ପରମାସୁନ୍ଦରୀ ରମ୍ଭୋରୁବତୀ ରମ୍ଭା ଅପ୍ସରାକୁ ହରଣ କଲେ ଓ ମୟଦୈତ୍ୟକୁମାରୀ ମନ୍ଦୋଦରୀକୁ ବିବାହ କଲେ ।

୧୪ଶ ପଦ:—ବୃଷଭ ଯେପରି ଗାଈ ଗୋଠରେ କେଳି କରେ, ସେହିପରି ସେ ରାବଣ ଗୃହରେ ବୃଷଭ ପରି ସୁନ୍ଦରୀ ସ୍ତ୍ରୀମାନଙ୍କ ସହିତ କେଳି କଲେ । ସେହି-ହେତୁରୁ ଦକ୍ଷଙ୍କ ସମାନ ସମ୍ପ୍ରତିମାନ ପୁତ୍ର ସବୁ ଜନ୍ମ ହେଲେ । ସେମାନଙ୍କ କଥା କେଉଁଠି ବା ବର୍ଣ୍ଣନା କରିବି ? ଜ୍ୟେଷ୍ଠ ପୁତ୍ରର ଜନ୍ମ ସମୟର ରଡ଼କୁ ଶୁଣି କାର୍ତ୍ତିକେୟ ମୟୂର ପିଠିରୁ ତଳେ ପଡ଼ିଯାଇ ଅଚେତନ ହେଲେ । ତାହାର ଶବ

ବଳେ ମେଘନାଦକୁ ତାହାର ସ୍ତନ ଯେ ।
ବହେ ସେ ମେଘନାଦ ନାମ ପ୍ରଧାନ ଯେ ।
ବନ-ବେଷ୍ଟିତ ସ୍ଥାନରେ ରହି ସିଂହ ଶାର୍ଦ୍ଦୂଳ ବଳିଷ୍ଠ ହୋଇ,
ବଇର-ମୃଗ ପିଶିତ ଧ୍ୟାୟି ଅନ୍ୟ ନନ୍ଦନ ଯେ । ୧୪ ।
ବାମ ଦରରେ ହୋଇଣ ବାମ ବାମଦେବର ଗିରି କୁସୁମ,
ପରି ଉତ୍ପାଟି ଧରନ୍ତେ କ୍ଷମ ହେବାକାଳରେ ଯେ ।
ତାହାର ଦରବଶେ ଏ ସ୍ୱର ଈଶ୍ୱରଠାରୁ ସ୍ୱବଶେଶ୍ୱର,
ଦେଖିଲେ ପଞ୍ଚଦ୍ୱିଗୁଣ ଶିର ସେ ବହୁବାର ଯେ ।
ବିଶେଷତ ଦେଖିଲେ ଇକ୍ଷଣ କର ଯେ ।
ବିଳାସକୁ ଦୈତ୍ୟର ସ୍ୱର୍ଣ୍ଣନଗର ଯେ ।
ବଳେକି ରୌପ୍ୟନଗରେ ସ୍ଥିତ ଉପୁଜି ଯାଇ ଏ ଉଣା ଭୀତ,
ହେଉ ତ ବେଳଳନେ ବିଭୂତ ଅନ ପ୍ରକାର ଯେ । ୧୫ ।

---

୧୫ଶ ପଦ:—ବାମ—ବିପକ୍ଷ । ବାମଦେବର ଗିରି—ମହାଦେବଙ୍କର ଗିରି, କୈଳାସ ପର୍ବତ । ଦରବଶେ—ଭୟରେ । ଈକ୍ଷଣ—ଚକ୍ଷୁ । ବିଭୂତ—ଐଶ୍ୱର୍ଯ୍ୟ ।

---

ମେଘଧ୍ୱନକୁ ବଳିଯିବାରୁ ତାହାର ପ୍ରଧାନ ନାମ ମେଘନାଦ ହେଲା । ତତ୍ପରେ ଅନ୍ୟ ଯେତେ ପୁତ୍ର, ସେମାନେ ସିଂହ ବ୍ୟାଘ୍ରଙ୍କ ପରି ବଳିଷ୍ଠ ହୋଇ ଶତ୍ରୁ ରୂପ ମୃଗର ମାଂସକୁ ଧ୍ୟାନ କରି ଜଳବେଷ୍ଟିତ ଲଙ୍କାପୁରରେ ରହିଲେ । (ସିଂହ ବ୍ୟାଘ୍ରମାନେ ମୃଗ ମାଂସ ଖାଇବା ଆଶାରେ ବନ ମଧ୍ୟରେ ରହିଥାନ୍ତି ।)

୧୫ଶ ପଦ—ରାବଣ ପ୍ରତିକୂଳ ହୋଇ ବାମହସ୍ତରେ ଶିବଙ୍କର ଗିରି କୈଳାସକୁ ଫୁଲପରି ଉପାଡି ଧରିବାକୁ ଲାଗିଲେ, ଭୟ ପାଇ ମହାଦେବ ତାକୁ ଦେଖି ଏହା କହିଲେ—"ମୁଁ ଈଶ୍ୱର, ଏ ସ୍ୱବଶେଶ୍ୱର, ମୋହର ପଞ୍ଚ ବଦନ, ଏହାର ଦଶବଦନ । ବିଶେଷରେ ଗଣନା କରି ଜାଣିଲେ, ମୋହର ପନ୍ଦର ଅକ୍ଷ, ଏହାର କୋଡ଼ିଏ ଅଛି । ମୁଁ ରୌପ୍ୟମୟ କୈଳାସକନ୍ଦରରେ ବାସ କରେ, ସେ ସ୍ୱର୍ଣ୍ଣମୟ ଲଙ୍କାପୁରରେ ବାସ କରୁଛି । ଭୋଗ ବିଷୟରେ ମୋହର ବିଭୂତି (ଭସ୍ମ) ଭୋଗ ଓ ତାହାର ବିଭୂତ ବିଶେଷ ଐଶ୍ୱର୍ଯ୍ୟ ଭୋଗ । ଅତଏବ ଏହାଠାରୁ ମୁଁ ସବୁ ଗୁଣରେ ଊଣା ।" (ଏପରି ଭୀତ ତାଙ୍କ ମନରେ ଜାତ ହେଲା) ।

ବାରସଣି ଏ ତରଳ-ତର ଅଧୀର ଥିଲା ଅତି ମାତର,
ଯାହା ପ୍ରତାପେ ହୋଇ କାତର ସେ ଥରଥର ଯେ ।
ବ୍ୟାକୁଳ ଜାତ ପାଞ୍ଚ ପାଞ୍ଚର ଅମ୍ଭେ ସ୍ୱଭାବେ ଏହା ଆହାର,
ଦେଖି ସେହିଲେ ହୃଦଉଦର ଏଥି ବିସ୍ତର ଯେ ।
ବାହୁ ନ ପୁଣ ଯାଇ ମୀନଙ୍କୁ ଖାଇ ଯେ ।
ବନ୍ତ ବଂଶତଲ୍ଲଜ ବହିବା ଗୃଧି ଯେ ।
ବନ୍ଧୁ ଭାବରେ ସେ ଶାନ୍ତ କାନ୍ତି ନାମେ ସମର୍ପି ଦିବ୍ୟ ଯୁବତୀ,
ସ୍ୱନାମ କଲେ କୋଷେ ତା ସ୍ଥିତି ରତ୍ନଙ୍କୁ ଦେଇ ଯେ । ୧୬ ।
ବଜ୍ର କୃପାଣ ସାଧନ କରେ ଛେଦାର ଶଙ୍କା ଜମ୍ବୁ ପ୍ଲକ୍ଷରେ,
ଅବସ୍ମ ହୋମ କର୍ମ କୁଶରେ ବହନ ଭୀତି ଯେ ।
ବାହୁଳି ଧନୁ କ୍ରୋଞ୍ଚ ଚମକେ ଭୋଜନକାଳେ ଭସ୍ମଦ ଶାକେ,
ଶପ୍ତନେ ତୁଳୀ କରଣେ ଘଟେ ଶାଲ୍ମଳୀ ଜିତ ଯେ ।

---

୧୬ଶ ପଦ—ବାରସଣି—ସାଗର । କୋଷ=ଭଣ୍ଡାର ।

୧୭ଶ ପଦ=କୃପାଣ—ଖଡ୍ଗ । ଜମ୍ବୁ—ଜମ୍ବୁଦ୍ୱୀପ, ଜାମ୍ବୁଗଛ । ପ୍ଲକ୍ଷ—ପ୍ଲକ୍ଷଦ୍ୱୀପ, ଡିମ୍ବିରି ବୃକ୍ଷ । କୁଶ=କୁଶଦ୍ୱୀପ, କୁଶ । କ୍ରୌଞ୍ଚ—କ୍ରୌଞ୍ଚଦ୍ୱୀପ, ବକପକ୍ଷୀ

---

୧୬ଶ ପଦ—ସମୁଦ୍ର ସବୁ ଅତିଶୟ ତରଳ, ତେଣୁ ଅଳ୍ପ ଚଞ୍ଚଳ ଥିଲା, ମାତ୍ର ସବଣ ପ୍ରତାପରେ ଅତ୍ୟନ୍ତ ଭୀତ ହୋଇ ବର୍ତ୍ତମାନ ତରଙ୍ଗଯୁକ୍ତ ହୋଇଅଛି । ତା ମଧ୍ୟରୁ ପଞ୍ଚସମୁଦ୍ର [ଇକ୍ଷୁ, ସୁରା, ସର୍ପି, ଦଧି, ଦୁଗ୍ଧ ସମୁଦ୍ର] ପାଞ୍ଚିଲେ, "ଅମ୍ଭେ ସ୍ୱଭାବରେ ଏହାର ଭକ୍ଷ ପଦାର୍ଥ । ଅମ୍ଭଙ୍କୁ ଖାଇଯିବ ନାହିଁ ତ ?" ଏହା ଦେଖି ତାଙ୍କର ଭୟ ଜାତ ହେଲା । କେବଳ ସମୁଦ୍ର [ଲବଣ ଓ ଜଳସମୁଦ୍ର] ହୃଦୟମଧ୍ୟରେ ବିଚାର କଲେ, 'ଏ ବଡ ବଡ ବଂଶ କାହୁଁକି ବଢାଇ ମୀନମାନଙ୍କୁ ଖାଇବା ଆଗାରେ ଅମ ଜଳସବୁକୁ ବୁହାଇ ଦେବ ନାହିଁ ତ ? ସମସ୍ତେ ଏହା ବିଚାର କରି କାନ୍ତି ନାମରେ ଗୋଟିଏ ଦିବ୍ୟ ଯୁବତୀଙ୍କ ତାଙ୍କୁ ସମର୍ପ ଓ ତାହାର ଶାନ୍ତି ପାଇ ବହୁତ ରତ୍ନ ଦାନ କରି ତାଙ୍କର ଭଣ୍ଡାରକୁ ନିଜ ନାମରେ ଅଭିହିତ କଲେ (ଭଣ୍ଡାରର ନାମ ରତ୍ନାକର ଦେଲେ) ।

୧୭ଶ ପଦ—ସାଧନ କରିବା ପାଇଁ ଖଡ୍ଗ କହିବାରୁ ଜମ୍ବୁଦ୍ୱୀପ ଓ ପ୍ଲକ୍ଷଦ୍ୱୀପ ଶଙ୍କା କଲେ ଯେ, ଏ ଅମ୍ଭଙ୍କ ଜାମ୍ବୁଗଛ ଓ ଡିମ୍ବିରି ଗଛ ହବି ହାଣି ପକାଇବ କି ? କୁଶ ଦ୍ୱୀପର ଭୟ ଜାତ ହେଲା ଯେ, ମୋତେ କୁଶ ଭାବି ଏ ହୋମ କାର୍ଯ୍ୟରେ ଲଗାଇବ କି ? କାର୍ମୁକ ଧରିବାରୁ କ୍ରୌଞ୍ଚଦ୍ୱୀପ ଭୟରେ ଚମକି ବିଚାରିଲା,

ବହ୍ନି ଦେବପୂଜନ ପୁଷ୍କରର ଭୟ ଯେ ।
ବଳେ ଉପାଡ଼ ନେବ ହୋଏ ଉଦୟ ଯେ ।
ବିଭୋଗ କର ପ୍ରତାପେ କର — କରଇ ହେଲେ ପ୍ରଜା ଆକାର
ପୃଥ୍ୱୀମଣ୍ଡଳ ସକଳ ନୃପବର ମହାଦୁର୍ଜୟ ଯେ । ୧୭ ।
ବନ୍ଦୀ ବଳୀର ଫେଡ଼ନେ ଯାର — ଉରସାକୃତ ରସାତଳର
କୋଟିଏ ସିଂହ ବଳ କାଳର ଧରଣେ ଇଚ୍ଛି ଯେ ।
ବଳଲଭିବ ନୋହିଲା ଲବ — ପାଇଁ ନିବଡ଼ ଉଡ଼ ପ୍ରାଭବ,
କେମନ୍ତ ମଲ୍ଲ କୋବିଦେ ଭାବ ହୁଲ ଏ ଅଛି ଯେ ।

---

ଶାକ—ଶାକଦ୍ୱୀପ, ଶାଗ । ତୂଳା—ତୂଳାଶେଯ । ଶାଲ୍ମଳୀ—ଶାଲ୍ମଳୀ ଦ୍ୱୀପ, ଶିମିଳୀ ତୂଳା ।

୧୮ଶ ପଦ :—ଉରସାକୃତ—ସାହସପୂର୍ବକ । ରସାତଳ—ପାତାଳ । କୋବିଦ—ପଣ୍ଡିତ । ସହସ୍ରଭୁଜ—ସହସ୍ରାର୍ଜୁନ ।

---

ମୋତେ ବକ ପକ୍ଷୀ ମନେ କରି ବାହୁଡ଼ି ମାରିବ କି ? ଭୋଜନ ସମୟରେ ଶାକଦ୍ୱୀପ ଭୟ କଲା, ମୋତେ ଶାଗ ଭାବି ଖାଇ ଦେବ ନାହିଁ ତ ? ପ୍ରତିଦିନ ଶୟନ ସମୟରେ ଶାଲ୍ମଳୀଦ୍ୱୀପ ଶଙ୍କା ମନରେ ଭାବିଲା, ମୋତେ ଶିମୂଳୀ ତୂଳା ମନେ କରି କାଳେ ଶଯ୍ୟା କରିବ । ଦେବପୂଜା କରିବାବେଳେ ପୁଷ୍କର ଦ୍ୱୀପ ଭୟ କଲା, ମୋତେ ପଦ୍ମଫୁଲ ବିଚାରି କାଳେ ଉପାଡ଼ି ନେବ । ପୃଥ୍ୱୀ ମଣ୍ଡଳରେ ଯେତେ ରାଜାସବୁ ଥିଲେ; ତାଙ୍କୁ ପ୍ରଜା କରି, ନିଜର ବାହୁ ପ୍ରତାପରେ ତାଙ୍କଠାରୁ କର ଆଦାୟ ପୂର୍ବକ ବିଶେଷ ଭାବରେ ଭୋଗ କଲା । ପ୍ରତାପରେ ତାଙ୍କଠାରୁ କର ଆଦାୟ ପୂର୍ବକ ବିଶେଷ ଭାବରେ ଭୋଗ କଲା । ଏଣୁ ସମସ୍ତଙ୍କର ଅଜେୟ ହୋଇ ରହିଲା । ( ପୃଥିବୀର ସମସ୍ତ ରାଜା ତାହାର ପ୍ରଜା ହେଲେ ।

୧୮ଶ ପଦ.—ଯେଉଁ ରାବଣର ପାତାଳରେ ଥିବା ବଳି ରାଜାର ବନ୍ଧନ ଫେଡ଼ିବାକୁ ସାହସ ହେଲା, କୋଟିସିଂହ ପରାକ୍ରମ କାଳକୁ ଧରିବାକୁ ଇଚ୍ଛା ହେଲା, ସେ କାଳଠାରୁ କହୁତ ପରାଭବ ପାଇଲେ ହେଁ ଲେଶ ମାତ୍ର ବିକଳ ହେଲା ନାହିଁ; ପଣ୍ଡିତମାନେ ମନରେ ଭାବ, ସେ କିପରି ବୀର; ତାକୁ ଆଉ କେହ ସରିସମ ନାହାନ୍ତି । ନର୍ମଦା ନଦୀ ଜଳଟି ବନ୍ଦ କରିବାର ଦେଖି ସହସ୍ରାର୍ଜୁନ ସହିତ ବିବାଦୀ ହେଲା । ସେଠାରେ ବନ୍ଧନରେ ପଡ଼ିଲା ( ସହସ୍ରାର୍ଜୁନ ଦ୍ୱାରା ବନ୍ଦୀ ହେଲା ) ସହସ୍ରାର୍ଜୁନ ତାକୁ ଖଡ଼୍ଗରେ ହାଣନ୍ତେ ଛିଡ଼ିଲା ନାହିଁ, ଅନଳରେ ପୋଡ଼ନ୍ତେ ଦଗ୍ଧ ହେଲା ନାହିଁ, ଜଳରେ ପକାନ୍ତେ ବୁଡ଼ି ନ ଯାଇ ରହିଲା । ମଦ୍ଦା

ବାହୁଁ ସହସ୍ରଙ୍କେ ହୋଇଲା ବାନ୍ଧି ଯେ ।
ବହିବାରୁ ପାଇଟି ନର୍ମଦାନଦୀ ଯେ ।
ବନ୍ଧନେ ସନ୍ଧି ଖଡ୍‌ଗେ ନ ଛିଣ୍ଡି, ଅନଳଯୋଗେ ନ ଗଲା ପୋଡ଼ି,
ଜଳେ ନ ବୁଡ଼ି ସଂଶୟ ଛିଣ୍ଡି ବରେ ପ୍ରମୋଦ ଯେ । ୧୮ ।
ବେଦବତୀରେ ମନ ବଳାଇ ଦେଲା ସେ କନ୍ୟା ତନୁ ଜଳାଇ
ମୋ ହେତୁ ମୃତ୍ୟୁ ଏ ଶାପ ପାଇ ତହୁଁ ଚପଳେ ଯେ ।
ବୋଲି ମର୍କଟ ନିନ୍ଦ ନନ୍ଦୀରେ ଅନଙ୍ଗ ହର ତଳପ୍ରହାରେ
ବୋଲେ ସେ ହେଉ ପ୍ରାଭବ ତୋରେ ବାନରେ ନରେ ଯେ ।
ବଧିଲା ଅନରଣ୍ୟକୁ ଅଯୋଧ୍ୟା ପୁରେ ଯେ ।
କଳହବରେ ଅତି ମାୟାଯୁଦ୍ଧରେ ଯେ ।
ବଂଶେ ମୋ ନାଶ ଯିବୁ ଅବଶ୍ୟ ନର ଅବଜ୍ଞା କଲୁ ରାକ୍ଷସ,
କହିଲା ତହୁଁ ସେହି ମହୀଶ ହତବାକରେ ଯେ । ୧୯ ।

---

୧୯ଶ ପଦ—ନନ୍ଦୀ—ଶିବଙ୍କ ଦ୍ୱାରପାଳ । ତଳ ପ୍ରହାରେ—ଚୃପଡ଼ାରେ । କଳହବରେ—ପ୍ରଧାନ ଯୁଦ୍ଧରେ । ମହୀଶ—ରାଜା ।

---

ବିଷୟରେ କୌଣସି ସନ୍ଦେହ ନ ରହିବାରୁ, ବ୍ରହ୍ମା ବରରେ ଆନନ୍ଦିତ ହେଲା । ( ଅନ୍ୟାର୍ଥ– କାହିଁରେ ନ ମରିବାର ଦେଖି ସହସ୍ରାର୍ଜୁନ ମନରୁ ସନ୍ଦେହ ଦୂର ହେଲା ଯେ, ଏ ବ୍ରହ୍ମା ବର ବଳରେ ଅଦୌ ମରିବ ନାହିଁ । )

୧୯ଶ ପଦ— ବେଦବତୀ କନ୍ୟାଠାରେ ମନ ବଳାଇ ତାକୁ ବଳାତ୍କାର କରିବାରୁ ସେ କନ୍ୟା 'ମୋ ଯୋଗୁ ତୋହର ମରଣ ହେଉ' ଏହି ଶାପ ଦେଇ ନିଜ ଦେହକୁ ଅଗ୍ନିରେ ପୋଡ଼ି ପକାଇଲା । ସେଠାରୁ ଏପରି ଶାପପାଇ କୈଳାସ ଶୀଘ୍ର ଯାଇ ନନ୍ଦୀକୁ ମର୍କଟ ବୋଲି ନିନ୍ଦା କଲା ଓ ଚୃପୋଡ଼ା ମାରି ତାହାକୁ ଦୁଃଖ ଦେଲା । ନନ୍ଦୀ କହିଲା, "(ମୋତେ ମର୍କଟ ବୋଲି ନିନ୍ଦା କଲୁ ) ତୁ ମର୍କଟ ଓ ମନୁଷ୍ୟଙ୍କ ଦ୍ୱାରା ଅଶେଷ ଦୁଃଖ ପାଇବୁ ।" ତହିଁ ଅଭିଶାପ ପାଇ ଯାଇ ଅଯୋଧ୍ୟାରେ ଅନରଣ୍ୟ ରାଜାଙ୍କୁ ଭୟଙ୍କର ଯୁଦ୍ଧରେ ମାୟା ସମର କରି ବଧ କରନ୍ତେ, ସେ ମଲାବେଳେ ଶାପ ଦେଲେ, "ରେ ରାକ୍ଷସ, ତୁ ନର ବୋଲି ମୋତେ ଅବଜ୍ଞା କଲୁ, ତୁ ମୋ ବଂଶର ରାଜା ହସ୍ତରେ ବିନାଶ ହେବୁ ।"

ବିବୁଧାଳୟୁ ଅଭୀରଗ୍ରାମ ପରି ସୁରଭୀ ଲୁଣ୍ଠନେ ଯେତ
ସୁମନବ୍ରଜେ ସେ ଦଣ୍ଡ ଯମ 'ଦମନେ ଦେଇ ଯେ ।
ବାଳକ ଅଧିକାରକ ସୁତ ଯାହା ଅଙ୍କରେ ସେ ଇନ୍ଦ୍ରଜିତ
ଖ୍ୟାତି ପାଇଲା ଜଗତଜାତ ବର୍ଷରେ ଅର୍ଦ୍ଧ ଯେ ।
ବଳିସଦ୍ମ ପକ୍ୱଣ ପ୍ରାପ୍ତ କଲା ଯେ ।
ବାଜି ଝମକ ତାଙ୍କୁ ଚମକ ଦେଲା ଯେ ।
ବଞ୍ଚିଲେ ଲୁଚି ସେ ମଦଭର ନାଗେଶ୍ୱର ଗୋପ୍ୟ ସ୍ଥାନର
ମଣି ଦୀପ୍ତି ଦେଖାଇବାର ସମ୍ଭବ ହେଲା ଯେ । ୨୦ ।
ବୈଜୟନ୍ତ ଯାହା ଜଗତ ବୈଜୟନ୍ତ ରଥରେ ସ୍ଥିତ
ମୋତେ ଏ ବାନ୍ଧି ନେବାକୁ ଗତି କରେ ନଭରେ ଯେ ।

---

୨୦ଶ ପଦ :—ବିବୁଧାଳୟ—ସ୍ୱର୍ଗ । ଅଭୀରଗ୍ରାମ—ଗୌଡ଼ସାହି । ସୁରଭି—କାମଧେନୁ । ସୁମନ—ଦେବତା । ବ୍ରଜ—ସମୂହ । ବଳିସଦ୍ମ—ପାତାଳ । ପକ୍ୱଣ—ଶବରପଲ୍ଲୀ । ମଦଭର-ନାଗେ—ଗର୍ବିତ ନାଗସମୂହ ।

୨୧ଶ ପଦ:—ବୈଜୟନ୍ତ—ପତାକା । ଜଗତ—ଅଟ୍ଟାଳିକା । ବୈଜୟନ୍ତ—ଇନ୍ଦ୍ରଙ୍କର ଅଟ୍ଟାଳିକା । ଦିବଭିନ—ସୂର୍ଯ୍ୟ । ବେନି ଅୟନ—ଦୁଇ ମାର୍ଗ

---

୨୦ଶ ପଦ :—ରାବଣ ସ୍ୱର୍ଗକୁ ଗଉଡ଼ ସାହି ବୋଲି ମନେ କଲା । ସେ ସ୍ଥାନ ସ୍ୱର୍ଣ୍ଣସବୁ ଗାଈପରି ହେଲେ । ସେ ତାହା ଲୁଟିବାର ଗୋପାଳଙ୍କୁ ଦଣ୍ଡ ଦେଲା ପରି ଦେବତାମାନଙ୍କୁ ବହୁତ ଦଣ୍ଡ ଦେଲା । ତାହା ଅନ୍ତରେ ତାହାର ପୁଅ ଇନ୍ଦ୍ରଙ୍କୁ ବାନ୍ଧି ବିଧାତାଙ୍କଠାରୁ ଇନ୍ଦ୍ରଜିତ ନାମରେ ଖ୍ୟାତି ପାଇଲା । ରାବଣ ପାତାଳ ପୁରକୁ ଶବର ସାହି ପରି କଲା । ଝମକ ବାଜିଲେ ଶବରମାନେ ଯେପରି ଚମକନ୍ତି, ତାଙ୍କୁ ସେହିପରି ଚମକ ଦେଲା । ସେ ସ୍ଥାନର ଅତି ଗର୍ବୀ ଶ୍ରେଷ୍ଠ ନାଗମାନେ ଗୋପନୀୟ ସ୍ଥାନରେ ଲୁଚି ପ୍ରାଣରକ୍ଷା କରିବାକୁ ଭାବିଲେ; ମାତ୍ର ଲୁଚି ପାରିଲେ ନାହିଁ । କାରଣ ତାଙ୍କ ମସ୍ତକରେ ଥିବା ମଣି ଦୀପ୍ତି ପରି ଜଳି ତାଙ୍କୁ ଚହଟାଇ ଦେବାରୁ ସେମାନେ ରାବଣକୁ ଅନ୍ଧାରରେ ମଶାଲ ଦେଖାଇଲେ ବୋଲି ଲାଜ ଛାଡ଼ି ତାର ଦାସତ୍ୱ ସ୍ୱୀକାର କଲେ ।

୨୧ଶ ପଦ :—ରାବଣ ଅଟ୍ଟାଳିକାର ପତାକା ପବନରେ ଫରଫର ଉଡ଼ିବାରୁ ଇନ୍ଦ୍ରଙ୍କ ପ୍ରାସାଦ ମନରେ ଭୟ କଲା, 'ମୋତେ ବାନ୍ଧି ନେବା ପାଇଁ ସେ ଆକାଶରେ ଗତି କରୁଅଛି କି ?' ସୂର୍ଯ୍ୟ ମଧ୍ୟ ଆକାଶରେ ଗତି କଲାବେଳେ

ଦକ୍ଷିଣର ରଥ ହାଟବାଡ଼ ଉତ୍ତରେ ମଧ୍ୟ ଗଗନ ଘଡ଼

ଯେବେ ଅଶ୍ୱକ ଚଳନେ ଜଡ଼ ଶଶ୍ୱ ନିର୍ଭରେ ଯେ ।

ବୃଥା ଏ କଥା ନୋହେ ଭୂଇଁ ବଗୃହ ଯେ ।

ବୋଲାଉଛି ସେ ମେଘଦଣ୍ଡ ପାଟେଶ୍ୱ ଯେ ।

ବଇରିପୂଗ ଦୁର୍ଗମଦୁର୍ଗ ଯହିଁ ପରିଖା ସାଗର ଅଗ

ଏପରି ହୋଇ ପାତାଳ ସ୍ୱର୍ଗ ସେ ଝୁଡ଼ କରେ ଯେ । ୨୧ ।

ବଳୀ ଏକରେ ସେ ତ ରୁଚିର, ବହୁତ ବଳୀ ଛନ୍ତି ଏଥିର,

ସେ ଗୃରୁ ଶେଷରଙ୍ଗେ ଏ ରୁଚିର, ଅଶେଷ ରଙ୍ଗେ ଯେ ।

ବସଇ ସୁନାସୀରେକ ତହିଁ ଏ କେତେ ସୁନାସୀରରେ ନଷାହି

ଏପରି ହୋଇ ଚିତ୍ରରଥହିଁ କେବଳ ବର୍ଗେ ଯେ ।

---

(ଉତ୍ତରାୟଣ ଓ ଦକ୍ଷିଣାୟନ) । ପୂଗ—ସମୂହ । ଦୁର୍ଗମ ଦୁର୍ଗ—ଅଗମ୍ୟ ଗଡ଼ । ପରିଖା—ଗଡଖାଇ ।

୨୨ଶ ପଦ :—ରୁଚିର—ଶୋଭନୀୟ । ବଳୀ—ବଳବାନ୍‌ବ୍ୟକ୍ତି । ଗୃରୁ—ସୁନ୍ଦର । ସୁନାସୀର—ଇନ୍ଦ୍ର । ସୁନାସୀର—ପ୍ରଧାନଯୋଦ୍ଧା । ବର୍ଗେ—ଅନେକ । ଶାଳାଦ୍ରି ଚନ୍ଦ୍ର—ଜଗନ୍ନାଥ ।

---

କାଳେ ସବଳ ଅଶ୍ୱ ଜଡ଼ାରେ ରଥ ବାଜି ତୁନା ହୋଇ ଯିବ ଏହି ଉତ୍ତରାୟଣ ଓ ଦକ୍ଷିଣାୟନରେ ଚକ୍ର ଦବି ନିଶ୍ଚେଷ୍ଟ ହେଲେ । ବଗୃହ ଭୂଇଁ ( ହେ ପଣ୍ଡିତେ ) ଏହା ମିଛ ନୁହେ । ଯାହାର ପାଟେଶ୍ୱ ମେଘଦଣ୍ଡ (ପାଟେଶ୍ୱ ଏତେ ଉଚ୍ଚ ଯେ ମେଘମାନେ ଆକାଶରେ ଚଳି ବସିବେଳେ ସେଥିରେ ବାଜି ନଷ୍ଟ ହୋଇଯାନ୍ତି), ଜେତ ଶତ୍ରୁଙ୍କ ଦ୍ୱାରା ଦୁର୍ଭେଦ୍ୟ ଓ ଗଡ଼ର ଖାଇରୂପେ ଗୃହ ଅଚ୍ଛେ ସମୁଦ୍ର ବିଦ୍ୟମାନ,—ଏହିପରି ଯେ ଲଙ୍କା ସେ ପ୍ରଥମ ସ୍ଥାନ ପାଇ ସ୍ୱର୍ଗ ଓ ପାତାଳକୁ ନିନ୍ଦା କରୁଅଛି ।

୨୨ଶ ପଦ :—ପାତାଳପୁର ଗୋଟିଏ ମାତ୍ର ବଳୀ (ବଳିରାଜା) ଦ୍ୱାରା ଶୋଭା ପାଉଛି, ମାତ୍ର ଏ ଲଙ୍କାପୁରରେ ବହୁତ ବଳୀ ( ବଳବାନ୍ ବୀର ) ବିଦ୍ୟମାନ ଅଛନ୍ତି । ପାତାଳ ଶେଷଦେବଙ୍କ ରଙ୍ଗରେ ( ତେଜରେ ) ସୁନ୍ଦର, ମାତ୍ର ଏ ଲଙ୍କାପୁର ଅଶେଷ ରଙ୍ଗରେ ( ବହୁତ ବର୍ଣ୍ଣରେ ) ସୁନ୍ଦର । ସ୍ୱର୍ଗରେ ଗୋଟିଏ ମାତ୍ର ସୁନାସୀର (ଇନ୍ଦ୍ର) ବସେ, ମାତ୍ର ଏଠାରେ କେତେ ସୁନାସୀର (ସେନାପତି) ଶୋଭା ପାଉଛନ୍ତି । ସ୍ୱର୍ଗ ଏକ ମାତ୍ର ଚିତ୍ରରଥ (ଚିତ୍ରରଥ ନାମକ ଗନ୍ଧର୍ବ) ଦ୍ୱାରା ଶୋଭିତ, ମାତ୍ର ଏଠାରେ ଚିତ୍ରରଥବର୍ଗ (ବହୁତ ଚିତ୍ର ତ ରଥ ସବୁ) ବିଦ୍ୟମାନ । ବଡ଼ ବଡ଼ ଦାନବମାନେ ଏକରେ ଥିଲେ, କିନ୍ତୁ ରାବଣ

ବଡ଼ ବଡ଼ ଦାନବ ପୂର୍ବରେ ଥିଲେ ଯେ ।
ବଡାଇବା ଏରୂପେ କବି ନ ଥିଲେ ଯେ ।
ଶରଣ ବୀରବର ଉପେନ୍ଦ୍ର- ଭଞ୍ଜ ସ୍ୱଚ୍ଛନ୍ଦେ ବର୍ଣ୍ଣନ ଛାନ୍ଦ
ଶାନ୍ତ ନିଶ୍ଚିନ୍ତ ନୀଳାଦ୍ରି ଚନ୍ଦ୍ର ଧ୍ୟାନ ସଫଳେ ଯେ ।୨୨।

---

## ଦ୍ୱିତୀୟ ଛାନ୍ଦ

### ରାଗ—ମଙ୍ଗଳ ଗୁଜ୍ଜରୀ

ବିବୁଧ ! ଦୂଷଣ ବିବର୍ଜିତ ଗୀତେ ରସ ।
ବିଷ୍ଣୁ ଚରିତ ତ୍ୱରିତ କରିବ ହରଷ ଯେ । ୧ ।
ବାମଦେବ ଦେବରାଜ ଗୁରୁ ସଙ୍ଗତରେ ।
ସୁମନେ ସୁମନେ ଗଲେ କ୍ଷୀରସିନ୍ଧୁତୀରେ ଯେ । ୨ ।
ବ୍ରହ୍ମାଣ୍ଡ ଯୋଡ଼ିତେ ଭୀତେ ବ୍ରହ୍ମା ପ୍ରମୁଖରେ ।
ବିଶ୍ୱମ୍ଭର ଉରସାରେ ସ୍ତୁତି କଲେ ତୀରେ ଯେ । ୩ ।

---

୧ମ ପଦ :—ବିବୁଧ—ପଣ୍ଡିତ । ଦୂଷଣବର୍ଜିତ—ଦୋଷଶୂନ୍ୟ ତ୍ୱରିତ—ଶୀଘ୍ର ।

୨ୟ ପଦ :— ବାମଦେବ—ଶିବ । ଦେବରାଜ—ଇନ୍ଦ୍ର । ଗୁରୁ — ବୃହସ୍ପତି । ସୁମନେ—ଦେବଗଣ ।

୩ୟ ପଦ :—ଯୋଡ଼ିତ—ହସ୍ତ । ଭୀତେ—ଭୟରେ । ବ୍ରହ୍ମା ପ୍ରମୁଖରେ—ବ୍ରହ୍ମାଙ୍କ ଅଗ୍ରଣୀରେ । ବିଶ୍ୱମ୍ଭର—ବିଷ୍ଣୁ ।

---

ପୂର୍ବ ଏତେ ବଡ଼ାଇ କବି ନ ଥିଲେ । ବୀରବର ଉପେନ୍ଦ୍ର ଭଞ୍ଜ ସ୍ୱଚ୍ଛନ୍ଦରେ ଓ ନିଶ୍ଚିନ୍ତରେ ଜଗନ୍ନାଥଙ୍କ ଧ୍ୟାନରେ ସଫଳତା ଲଭି ଏ ବର୍ଣ୍ଣନ ଛାନ୍ଦ ରଚନା କଲେ ।

---

## ଦ୍ୱିତୀୟ ଛାନ୍ଦ

୧ମ ପଦ :—ହେ ପଣ୍ଡିତମାନେ ! ଦୋଷ ରହିତ ଗୀତରେ ଅନୁରକ୍ତ ହୁଅ । କାରଣ ଏ ବିଷ୍ଣୁ ଚରିତ ଶୀଘ୍ର ହର୍ଷ ପ୍ରଦାନ କରିବ ।

୨ୟ ଓ ୩ୟ ପଦ —ବ୍ରହ୍ମାଣ୍ଡ ଅସ୍ଥିର ହେବାରୁ ମହାଦେବ, ଇନ୍ଦ୍ର, ବୃହସ୍ପତି ଆଦି ଓ ଅନ୍ୟ ଦେବତାମାନେ ବ୍ରହ୍ମାଙ୍କ ସଙ୍ଗରେ ଯାଇ କ୍ଷୀରସିନ୍ଧୁ ତୀରରେ ବିଶ୍ୱମ୍ଭରଙ୍କୁ (ସମସ୍ତ ବ୍ରହ୍ମାଣ୍ଡର ଧାରଣ କର୍ତ୍ତାଙ୍କୁ) ସ୍ତୁତି କଲେ ।

ଧୃତ ଲୀଳା ଲୋହିତ ରୋହିତ ମଚ୍ଛ ।
ବେଗେ ଦରଦୈତ୍ୟ ଦରଦାନେ ହୋଇ ରତ ହେ ।୪।
ଧୃତ ଅମନ୍ଦମନ୍ଦର କୂର୍ମ ନମୋନମ ।
ବାରିଧିଅମୃତ ମନ୍ଥୁ ଅମୃତ ଜନମ ଯେ ।୫।
ବିପକ୍ଷେ ଦେବାରି ବାରି ପରଶିଲ ସୁଧା ।
ବିଶ୍ୱମୋହିତ ମୋହିନୀରୂପରେ ବିଶ୍ୱଭା ଯେ ।୬।
ବରାହବର ବରାହବର ସୁମଣ୍ଡିତ ।
ବିକ୍ଷିତିମହୀର ହିରଣ୍ୟାକ୍ଷକୁ ଖଣ୍ଡିଛ ଯେ ।୭।
ବପୁବନ୍ତ ହରି ହରି ପ୍ରହ୍ଲାଦ ପୁଣ୍ୟକୁ ।
ବିଦାରିଲ କଟିସରି କରି ହିରଣ୍ୟକୁ ଯେ ।୮।

---

୪ର୍ଥ ପଦ —ଲୋହିତ— ରକ୍ତବର୍ଣ୍ଣ । ରୋହିତ—ରୋହିମାଛ । ଦରଦୈତ୍ୟ —ଶଙ୍ଖାସୁର । ଦରଦାନ—ଭୟ ଛେଦନ ।

୫ମ ପଦ—ଅମନ୍ଦ ମନ୍ଦର—ବୃହତ୍ ମନ୍ଦର ପର୍ବତ । ବାରିଧିଅମୃତ —ସାଗର ଜଳ ।

ଷଷ୍ଠ ପଦ—ଦେବାରି—ରାକ୍ଷସ । ବାରି—ନିଷେଧ କରି । ବିଶ୍ୱଭ— ବିଷ୍ଣୁଙ୍କ ।

୭ମ ପଦ—ବରାହବର—ଶ୍ରେଷ୍ଠ ବରାହ । ବରାହବର—ଭୟଙ୍କର ଯୁଦ୍ଧ । ବିକ୍ଷିତିମହୀର—ଚକ୍ରବର୍ତ୍ତୀ ।

୮ମ ପଦ —ବପୁବନ୍ତହରି—ନୃସିଂହ ମୂର୍ତ୍ତି ଧାରୀ [ ନାରାୟଣ ] । ପଣ— ତୃଣ । କଟି—ହାଟ ।

---

୪ର୍ଥ ପଦ—ହେ ଭଗବାନ ! ଲୀଳାରେ ଲୋହିତ ବର୍ଣ୍ଣ ରୋହି ମତ୍ସ୍ୟର ମୂର୍ତ୍ତି ଧରି ଶଙ୍ଖାସୁରର ଭୟରୁ ରକ୍ଷା କରିଥିଲ ( ଶଙ୍ଖାସୁରକୁ ବିନାଶ କରିଥିଲ ) ।

୫ମ ଓ ୬ଷ୍ଠ ପଦ—ତୁମ୍ଭେ ବୃହତ୍ ମନ୍ଦର ପର୍ବତକୁ ବହନ କରି ସମୁଦ୍ରଜଳ ମନ୍ଥନ କରାଇ ଅମୃତ ଜନ୍ମାଇଥିଲ । ପୁଣି ବିଶ୍ୱମୋହିନୀ ମୋହିନୀ ରୂପ ଧାରଣ କରି ଶତ୍ରୁ ଭାବରେ ଅସୁରମାନଙ୍କୁ ଦୂରେ ରଖି ଅମରମାନଙ୍କୁ ଅମୃତ ପରଶିଲ । ଏପରି ଯେ କୂର୍ମ ଅବତାର, ତୁମ୍ଭଙ୍କୁ ନମସ୍କାର ।

୭ମ ପଦ—ହେ ବରାହଶ୍ରେଷ୍ଠ ! ତୁମ୍ଭେ ଖଣ୍ଡିତ ପୃଥ୍ୱୀପତି ହିରଣ୍ୟାକ୍ଷ ଦୈତ୍ୟକୁ ଶ୍ରେଷ୍ଠ ଯୁଦ୍ଧରେ ବିନାଶ କରିଅଛ ।

୮ମ ପଦ—ହେ ହରି ! ପ୍ରହ୍ଲାଦର ପୁଣ୍ୟ ଫଳରେ ନରସିଂହ ରୂପ ଧରି ଓ ହିରଣ୍ୟକୁ ହାଟପରି ବିଦାରଣ କଲ ।

ବାମନ ମନମୋହନ ହୋଇ ଭୂଦାନରେ ।
ବଳିଷ୍ଠ ବଳିଙ୍କି ଚପି ଅଧୋଭୁବନରେ ଯେ । ୯ ।
ତୁଲ୍ୟ ଭୃଗୁବଂଶବର ପରଶୁଧାରଣ ।
ବାହୁଜ ବାହୁସହସ୍ର ଦାରଣ କାରଣ ହେ । ୧୦ ।
ଦଶକନ୍ଧର କରଣୀକି ନାହିଁ ସର ରକ୍ଷ ।
ବନତ ଉନ୍ନତଶିରେ ଅମ୍ଭେ, ପ୍ରଭୁ ! ରକ୍ଷ ହେ । ୧୧ ।
ବୁଧ ବିବୁଧଙ୍କ ସ୍ତୁତ ଶୋଭା କମ୍ବୁଧର ।
ବଶୀଭୂତ ହେଲେ ବହି ଗରୁଡ଼କନ୍ଧର ଯେ । ୧୨ ।
ବୋଇଲେ ପ୍ରବରବର ଧନ କାହିଁପାଇଁ ।
ବେଶ୍ମରେ ତ୍ରିପୁରଙ୍କର ଦୈତ୍ୟେ ଜାଣ ନାହିଁ ହେ ।୧୩।

---

୯ମ ପଦ—ଭୂଦାନ—ଭୂମିଦାନ । ଅଧୋଭୁବନ—ପାତାଳ ।

୧୦ମ ପଦ—ଭୃଗୁବଂଶବର—ଭୃଗୁବଂଶ ଶ୍ରେଷ୍ଠ । ବାହୁଜ—କ୍ଷତ୍ରିୟ । ବାହୁ ସହସ୍ର—ସହସ୍ରାର୍ଜୁନ । କାରଣ—ନିଷେଧ ।

୧୧ଶ ପଦ—ଦଶକନ୍ଧର—ରାବଣ । କରଣୀ—ପ୍ରତାପ । ସର—ସମାନ । ରକ୍ଷ—ରାକ୍ଷସ ।

୧୨ଶ ପଦ—ବୁଧ ବିବୁଧଙ୍କ—ସବୁ ଦେବତାମାନଙ୍କ । କମ୍ବୁଧର—ଶଙ୍ଖଧାରୀ ( ବିଷ୍ଣୁ ) ।

୧୩ଶ ପଦ—ପ୍ରବର ବର—ଉତ୍କୃଷ୍ଟ ବର । ତ୍ରିପୁର—ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ।

---

୯ମ ପଦ—ସୁନ୍ଦର ବାମନ ମୂର୍ତ୍ତି ଧାରଣ କରି ଭୂମିଦାନ ନେବା ସମୟରେ ବଳବାନ୍ ବଳୀକୁ ପାତାଳରେ ଚପିଥିଲ ।

୧୦ମ ପଦ—ହେ ହରି ! ଭୃଗୁକୁଳ ଶ୍ରେଷ୍ଠ ( ପରଶୁରାମ ) ରୂପରେ ପରଶୁ ( କୁଠାର ) ଧରି କ୍ଷତ୍ରିୟ ବୀର କାର୍ତ୍ତବୀର୍ଯ୍ୟର ବିନାଶର କାରଣ ହେଲ ।

୧୧ଶ ପଦ—ଏବେ ରାବଣର ପ୍ରତାପକୁ ସମାନ ହେବାପରି ରାକ୍ଷସ ଆଉ ନାହିଁ । ତେଣୁ ( ତାହାର ପ୍ରତାପରେ ) ଆମେ ନିସ୍ତେଜ ହୋଇ ପଡ଼ିବାରୁ ତୁମ୍ଭଙ୍କୁ ବନ୍ଦନା କରୁଅଛୁ । ହେ ପ୍ରଭୋ ! ରକ୍ଷା କର ।

୧୨ଶ ଓ ୧୩ଶ ପଦ—ଶଙ୍ଖଧାରୀ ବିଷ୍ଣୁ ସବୁ ଦେବତାଙ୍କ ସ୍ତୁତିରେ ବଶୀଭୂତ ହୋଇ ଗରୁଡ଼ କନ୍ଧରେ ବସି ଆସି କହିଲେ, "ତାହାଙ୍କ ଏପରି ଉତ୍କୃଷ୍ଟ ବର କିଆଁ ? ସ୍ୱର୍ଗରେ ଦୈତ୍ୟମାନେ ତ୍ରିପୁରର ଶତ୍ରୁ ; ଏହା କଣ ଜାଣ ନାହିଁ କି ?"

ବୋଇଲ ଯେ ଦୁର୍ବ ପୂର୍ବଦେବେ ବଳେ ସାର ।
ବିନାଶରେ କୀନାଶ ପ୍ରକାର ସଂସାର ଯେ । ୧୪ ।
ବିଧି ବିଧିଲେ ଶୁଣି ତା ଏ ଉକ୍ତିବଚନ ।
ଦର କରୁଁ ଜଗତେ ଏ ଶଙ୍କେ ବିରଚନ ଯେ । ୧୫ ।
ବିଲୋକନ ହେବ ନବ ନବ ଅବତାର ।
ବିଧୁର ମଧୁରଲୀଳା ହୋଇବ ବିସ୍ତାର ଯେ । ୧୬ ।
ବୃଷଭାସନେ ବୃଷଭୂଷଣେ ଅଚିରେ ।
ଭଣେ ତାର ଯେଉଁ ନାମ ତାରକ ମନ୍ତ୍ରର ଯେ । ୧୭ ।
ବିଧି ସେହି ମୂରତି ରତୀଶକୋଟି ଜିତ ।
ବାଞ୍ଛା ପୂରୁ ହେ ପୁରୁଷୋତ୍ତମ ! ମୁଁ ଚକିତ ହେ । ୧୮ ।

---

୧୪ଶ ପଦ—ପୂର୍ବଦେବ—ରାକ୍ଷସ । କୀନାଶ—ଯମ ।
୧୫ଶ ପଦ—ବିଧି—ବ୍ରହ୍ମା । ବିଧିଲେ—କହିଲେ ।
୧୬ଶ ପଦ—ବିଲୋକନ ହେବ—ଦେଖାଯିବ । ବିଧୁର—ବିଷ୍ଣୁଙ୍କର । ମଧୁରଲୀଳା—ମନୋହର କ୍ରୀଡ଼ା ।
୧୭ଶ ପଦ—ବୃଷଭାସନ—ଶିବ । ବୃଷଭୂଷଣ—ଈଶ୍ୱର । ଅଚିରେ—ଅତି ଶୀଘ୍ର । ତାର—ତାଙ୍କର ।
୧୮ଶ ପଦ—ରତୀଶକୋଟିଜିତ—କୋଟିକନ୍ଦର୍ପଜିତ ।

---

୧୪ଶ ପଦ—'ରାକ୍ଷସମାନେ ଖୁବ୍ ବଳବାନ୍ ଓ ସଂସାର ବିନାଶ କରିବାରେ ଯମ ସଦୃଶ । ତୁମ୍ଭେ କହୁଛ ଯେ, ରାବଣ ଏମାନଙ୍କ ଅପେକ୍ଷା ମଧ୍ୟ ଶ୍ରେଷ୍ଠ । ( ତେବେ ଏପରି କର ଦେଇ ପାରିବ ? )"
୧୫ ଓ ୧୬ଶ ପଦ —ବିଷ୍ଣୁଙ୍କର ବଚନ ଶୁଣି ବିଧାତା ଉତ୍ତରରେ କହିଲେ, "ଆପଣଙ୍କର ନୂଆ ନୂଆ ଅବତାର ଦର୍ଶନ ଓ ନାନା ଲୀଳାର ବିଶ୍ଳେଷଣ ହେବ । ହୃଦୟରେ ଏହି ଚିନ୍ତା କରି ଆମେ ଜଗତରେ ନର ପ୍ରଦାନ କରୁ ।"
୧୭ଶ ଓ ୧୮ଶ ପଦ — ତାହା ପରେ ମହାଦେବ ଶୀଘ୍ର ଯାଇ ଈଶ୍ୱରରେ କହିଲେ, 'ହେ ବିଭୋ ! ହେ ପୁରୁଷୋତ୍ତମ ! ଯେଉଁ ତାରକ ମନ୍ତ୍ର ପ୍ରାପ୍ତ ହୋଇ କାମଦେବକୁ ଜୟ କରିଛି, ସେ ରାମ ମୂର୍ତ୍ତି ଧାରଣ କର । ମୁଁ ସେ ମୂର୍ତ୍ତି ଦେଖିବା ପାଇଁ ଚକିତ ଅଛି, ମୋର ମନୋବାଞ୍ଛା ପୂର୍ଣ୍ଣ ହେଉ ।"

ବିରୂପାକ୍ଷ ବୋଲିବାରେ ବାଟରେ କି ଶୋଚନ ।
ବିକ୍ଷଣ ଲୋଭେ ଈକ୍ଷଣ ତିନି ମୁଁ ରଚନ ହେ । ୧୯ ।
ବକ୍ତ୍ର ପାଞ୍ଚ ପାଞ୍ଚ ଏହି ବହି ସ୍ତୁତିକୁ ତ ।
ବହନ କହ ସେ ରୂପ ମୋହର ସୁକୃତେ ତହି । ୨୦ ।
ବାସ୍ତୋଷ୍ପତି ପତିତ ଅଛନ୍ତି କେତେ ଭାଷି ।
ବହ ସେ ରୂପ ସ୍ୱରୂପେ ନ ଯାନ୍ତୁ ସେ ଭାସି ହେ । ୨୧ ।
ବିଷ୍ୱକ୍‌ସେନ ସେନେହ କରି ଏ ଉତ୍ତରେ ।
ବିଧୁ-ବାଣ-ଜିତ ହାସ ପ୍ରକାଶି ସତ୍ୱରେ ଯେ । ୨୨ ।
ବହିବି ନାହିଁ ମୁଁ ଅରି ଅରିମାଣରେ ।
ବିରାଜମାନ ବି-ରାଜ ନ ଚଢି ରଣରେ ଯେ । ୨୩ ।
ବନୌକା ପ୍ରବଳ ବଳ ସଙ୍ଗ ହେବେ ହେଲେ ।
ବୋଲିଣ ଅନ୍ତର ଯେ ଅନ୍ତରଯାମୀ ହେଲେ ଯେ । ୨୪ ।

---

୧୯ଶ ପଦ—ବିରୂପାକ୍ଷ—ଅସୁନ୍ଦର ଆଖି । ବିକ୍ଷଣ—ଦେଖିବା । ଈକ୍ଷଣ—ଚକ୍ଷୁ ।

୨୦ଶ ପଦ—ବକ୍ତ୍ର ପାଞ୍ଚ—ପଞ୍ଚମୁଖ ।

୨୧ଶ ପଦ—ବାସ୍ତୋଷ୍ପତି—ଇନ୍ଦ୍ର । ପତିତ—ପାପୀ ।

୨୨ଶ, ୨୩ଶ ଓ ୨୪ଶ ପଦ—ବିଷ୍ୱକ୍‌ସେନ—ବିଷ୍ଣୁ । ବିଧୁ—ଚନ୍ଦ୍ର । ବାଣ—ବାଣଦଣ୍ଡୀଫୁଲ । ଅରି—ଚକ୍ର । ଅରିମାରଣରେ—ଶତ୍ରୁ ବିନାଶକାଳରେ ବି-ରାଜ—ଗରୁଡ଼ । ବନୌକା—ବାନର ।

---

୧୯ଶ ଓ ୨୦ଶ ପଦ—ମୋତେ ବିରୂପାକ୍ଷ ( ମୋର କଡ ଆଖି ଥିବାରୁ ) କହନ୍ତି, ସେଥିରେ ମୋର ତିଳେ ହେଲେ ଶୋଚନା ହୁଏ ନାହିଁ । ବିଶେଷ ଭାବରେ ସେହି ରାମ ରୂପ ଦେଖିବା ପାଇ ମୁଁ ତିନି ଆଖି ବହିଛି । ବହୁତ ମୁଖରେ ସ୍ତୁତି କରିବି; ଏହି ପାଞ୍ଚ ପାଇଁ ମୁଁ ପଞ୍ଚମୁଖ ବହନ କରିଛି । ମୋହର ସୁକୃତ ଲାଗି ସେହି ରାମ ରୂପ ଧାରଣ କର ।"

୨୧ଶ ପଦ—ଇନ୍ଦ୍ର କହିଲେ "ପାପୀ ଲୋକମାନେ ସଂସାରରେ ଅଛନ୍ତି, ସେମାନେ ଯେପରି ଭାସି ନ ଯାନ୍ତୁ । ତୁମ୍ଭେ ରାମ ରୂପ ଧାରଣ କର । ( ତୁମ୍ଭଙ୍କୁ ଦେଖିଲେ ସେମାନଙ୍କ ପାପ ଦୂର ହେବ ଓ ସେମାନେ ମୁକ୍ତି ଲାଭ କରିବେ ) ।

୨୨ଶ, ୨୩ଶ ଓ ୨୪ଶ ପଦ—ବିଷ୍ଣୁ ଦେବତାଙ୍କର ଉତ୍ତର ଶୁଣି ଚନ୍ଦ୍ର ଓ ବାଣଦଣ୍ଡୀଫୁଲକୁ ମଳିନ କରୁଥିବା ସେହି ମନ୍ଦସ୍ମିତ ହାସ ପ୍ରକାଶ କରି କହିଲେ, "ଶତ୍ରୁ ବିନାଶ କରିବାରେ ମୁଁ ଚକ୍ର ବହିବି ନାହିଁ, ସମର କ୍ଷେତ୍ରରେ ଗରୁଡ଼ ଉପରେ ନ ବସି ବିରାଜମାନ ହେବି । ଅସଂଖ୍ୟ ବାନରବଳ ସଙ୍ଗରେ ଧରି ଅବହେଳେ ଶତ୍ରୁ ନାଶ କରିବି ।" ଏହା କହି ଅନ୍ତର୍ଯାମୀ ଅନ୍ତର ହୋଇଗଲେ ।

ବୈଧାତ୍ର ବଧିତ ସ୍ଥିତ ଏମାନ ପ୍ରସଙ୍ଗେ ।
ବଧୂରେ ସାଧୂରେ ଗଙ୍ଗାକୂଳେ ଋଷି ସଙ୍ଗେ ଯେ । ୧୫ ।
ବିବେକ ସୁମନ୍ତ୍ର ସୁମନ୍ତ୍ରର ଥିଲା ଯାଇ ।
ବର୍ଣ୍ଣିଲା ପଚାରିଲା ଭାବ ଉପୁଜାଇ ଯେ । ୧୬ ।
ବୈଜୟନ୍ତୀମାଳାଧର ଧରଣୀକରତା ।
ବର୍ଷ୍ମ ଧରି କେଉଁ ଧରଣୀଶ କୁଳେ ରତା ଯେ ? ୧୭ ।
ବିଭ୍ରାଜିତ ଭବନରେ କଳରେ ହୋଇବେ ।
ବାତ୍ସଲ୍ୟରସବତ୍ସଳ ହୋଇଣ ଦଇବେ ଯେ ? ୧୮ ।
ବିକଶିତ ଶୀତକର ଧବଳ ପକ୍ଷରେ ।
ବିହାୟସେ ଯଥା ବିହାର ସେ ଏ ଲକ୍ଷରେ ଯେ । ୧୯ ।

---

୧୫ଶ ପଦ—ବୈଧାତ୍ର—ସନତ୍କୁମାର ।

୧୬ଶ ପଦ—ବିବେକ—ବିଚାରବନ୍ତ । ସୁମନ୍ତ୍ର—ବିଚାରଜ୍ଞ, ସୁମନ୍ତ୍ରମନ୍ତ୍ରୀ । ସୁମନ୍ତ୍ରର—ଉତ୍ତମ ମନ୍ତ୍ର ।

୧୭ଶ ପଦ—ବୈଜୟନ୍ତୀମାଳା—ବିଷ୍ଣୁଙ୍କର ସୁନାମପ୍ରସିଦ୍ଧ ମାଳା । ଧରଣୀକରତା—ସୃଷ୍ଟିକର୍ତ୍ତା । ବର୍ଷ୍ମ—ଦେହ । ଧରଣୀଶ—ରାଜା ।

୧୮ଶ ପଦ—ବିଭ୍ରାଜିତ—ପ୍ରକାଶିତ ।

୧୯ଶ ପଦ—ଶୀତକର—ଚନ୍ଦ୍ର । ଧବଳପକ୍ଷ—ଶୁକ୍ଲପକ୍ଷ । ବିହାୟସ—ଆକାଶ ।

---

୧୫ଶ ପଦ—ଗଙ୍ଗାକୂଳରେ ଋଷିଗଣ ପରିବେଷ୍ଟିତ ସନତ୍କୁମାରଙ୍କ କଥା ପ୍ରସଙ୍ଗରେ ଏହି ବିଷୟମାନ କହିଲେ ।

୧୬ଶ ପଦ—ବିବେକବନ୍ତ ଓ ଉତ୍ତମ ବିଚାରକ ସୁମନ୍ତ ମନ୍ତ୍ରୀ ସେଠାକୁ ଯାଇଥିଲେ । ସେ ଏହି ସବୁ କଥା ବର୍ଣ୍ଣିଲେ ଓ ମୁନିଙ୍କୁ ଭକ୍ତି ଭରେ ପଚାରିଲେ ।

୧୭ଶ ପଦ—"ବୈଜୟନ୍ତୀ ମାଳା ଧାରଣକାରୀ ଜଗତର କର୍ତ୍ତା ( ନାରାୟଣ ) କେଉଁ ରାଜାର ବଂଶରେ ଦେହ ଧରି ଜାତ ହେବେ ।"

୧୮ଶ ପଦ—"ଦେବ କଳରେ ବାତ୍ସଲ୍ୟରସରେ ଅନୁପ୍ରାଣିତ ହୋଇ ସେ ସ୍ୱତନ୍ତ୍ରରେ ପ୍ରକାଶିତ ହେବେ ନା ଜନରେ ଜାତ ହେବେ ?"

ବନ୍ଧୁବର୍ଗ ଜୀବଞ୍ଜୀବ ନୟନ ତୋଷିବେ ।
ବାପଙ୍କେ ଭକ୍ତସରବ-କୈରବ ଉଲ୍ଲାସିବେ ଯେ ? ୩୦ ।
ବୈରି-ପଦ୍ମଙ୍କର କର ହେବ ଅପୋଢ଼ତ ।
ବିଧୁ ନାମରୁ ଏଣୁ କି ମହୀରେ ଉଦିତ ଯେ ? ୩୧ ।
ବୋଲେ ପ୍ରସନ୍ନେ ସନତକୁମାର ପେଶଳେ ।
ବର୍ତ୍ତିବେ ଯେ ଉତ୍ତରକୋଶଳେ ସେ କୁଶଳେ ଯେ । ୩୨ ।
ବୋଲାଇବେ ଦାଶରଥି ରଥିଶ୍ରେଷ୍ଠ ହରି ।
ବର୍ଣ୍ଣିବେ କବିବୃନ୍ଦେ କବି ନେବେ ଶତ୍ରୁ ହରି ଯେ । ୩୩ ।
ବାହୁଡ଼ ସଚିବ ଶଚୀବରଭୂତ ଲଭେ ।
ବନ୍ଦନ ଅଜନନ୍ଦନ କୌଶଲ୍ୟାବଲ୍ଲଭେ ଯେ । ୩୪ ।

---

୩୦ଶ ପଦ :—ଜୀବଞ୍ଜୀବ—ଚକୋର । କୈରବ—କଇଁ ଫୁଲ ।

୩୧ଶ ପଦ :—କର—କିରଣ, ହାତ । ବିଧୁ—ବିଷ୍ଣୁ, ଚନ୍ଦ୍ର ।

୩୨ଶ ପଦ :—ପେଶଳେ—କୋମଳ ଭାବରେ । ଉତ୍ତର-କୋଶଳ—ଅଯୋଧ୍ୟା ।

୩୩ଶ ପଦ :—ରଥିଶ୍ରେଷ୍ଠ ଉତ୍ତମ ଯୋଦ୍ଧା ।

୩୪ଶ ପଦ :—ସଚିବ—ମନ୍ତ୍ରୀ, ( ସୁମନ୍ତ୍ର ) । ଶଚୀବରଭୂତ—ଇନ୍ଦ୍ର ସମ୍ପତ୍ତି । ଅଜନନ୍ଦନ କୌଶଲ୍ୟାବଲ୍ଲଭ—ଦଶରଥ ।

---

୨୯ଶ ଓ ୩୦ଶ ପଦ :—"ଶୁକ୍ଳପକ୍ଷରେ ଚନ୍ଦ୍ର ଆକାଶରେ ଉଦିତ ହୋଇ ବିହାର କଲାପରି ବିଷ୍ଣୁ ପ୍ରକାଶିତ ହୋଇ ଚକୋର ରୂପ ବନ୍ଧୁବର୍ଗଙ୍କୁ ତୋଷ କରିବେ ଓ କୁମୁଦ ରୂପ ଭକ୍ତମାନଙ୍କୁ ଉଲ୍ଲାସ କରିବେ କି ?"

୩୧ଶ ପଦ :—"ପଦ୍ମ ସଦୃଶ ଶତ୍ରୁମାନଙ୍କର ବିନାଶକାରୀ ହୋଇ ଚନ୍ଦ୍ର ନାମକୁ ସାର୍ଥକ କରି ମହୀରେ ଉଦିତ ହେବେ କି ?"

୩୨ଶ ପଦ—( ସୁମନ୍ତ୍ର ଏମନ୍ତ ପଚାରିବାରୁ ) ସନତ୍କୁମାର ପ୍ରସନ୍ନ ହୋଇ କହିଲେ, "ସୌନ୍ଦର୍ଯ୍ୟ ପୂର୍ଣ୍ଣ ଅଯୋଧ୍ୟାରେ ସେ କୁଶଳରେ ଜୀବନ ଧାରଣ କରିବେ ।"

୩୩ଶ ପଦ—"ରଥିଶ୍ରେଷ୍ଠ ହରି ଦାଶରଥି ବୋଲାଇବେ (ଦଶରଥଙ୍କର ପୁତ୍ର ହେବେ) । କବିମାନେ ତାଙ୍କ ଚରିତକୁ ବର୍ଣ୍ଣନା କରି ନାନା କବିତାରେ ଶତ୍ରୁ ହରଣ କରିବେ ।"

୩୪ଶ ଓ ୩୫ଶ ପଦ—ସୁମନ୍ତ୍ର (ଏହା ଶୁଣି) ଇନ୍ଦ୍ର ସମ୍ପତ୍ତି ଲାଭ କରି ସେଠାରୁ ବାହୁଡ଼ି ଗଲେ । ଦଶରଥଙ୍କୁ ବନ୍ଦନ କରି 'ହରି ତୁମ୍ଭର ପୁତ୍ର ହୋଇ

ବୃତ୍ତାନ୍ତ ତାତପର୍ଯ୍ୟେରେ ସବୁ ଜଣାଇଲ ।
ବୃଦ୍ଧକାଳେ ସୁଭାଗ୍ୟତା ପ୍ରବୃଦ୍ଧ ହୋଇଲା ଯେ । ୩୫ ।
ବକଳ ଭଜନା ହୋଇ କରୁଥିଲା ରଙ୍ଗ ।
ବନଦନନଦ ରବ ଶୁଣିଲା ସାରଙ୍ଗ ଯେ । ୩୬ ।
ବାମଦେବ, ଜାବାଳି, ଯା-ବାଳୀ ଅରୁନ୍ଧତୀ ।
ବେଗେ ମିଳିତ ଲଳିତ ଉଟାବର ଦ୍ୱିଜ ଯେ । ୩୭ ।
ବିମଳ ନଳିନ-ଲୀନ ଲପନେ ମନାଇ ।
ବସୁମତୀଶ ଅତି ସହରଷ, ଜନାଇ ଯେ । ୩୮ ।
ବୋଲୁଅଛନ୍ତି ଛତିଶ-କୁଳୀନ ପମର ।
ବଧ ଶୁଣିଲ କାଣିଲ ସରଶ୍ୱରମର ଯେ । ୩୯ ।

---

୩୬ଶ ପଦ—ରଙ୍ଗ—କେଳି, କ୍ରୀଡ଼ା । ବନଦନନ୍ଦ—ମେଘଧ୍ୱନି । ସାରଙ୍ଗ—ଚକୋର ।

୩୭ଶ ପଦ—ଯା-ବାଳୀ ଅରୁନ୍ଧତୀ—ଯାହାଙ୍କର ସ୍ତ୍ରୀ ଅରୁନ୍ଧତୀ (ବଶିଷ୍ଠ) । ଲଳିତ—ମନୋହର ।

୩୮ଶ ପଦ— ବିମଳ ନଳିନ—ପ୍ରସ୍ଫୁଟିତ ପଦ୍ମ । ଲପନ—ମୁଖ । ବସୁମତୀଶ—ରାଜା ( ଦଶରଥ ) ।

୩୯ଶ ପଦ—ଛତିଶ କୁଳୀନ—ସମସ୍ତ ବର୍ଣ୍ଣ ମଧ୍ୟରେ ଶ୍ରେଷ୍ଠ ( ବ୍ରାହ୍ମଣ) ।

---

ତାତ ହେବେ'—ଏହା କହି ସମସ୍ତ ବୃତ୍ତାନ୍ତ ସଂକ୍ଷେପରେ ଜଣାଇଲେ ଓ କହିଲେ, "ବୃଦ୍ଧକାଳରେ ଆପଣଙ୍କ ସୌଭାଗ୍ୟ ବୃଦ୍ଧି ପ୍ରାପ୍ତ ହେଲା ।"

୩୬ଶ ପଦ—ତୃଷାର୍ତ୍ତ ଚାତକ ମେଘଧ୍ୱନି ଶୁଣି ଖୁସି ହେଲା ପରି ସୁମନ୍ତ୍ର ବଚନ ଶୁଣି ଅକୁଳିତ (ସନ୍ତାନ ନ ଥିବା ଯୋଗୁ ) ଦଶରଥ ଆନନ୍ଦିତ ହେଲେ ।

୩୭ଶ ପଦ—ମନୋହର କୁଟୀର ବହନ କରିଥିବା ଋଷି ବାମଦେବ, ଜାବାଳି ଆଉ ଯାହାଙ୍କର ସ୍ତ୍ରୀ ଅରୁନ୍ଧତୀ ଅର୍ଥାତ୍ ବଶିଷ୍ଠ, ଏ ତିନିଜଣ ସେଠାରେ ପ୍ରବେଶ କଲେ ।

୩୮ଶ ଓ ୩୯ଶ ପଦ—ଦଶରଥରାଜା ଋଷି ହେଉଥିବାର ଦେଖି ସେ ଋଷିମାନେ ମୁଖ-ପଦ୍ମରେ ନିର୍ମଳ ଆନନ୍ଦ ପ୍ରକାଶ କରି କହିଲେ, ଯମ ସଦୃଶ "ଭୟଙ୍କର ବ୍ରାହ୍ମଣ ପର୍ଶୁରାମର ବଧବାର୍ତ୍ତା ଶୁଣିଲ କି ? ତୁମର ହର୍ଷ ଦେଖି ଏହା ଜଣା ଯାଉଅଛି ।"

ବାରିଧି ମନ୍ଦ ମନ୍ଦର ନୃପଗଣେଶ୍ୱର ।
ବିରଚନ ବଚନ ଆନନ୍ଦମୟ ସ୍ୱର ଯେ । ୪୦ ।
ବୃହଦ୍ଭାନୁ ଭାନୁରୁ ମୁଁ ଶୀତଳ ପାଇବି ।
ବନ୍ଧ୍ୟପରବତ ହସ୍ତ ଉପରେ ଥୋଇବି ଯେ । ୪୧ ।
ବିକୁପକୁ ମନେ କରେଁ କରେ ଧରିବାକୁ ।
ବାୟୁକୁ ପାଶେ ବନ୍ଧାଇ ପାଶେ ରଖିବାକୁ ଯେ । ୪୨ ।
ବଶିଷ୍ଠ ଶିଷ୍ଟୋକ୍ତିକି ତହିଁ ପ୍ରକାଶିଲେ ।
ବିଷୟ କି ? ସଂଶୟ କି ସୁମନ୍ତ ଭାଷିଲେ ଯେ । ୪୩ ।
ବୁଝି ମୁନି ହସି ହସି ସମ୍ମତିକି ଲକ୍ଷି ।
ବାଲ୍ମୀକି ଭବିଷ୍ୟ ପୁରାଣକୁ ପୂର୍ବ ଲକ୍ଷି ହେ । ୪୪ ।

---

୪୦ଶ ପଦ—ବାରିଧି—ସାଗର । ମନ୍ଦ—ଶନୈଶ୍ଚର । ନୃପଗଣେଶ୍ୱର—ନୃପତିଶ୍ରେଷ୍ଠ (ଦାଶରଥ) ।

୪୧ଶ ପଦ—ବୃହଦ୍ଭାନୁ—ଅଗ୍ନି । ଭାନୁ—ସୂର୍ଯ୍ୟ ।

୪୨ଶ ପଦ—ବିକୁପକୁ—ଚନ୍ଦ୍ରକୁ । ପାଶ—ଫାନ୍ଦ । ପାଶ—ନିକଟ ।

୪୩ଶ ପଦ—ଶିଷ୍ଟୋକ୍ତି—ମହଦ୍ବାକ୍ୟ ।

---

୪୦, ୪୧, ୪୨ଶ ପଦ—ଶନି ରୂପ ସାଗରର ମନ୍ଥନକାରୀ ମନ୍ଦର ପର୍ବତ ସଦୃଶ ନୃପଶ୍ରେଷ୍ଠ ଦଶରଥ ଆନନ୍ଦମୟ ସ୍ୱରରେ କହିଲେ, "ଅଗ୍ନି ଓ ସୂର୍ଯ୍ୟଙ୍କଠାରୁ ମୁଁ ଶୀତଳତ୍ୱ ପାଇବି ଏବଂ ବନ୍ଧ୍ୟ ପର୍ବତକୁ ହସ୍ତଉପରେ ରଖିବି । ଆଉ ମଧ୍ୟ ଚନ୍ଦ୍ରକୁ ହାତରେ ରଖିବାକୁ ଓ ବାୟୁକୁ ଫାଶରେ ବାନ୍ଧି ପାଖରେ ରଖିବାକୁ ମୁଁ ମନେ କରେ ।"

୪୩ଶ ପଦ—(ଦଶରଥ ଏପରି ଅସମ୍ଭବ କଥାମାନ କହିବାରୁ) ବଶିଷ୍ଠ ଧୀର ସ୍ୱରରେ (ସଂଶୟ ଚିତ୍ତରେ) ପଚାରିଲେ—କଥା କଣ ? ସୁମନ୍ତ(ସମସ୍ତ କଥା କହି ଶେଷରେ) କହିଲେ—ସଂଶୟ ନାହିଁ ।

୪୪ଶ ପଦ—ସୁମନ୍ତଙ୍କ କଥା ବୁଝି ପାରି ବଶିଷ୍ଠ ହସି ହସି ସମ୍ମତି ପ୍ରଦାନ କରି କହିଲେ, "ବାଲ୍ମୀକି ମୁନି ଭବିଷ୍ୟ ପୁରାଣରେ ପୂର୍ବରୁ ଏହା ଲେଖି ଅଛନ୍ତି ।"

ବୈକୁଣ୍ଠ ବୈକୁଣ୍ଠପୁର ଶୂନ୍ୟ ପୂର୍ଣ୍ଣ ମୂର୍ତ୍ତି ।
ବିଶେଷତ ଶ୍ରୁତି ଅଛି ଶ୍ରୁତି ଯେ ସ୍ମୃତି ଯେ । ୪୫ ।
ବାଞ୍ଛା ସେ ଅନୁସରଣ ଶରଣ ବହିତ ।
ବୈବସ୍ୱତକୁଳେ ସ୍ୱତଃ ଅମ୍ଭେ ପ୍ରବେଶିତ ଯେ । ୪୬ ।
ବେନୁ ବେଳ ନୃପତି ଚିତ୍ତକୁ ଦ୍ରବାଇଲେ ।
ବିଧୂଶିଳ ପରି ବିଧୂ ସେ ବଶୀ ହୋଇଲେ ଯେ । ୪୭ ।
ବିଦ୍ୟା ବିତରଣ ସେହିଦିନୁ ସେ ଧାମରେ ।
ବ୍ରତ ସର୍ଜିତ ପୂଜିତ ଅପୂଜ୍ୟ ଅମରେ ଯେ । ୪୮ ।
ବୈଷ୍ଣବେ ଭୂସୁରେ ସୁରେ କରାଇ ମୋଦକୁ
ବ୍ରହ୍ମଚର୍ଯ୍ୟ କର୍ମ କୃତ କର୍ମଶୁଦ୍ଧିଦକୁ ଯେ । ୪୯ ।

---

୪୫ଶ ପଦ:—ବୈକୁଣ୍ଠ—ବିଷ୍ଣୁ । ଶ୍ରୁତିଅଛି—ଶୁଣାଅଛି । ଶ୍ରୁତି—ବେଦ । ସ୍ମୃତି (ସ୍ମୃତି)—ମନୁ ପ୍ରଭୃତି ଧର୍ମଶାସ୍ତ୍ର ।

୪୭ଶ ପଦ:—ବିଧୂଶିଳ—ଚନ୍ଦ୍ରକାନ୍ତମଣି ।

୪୮ଶ ପଦ:—ବ୍ରତ ସର୍ଜିତ—ବ୍ରତୀ ହୋଇ । ଅମରେ—ଦେବତାମାନଙ୍କୁ ।

୪୯ଶତ୍ ପଦ:—ଭୂସୁର—ପଣ୍ଡିତ । ସୁର—ଦେବତା । ମୋଦ—ଆନନ୍ଦ ।

---

୪୫ଶ ପଦ:—"ବିଷ୍ଣୁ ବୈକୁଣ୍ଠ ପୁରକୁ ଶୂନ୍ୟ କରି ପୂର୍ଣ୍ଣାବତାର ହେବେ ଏହା ବେଦ ଶାସ୍ତ୍ରରେ ବିଶେଷ ଭାବରେ ଶୁଣାଅଛି ।

୪୬ଶ ପଦ—ସେହି ବିଷ୍ଣୁଙ୍କର ଶରଣ ନେବା ଇଚ୍ଛାରେ ଅମ୍ଭେ ସ୍ୱଇଚ୍ଛାରେ ବୈବସ୍ୱତ ମନୁ ବଂଶରେ (ସୂର୍ଯ୍ୟବଂଶରେ) ପ୍ରବେଶିତ ହୋଇଅଛୁ ।"

୪୭ଶ ପଦ—ଚନ୍ଦ୍ର ଯେପରି ଚନ୍ଦ୍ରକାନ୍ତ ମଣିକୁ ତରଳାଇ ଦିଏ, ସେହିପରି ମୁନିଙ୍କ ବାଣୀ ଚନ୍ଦ୍ରପରି ହୋଇ ରାଜାଙ୍କର ଚିତ୍ତରୂପ ଚନ୍ଦ୍ରକାନ୍ତ ମଣିକୁ ବେଳକୁ ବେଳ ତରଳାଇଲା ।

୪୮ଶ ପଦ—ସେହିଦିନୁ ସେ ବିଷ୍ଣୁ ପ୍ରୀତ ହେବା ଇଚ୍ଛାରେ ବିଦ୍ୟା ବିତରଣ କଲେ, ବ୍ରତ ଆଚରଣ କଲେ, ଅପୂଜା ରହିଥିବା ଦେବତାମାନଙ୍କୁ ପୂଜା କଲେ ।

୪୯ଶତ୍ ପଦ—ବୈଷ୍ଣବ ବ୍ରାହ୍ମଣ, ଦେବତାମାନଙ୍କୁ ପୂଜାକରି ସେମାନଙ୍କର ହର୍ଷ ବଢ଼ାଇଲେ । ଏସବୁ କର୍ମ ଶୁଭପ୍ରଦ ହେବାପାଇଁ ନିଜେ ବ୍ରହ୍ମଚର୍ଯ୍ୟ ବ୍ରତରେ ବ୍ରତୀ ହେଲେ ।

ଅଭେଦଜ୍ଞାମାନ ମାନସରେ କରେ ନିତ୍ୟ ।
ବ୍ୟବସ୍ଥିତେ ରଜନୀରେ ସୁସ୍ୱପ୍ନ ଜନିତ ଯେ । ୫୦ ।
ଅତପନ ତପନବଂଶୀ ସେ ନୃପୋତ୍ତମ ।
ବିନାଶଇ ଦୀନକୁ ଦୀନ ସେ ଚିନ୍ତାତମ ଯେ । ୫୧ ।
ବୋଲେ ଉପେନ୍ଦ୍ର ଭଞ୍ଜ ଭଞ୍ଜିନେ ଦୁରିତ ।
ବାନସଦରେ ଅଦରେ ରଚିତ ଚରିତ ଯେ । ୫୨ ।

---

## ତୃତୀୟ ଛାନ୍ଦ

### ରାଗ—ରାମକେରୀ

[ ଆଦ୍ୟଯମକ ]

ଅଦୂଷ ଦେହ ଶୁଣ ରଞ୍ଜନରସ ମନକୁ ଦେଇ ।
ବିଦୂଷଣ ରାଜସମାନେ ଧର୍ମସ୍ୱରୂପୀ ସେହି । ୧ ।

---

୫୦ଶତ୍ ପଦ—ବ୍ୟବସ୍ଥିତେ—ଯଥାସମୟରେ ।
୫୧ଶତ୍ ପଦ—ଅତପନ—ସୂର୍ଯ୍ୟ । ତପନବଶୀ—ସୂର୍ଯ୍ୟବଂଶୀୟ ।

### ତୃତୀୟ ଛାନ୍ଦ

୧ମ ପଦ—ଅଦୂଷ—ପଣ୍ଡିତ । ରଞ୍ଜନ—ମନୋହର । ବିଦୂଷଣ—ପାପରହିତ ।

---

୫୦ ଓ ୫୧ ଶତ୍ ପଦ—ସୂର୍ଯ୍ୟପରି ତେଜସ୍ୱୀ ସୂର୍ଯ୍ୟବଂଶୀୟ ରାଜା ଦଶରଥ ସ୍ଥିତ୍ୟଙ୍କ ମନରେ ଏହି ଚିନ୍ତା କରିବାରୁ ରାତ୍ରରେ ସେହି ଶୁଭସ୍ୱପ୍ନମାନ ଦେଖିଲେ । ତାଙ୍କ ଦୀନ ଚିନ୍ତାରୂପକ ଅନ୍ଧକାର ବିନାଶ ଲଭିଲା ।

୫୨ଶତ୍ ପଦ—ପାତକ ବିନାଶ କରିଣ ଏ ଚରିତ ବର୍ଣ୍ଣନା କରି ଉପେନ୍ଦ୍ର ଭଞ୍ଜ ବାଉନପଦାରେ ଏହା ରଚନା କଲେ ।

---

### ତୃତୀୟ ଛାନ୍ଦ

୧ମ, ୨ୟ, ୩ୟ ପଦ—ହେ ପଣ୍ଡିତମାନେ ! ଅନୁରାଗ କରି ଏହି ରସକୁ ମନ ଦେଇ ଶୁଣ । ରାଜାମାନଙ୍କ ମଧ୍ୟରେ ନିଷ୍ପାପ ଧାର୍ମିକ ମିଥିଳାର ଅଧିପତି

ବଦତ ମିଥିଳା ନୃପତି ନାମ ଜନକ ତାର ।
ବଦଗଦଗରେ ହୋଇଛି ଖ୍ୟାତ ଯଶ ଯହାର ।୨।
ବଦଗଧ ଯଜ୍ଞକର୍ମରେ ସର୍ବଦାରେ ସେ ଅଛି ।
ବଦଗଧଶତ୍ରୁ ପ୍ରାପତ ନୋହୁବାରେ ନୁହସ୍ତି ।୩।
ବୃଷଲ ମଖଶାଳ ହୁତେ ଦିନେ ଚଞ୍ଚୁ ଅବନୀ ।
ବୃଷାଶାପୁଁ ମୁକ୍ତ ପାଇଣ ମେନା ନାମେ କାମିନୀ ।୪।
ବସି ବିମାନରେ ଗଗନେ କରୁଅଛି ଗମନ ।
ବର୍ଣ୍ଣ ଭୂଷ ଶେଷ ଭ୍ରୂଭଙ୍ଗରେ ହରେ ଜନନୟନ ।୫।
ବୁଧଜନକ କି କଳଙ୍କହୀନେ ପୂର୍ଣ୍ଣେ ସମ୍ପଦେ ।
ବୁଧଜନ ତରେ ପରତେ ନବେ ଦିବସେ ଉଦେ ।୬।
ବୃଷଜ୍ଞସ୍ୟା ସେ ମଣ୍ଡିବାରେ ଶତ ଅଛି ଉଦବେଗ
ବୃଷଭୃଷା ଏହୁ ଭରଙ୍ଗେ ଢାଳିବାରେ ଅପାଙ୍ଗ ।୭।

---

୨ୟ ପଦ—ବଦଗ ଦଗରେ—ଚତୁର୍ଦ୍ଦିଗରେ ।
୩ୟ ପଦ—ବଦଗଧ—ପଣ୍ଡିତ । ବଦଗ୍ଧ—ଅଳୁଳିତ, ଦୁଃଖିତ ।
୪ର୍ଥ ପଦ—ବୃଷାଳ—ବିସ୍ତୀର୍ଣ୍ଣ । ମଖଶାଳା—ଯଜ୍ଞଶାଳା—ବୃଷାଶାପୁଁ—ଇନ୍ଦ୍ରଶାପରୁ । ମେନା—ମେନକା ନାମ୍ନୀ ଅପ୍ସରା ।
୬ଷ୍ଠ ପଦ—ବୁଧଜନକ—ଚନ୍ଦ୍ର ।
୭ମ ପଦ—ବୃଷଙ୍ଗସ୍ୟା—ଇନ୍ଦ୍ରପୁରୀ । ବୃଷଭୃଷା—ମନୋହର ଉତ୍ତ ।
୮ମ ପଦ—ବିଦ୍ଧବିତରେ—ଚତୁର୍ଦ୍ଦିଗରେ । ସୁଧା—ଚନ୍ଦ୍ରିକା ।

---

ଜନକଙ୍କ ଯଶ ଚତୁର୍ଦ୍ଦିଗରେ ଖ୍ୟାତ ଅଟେ । ସେ ସର୍ବଦା ଯଜ୍ଞ କାର୍ଯ୍ୟରେ ଅତ ଭରୁର । କୌଣସି କନ୍ୟା ନ ହେବାରୁ ତାଙ୍କ ଚିତ୍ତ ଅତ୍ୟନ୍ତ ଦଗ୍ଧ ହେଉଥାଏ ।

୪ର୍ଥ, ୫ମ ପଦ--ବିସ୍ତୀର୍ଣ୍ଣ ଯଜ୍ଞଶାଳା ଦେଖିବା ନିମନ୍ତେ ଦିନେ ଭୂମି ଗୃହ କରୁ ବା ଇନ୍ଦ୍ରଙ୍କ ଶାପରୁ ମୁକ୍ତ ହୋଇ ମେନକା ଅପ୍ସରା ବିମାନରେ ବସି ଗଗନରେ ଗମନ କରୁଥିବାର ଦେଖିଲେ; ତାହାର (ମେନକାର) ଶୋଭା ଦୃଷ୍ଟିରେ ଜନ ନୟନ ମୋହିତ ହୁଏ ।

୬ଷ୍ଠ ପଦ--( ମେନକାକୁ ଦେଖି ) ପଣ୍ଡିତମାନଙ୍କର ପ୍ରତୀତ ହେଲା— କଳଙ୍କବର୍ଜିତ ପୂର୍ଣ୍ଣଚନ୍ଦ୍ର ଦିନରେ ଅକାଳରେ ଉଦେ ହୋଇଅଛନ୍ତି କି ?

୭ମ ଓ ୮ମ ପଦ--ମେନକା ସ୍ୱର୍ଗପୁରକୁ ଯାଉ ଥିବାରୁ ତାହାର ଚିତ୍ତ ବଡ଼ ଚଞ୍ଚଳ ହେଲା । ତେଣୁ ଏହି ସୁନ୍ଦର ଉତ୍ତ ପ୍ରତୀୟମାନ ହୁଏ, ଚକୋରପକ୍ଷୀ ଚନ୍ଦ୍ରକିରଣ ପାନ କରି ଆକାଶରେ ବିହାର କରୁଅଛି କି ?

କହୁଥିବ ପୁନଃପୁନ କି ସୁଧା ଦିଇ ଚକୋର ।
ବହୁବନରେ ସେ ବହନ୍ତି ନିରେଖି ଏ ମନୋହର ।୮।
ବଳାରିପୁରମଣ୍ଡନା ଶୋଭା ଜନକ ଗୃହୀ ।
ବଳାଇଲେ ଚିତ୍ତ ମୋ ସୁତା ପୁଣ ହୁଅନ୍ତା ଏହି ।୯।
ବାଳାରୁଣାଧରୀ କହିଲା ଜାଣି ତାହାଙ୍କ ଚିତ୍ତ ।
ବଳାଏ ଏକ୍ଷଣି ଅଦ୍ଭୁତେ ହୋଇ ସନା ପ୍ରାପତ ।୧୦।
ବଳାହକୁଁ ଜନ୍ମ ହୋଇଲା ପରି ଈଶ୍ୱରଜାରୁ ।
ବଳାହକେ ବିଦ୍ୟୁତ ପ୍ରକାଶ ପ୍ରାପ୍ତେ ଗନ୍ଧବତୀରୁ ।୧୧।
ବାଣୀ ଯେ ଏପରି ଲଙ୍ଗଳ ଅଗ୍ରେ ଜାତ ମଞ୍ଜୁଷ ।
ବାଣୀକ୍ଷେ ରତ୍ନସଂପୁଟକ ଲଭ୍ୟ ପରି ମଞ୍ଜୁଷେ ।୧୨।

---

୯ମ ପଦ—ବଳାରିପୁରମଣ୍ଡନା—ସ୍ୱର୍ଗପୁର ମଣ୍ଡନକାରିଣୀ (ମେନକା)

୧୦ମ ପଦ—ବାଳାରୁଣାଧରୀ—ଯେଉଁ ସ୍ତ୍ରୀର ଓଷ୍ଠ ନବୋଦିତ ସୂର୍ଯ୍ୟଙ୍କର ବର୍ଣ୍ଣପରି ।

୧୧ଶ ପଦ—ବଳାହକୁଁ—ପର୍ବତରୁ । ଈଶ୍ୱରଜାରୁ—ପାର୍ବତୀ । ବଳାହକେ—ମେଘରେ । ଗନ୍ଧବତୀରୁ—ପୃଥିବୀରୁ ।

୧୨ଶ ପଦ—ମଞ୍ଜୁଷ—ପେଡି । ରତ୍ନସଂପୁଟକ—ରତ୍ନ ଫରୁଆ ।

---

ତା, ଅପାଙ୍ଗଚଳନ ଦିଗ ବଦନକୁ ଚନ୍ଦ୍ରେପ ଭାବରେ ମନୋହର କରିଅଛି । (ନେତ୍ର ସହିତ ଚକୋର, ମୁଖ ସହିତ ଚନ୍ଦ୍ର ଓ ମୁଖର ଶୋଭା ସହିତ ଚନ୍ଦ୍ର କିରଣ ଉପମିତ )

୯ମ ପଦ—ଇନ୍ଦ୍ରପୁର ( ସ୍ୱର୍ଗପୁର ) ମଣ୍ଡନ କାରିଣୀ ମେନକାର ଶୋଭାକୁ ଦେଖି ଜନକ ଋଷି ମନରେ ଭାବିଲେ—'ଏ ମୋର କନ୍ୟା ହୁଅନ୍ତା କି ?'

୧୦ମ ପଦ—ବାଳସୂର୍ଯ୍ୟପରି ଯାହାର ଅଧର ଶୋଭା ପାଏ, ଏପରି ଯେ ମେନକା, ସେ ଜନକ ଋଷିଙ୍କ ଚିତ୍ତ ଜାଣି କହିଲା, "ଏହିକ୍ଷଣି ଗୋଟିଏ ବାଳିକା ଅଦ୍ଭୁତ ପ୍ରାପ୍ତ ହେବ ।"

୧୧ ପଦ—"ପର୍ବତରୁ ପାର୍ବତୀ ଜାତ ହେଲା ପରି, ମେଘରେ ବିଦ୍ୟୁତ୍ ପ୍ରକାଶ ପାଇଲା ପରି, ପୃଥିବୀରୁ ସେ କନ୍ୟା ଜନ୍ମ ହେବ ।"

୧୨ଶ ପଦ - ଏହି ବାଣୀ ଶୁଣିଲା ସନ୍ଧିରେ ଋଷିଙ୍କୁ ରତ୍ନ ଫରୁଆ ପ୍ରାପ୍ତ ହେଲା ପ୍ରାୟ ଲଙ୍ଗଳ ଅଗରୁ ଗୋଟିଏ ମନୋହର ପେଡି ଜାତ ହେଲା ।

ବିଶ୍ୱମୋହିନୀ ଏ ତା ମଧ୍ୟେ ଦେଖି ମହାହରଷ ।
ବିଶ୍ୱକର୍ମା କୃତ କୃତ୍ରିମପୁରୀ କି କଳବଶ ।୧୩।
ବସୁନ୍ଧରାଭବା ଜନକ କୋଳ କରୁ ସ୍ୱଭାବ ।
ବସୁ ଧରାଇଲା କୃପଣେ କି କୃପାଳୁ ଦଇବ ? ୧୪।
ବିଶ୍ୱସୃଜ ଏକ କରିଛନ୍ତି ଧରି ଶୋଭାଚୟକୁ ।
ବିଶ୍ୱକେତୁ କେତୁ ବାନ୍ଧିଲା ଜାଣି ଜଗତ୍ତ୍ରୟକୁ ।୧୫।
ବହୁ ଋଷି ତାଙ୍କ ସଙ୍ଗତେ ମେଳ ହୋଇ ଯେ ଥିଲେ ।
ବହୁ ସୀତାନାମ ଏ ସୀତା ଯୋଗେ ଜାତ ବୋଇଲେ ।୧୬।
ବିଧି ସନମତ ପୃଥ୍ୱୀଭବା ପାର୍ଥିବୀ ଏହି ।
ବିଧୃତରେ ମିଥିଳ ଉତ୍ସବକାରୀ ମୈଥିଳୀ କହି ।୧୭।

---

୧୩ଶ ପଦ—ବିଶ୍ୱମୋହିନୀଏ ସଂସାରମୋହିନୀ କନ୍ୟାଟିଏ । ବିଶ୍ୱକର୍ମା—ଦେବଶିଳ୍ପୀ । କୃତ୍ରିମପୁରୀ—କୁଣ୍ଢେଇ । କଳବଶ—କଳଦ୍ୱାସ ।

୧୪ଶ ପଦ—ବସୁନ୍ଧରାଭବା--ପୃଥିବୀସମ୍ଭୂତା । ବସୁ--ରତ୍ନ ।

୧୫ଶ ପଦ—ବିଶ୍ୱସୃଜ—ବ୍ରହ୍ମା । ବିଶ୍ୱକେତୁ—ମଦନ, କନ୍ଦର୍ପ । କେତୁ—ପତାକା ।

୧୬ଶ ପଦ—ସୀତା ଲଙ୍ଗଳର ଅଗ୍ର ।

୧୭ଶ ପଦ—ବିଧି ବ୍ରହ୍ମା ।

---

୧୩ଶ ପଦ—ସେ ପେଡ଼ି ମଧ୍ୟରେ ସଂସାରମୋହିନୀ କନ୍ୟାଟିର ଦେଖି ଜନକ ମହାହର୍ଷ ହୋଇ ବିଚାରିଲେ, 'ବିଶ୍ୱକର୍ମା ଏହି କୁଣ୍ଢାଇଟିକୁ ଯନ୍ତ୍ରଦ୍ୱାରା ଗଢ଼ି ଅଛନ୍ତି କି ?' (ଯନ୍ତ୍ର ନିର୍ମିତ କୁଣ୍ଢାଇ ହସ୍ତ ନିର୍ମିତ କୁଣ୍ଢାଇ ଅପେକ୍ଷା ସୁନ୍ଦର ହୁଏ ) ।

୧୪ଶ ପଦ—କୃପାଳୁ ବିଧାତା କୃପଣକୁ ରତ୍ନ ଧରାଇଲା ପରି ଜନକଋଷି ଆନନ୍ଦ ମନରେ ପୃଥ୍ୱୀରୁ ଜାତ କନ୍ୟାକୁ—ସୀତା ଦୁହିତାକୁ କୋଳ କଲା ପ୍ରାୟ କୋଳରେ ଧରିଲେ ।

୧୫ ପଦ—ବ୍ରହ୍ମ ସମସ୍ତ ଶୋଭାକୁ ଏକତ୍ରିତ କରି ଏ କନ୍ୟା ଗଢ଼ିଅଛି । କନ୍ଦର୍ପ ଏହାଦ୍ୱାରା ଜଗତ ଜୟ କରିବ,—ଏହି ଆଶାରେ ପତାକା ଉଡ଼ାଇଲା ।

୧୬ଶ ପଦ—ଜନକଙ୍କ ସହିତ ବହୁତ ଋଷି ବୃନ୍ଦ ହୋଇଥିଲେ । ସେମାନେ କହିଲେ, "ଏ ସୀତା ଯୋଗେ ( ଲଙ୍ଗଳ ଅଗ୍ରରୁ ) ଜାତ ହୋଇଅଛି, ତେଣୁ ଏହାର ନାମ ସୀତା ହେଉ ।"

୧୭ଶ ପଦ—"ଏ ପୃଥିବୀରୁ ସମ୍ଭୂତ ହୋଇଅଛି, ତେଣୁ ବିଧାନରେ ଏହାର ନାମ ପାର୍ଥିବୀ ହେଲା । ପୁଣି ଦୈବକ୍ରମେ ମିଥିଳା ପୁରର ଉତ୍ସବକାରିଣୀ ହୋଇ ଏ ମୈଥିଳୀ ନାମ ପାଇବ ।"

ବିଦେହଜାୟା କୋଟିଏକ ହେଲେ ସମ କି ଅଛି ?
ବିଦେହଦେଶରେ ଉଦ୍ଭବ ବଇଦେହୀ ବୋଲାଉ ।୧୮।
ବିଦୁଷ ଜନକ ପାଳନେ ବୋଲାଇବ ଜାନକୀ ।
ବିଦୂଷଣ ଶୋଭା କେମାର ଅଛି ସରି ଆନ କି ।୧୯।
ବାସରେ ଉତ୍ପଳ କି ଲକ୍ଷ ପାରିଜାତକ ତୁଚ୍ଛ ।
ବାସରେ ରହନ୍ତେ ଯୋଜନଗନ୍ଧା ନାମହିଁ ସ୍ୱଚ୍ଛ ।୨୦।
ବଳଭି ଉପରେ ଦୋଳରେ ରଙ୍ଗ ଧାତ୍ରୀ ପାଳନ୍ତ ।
ବଡ଼-ଭୀ ଉପମାମାନଙ୍କ ଅପମାନରୁ ଜାତ ।୨୧।
ବିନିଦ୍ର କି ହେମ ଶୟନେ ଦୁର୍ଗା ରୂପା-ପଲଙ୍କେ ।
ବଣ୍ଟିଗଲା ଆନ ଉପମା ସେହି କାଳେ ପଲକେ ।୨୨।

---

୧୮ଶ ପଦ—ବିଦେହଜାୟା—କନ୍ଦର୍ପର ପତ୍ନୀ, ରତି ।
୧୯ଶ ପଦ—ବିଦୁଷ—ପଣ୍ଡିତ । ବିଦୂଷଣ—ନିଷ୍କଳଙ୍କ ।
୨୦ଶ ପଦ—ଉତ୍ପଳ—ପଦ୍ମ । ଲକ୍ଷ—ତୁଲ୍ୟ । ଯୋଜନ—ଚାରିକ୍ରୋଶ ।
୨୧ଶ ପଦ—ବଳଭି—ଚନ୍ଦ୍ରଶାଳାପୁର । ବଡ଼-ଭୀ—ଅତିଭୟ ।
୨୨ଶ ପଦ ହେମ—ସୁବର୍ଣ୍ଣ । ପଲକ—ଚକ୍ଷୁର ପକ୍ଷ୍ମପାତ ।

---

୧୮ଶ ପଦ—"କୋଟି କୋଟି ରତି ଏକ ହେଲେ ଏହାଙ୍କ ସମ ହେବେ କି ? ( ସମ ହେବେ ନାହିଁ ) । ବିଦେହ ଦେଶରେ ଏ ଉଦ୍ଭବ ହୋଇଅଛନ୍ତି, ତେଣୁ ବୈଦେହୀ ନାମ ପାଇ ।"

୧୯ଶ ପଦ—"ପଣ୍ଡିତ ଜନକ ଋଷିଙ୍କ ପାଳନ ଯୋଗେ ଏହାର ନାମ ଜାନକୀ ହେଲା । ଦୋଷରହିତ ଏହି କେମାର ଶୋଭାକୁ ତୁଳନା ଦେବାକୁ ଆଉ କିଛି ଅଛି କି ? ( ଆଉ କିଛି ନାହିଁ ) ।"

୨୦ଶ ପଦ—'ସେହି କନ୍ୟାର ବାସନାକୁ ପଦ୍ମ ବାସନା ବା କି ଲକ୍ଷ ହେବ ? ପାରିଜାତ ବାସନା ମଧ୍ୟ ତୁଚ୍ଛ ହୋଇଯିବ । ଦେହର ସୌରଭ ଯୋଜନେ ପର୍ଯ୍ୟନ୍ତ ଚହଟୁଥିବାରୁ (ଏହାର) ଯୋଜନଗନ୍ଧା ନାମ ସାର୍ଥକ ହେଲା ।'

୨୧ଶ ପଦ—ପାଳୁଥିବା ଧାଈମାନେ ଚନ୍ଦ୍ରଶାଳା ପୁରରେ ଦୋଳରେ ଝୁଲାଉଥିଲା ବେଳେ ଯେଉଁ ସୌନ୍ଦର୍ଯ୍ୟ ସୃଷ୍ଟି ହେଲା, ତା ସହିତ ଆଉ କୌଣସି ଉପମା ସମାନ ନ ହୋଇ ବଡ ଭୟ ପାଇଲେ ।

୨୨ଶ ପଦ— ଦୋଳରେ ଶୋଉଥିବା ବେଳେ ଅନୁମିତ ହେଲା । ସ୍ୱର୍ଣ୍ଣ ତୂଳୀ ରୌପ୍ୟ ପଲଙ୍କରେ ଶୟନ କରି ଅଛନ୍ତି କି ? ସେହି ସମୟରେ କନ୍ୟା ପଲକ ପକାଇବାରୁ ଅନ୍ୟ ଉପମାସବୁ ବାହାରି ପଡିଲେ ।

ବାଳକ୍ରୀଡ଼ା କଉତୁକେ ଅନ୍ତଃପୁରସ୍ଥା ମୋହି ।
ବାଳ କି ଶୈବାଳ କମଳକୋଷ ଉପରେ ଶୋହି ।୧୩।
ବାଡ଼ବର ଶତପ୍ରତିମା ସରି ଧରି ତା ଉଚ୍ଚ ।
ବାଡ଼ବର ମଧ୍ୟେ ପଡ଼ାଅ ଅନ ସମାନ ଶୋଭା । ୪।
ବିଡ଼ମ୍ବ ନୂତନ ମଞ୍ଜରୀ ଚଳିତ କି ପବନେ ।
ବିଡ଼ମ୍ବଣ ଅନ୍ୟ ଦୃଷ୍ଟି ଯେ ଟଳ ଟଳ ଗମନେ ।୧୫।
ବଚକୁ ବାଚକେ ନ କହୁଁ ପୁଣି ଶୁଣି ଉତ୍ସାହି ।
ବଚକୁ ପିକ ପଡ଼ିଲ ଶୁକ ମୂକରେ ରହି ।୧୬।

---

୧୩ଶ ପଦ—ବାଳକ୍ରୀଡ଼ା—ବାଲ୍ୟାବସ୍ଥାର କ୍ରୀଡ଼ା କୌତୁକ । ଶୈବାଳ—ଶିଉଳି । କମଳକୋଷ—ପଦ୍ମକଢ଼ ।

୧୪ଶ ପଦ—ବାଡ଼ବର—ଉତ୍ତମ ଦାନ୍ତ । ବାଡ଼ବରେ—ସମୁଦ୍ର ମଧ୍ୟସ୍ଥ ଅଗ୍ନିରେ ।

୧୫ଶ ପଦ—ବିଡ଼ମ୍ବ—ବିଲମ୍ବ ବା ଯାହା ଲମ୍ବିଅଛି । ନୂତନ ମଞ୍ଜରୀ—ନୂଆ ଲତା । ବିଡ଼ମ୍ବଣ—ନିନ୍ଦିତ, ବୃଥା ।

୧୬ଶ ପଦ—ବଚକୁ—କଥାକୁ । ବାଚକେ—ବଚନରେ । ମୂକ—ମୌନ ।

---

୧୩ଶ ପଦ—ବାଲ୍ୟକାଳର କ୍ରୀଡ଼ା କୌତୁକରେ ସେ କନ୍ୟା ଅନ୍ତଃପୁରରେ ଥିବା ରମଣୀମାନଙ୍କୁ ମୋହିଲେ । ପଦ୍ମ କଢ଼ ଉପରେ ଶିଉଳି ଶୋଭିତ ହେଲାପରି ତାଙ୍କ ମୁଣ୍ଡରେ ଥିବା ବାଳସବୁ ଶୋଭା ପାଉଥିଲା ।

୧୪ଶ ପଦ—ଦାନ୍ତକୁ ଧରି ଅଉଜ ଉଚ୍ଚ ହେଲାବେଳେ ସେ ଦାନ୍ତରେ ଲେଖାଥିବା ଶତଚନ୍ଦ୍ରମା ପ୍ରାୟ ଶୋଭା ଦିଶିଲେ । ସେହି ଶୋଭା ସହିତ ତୁଳନା କରିବାକୁ ଆଉ ଯେତେ ଉପମାସବୁ ଅଛି, ତାକୁ ବାଡ଼ବାଗ୍ନିରେ ପକାଇ ଦିଅ । ( ଏହା ସହିତ ଉପମିତ ହେବାକୁ ଆଉ କେହି ସମ ନୁହନ୍ତି )

୧୫ଶ ପଦ—ସୀତାଙ୍କ ଟଳ ଟଳ ଗମନ [ ଭଲ ରୂପେ ଚାଲି ଜାଣି ନ ଥିବା ହେତୁ ] ପବନରେ ଦୋହଲୁଥିବା ନୂତନ ଲତିକା ସଦୃଶ ଦେଖାଯାଏ । ତାଙ୍କ ଗତିବେଳେ ଅନ୍ୟ ଅଙ୍ଗକୁ ଦୃଷ୍ଟି ପାତ କରିବା ବୃଥା; ( ତାଙ୍କ ଗତିର ସୌନ୍ଦର୍ଯ୍ୟରେ ଅନ୍ୟ ସମସ୍ତ ଅଙ୍ଗର ସୌନ୍ଦର୍ଯ୍ୟ ଲୁଚି ଯାଏ )

୧୬ଶ ପଦ—ସେ କଥାକୁ ବାକ୍ୟରେ ପ୍ରକାଶ କରୁ କରୁ ଶୁଣିବା ଲୋକେ ପୁଣି ଶୁଣିବାକୁ ଉତ୍ସାହିତ ହେଲେ । ଶୁକ [ ସୀତାଙ୍କ ସ୍ୱର ସହିତ ସମାନ ହେବା ପାଇଁ ? ବଚ ଖାଇ ପଡ଼ିଲା, ତଥାପି ସମାନ ନ ହେବାରୁ ମୂକ ହୋଇ ରହିଲା ।

ବାଳୀ ସେ ଖେଳନ୍ତି ଶିଶୁଙ୍କ ସଙ୍ଗେ କ୍ରମ କ୍ରମରେ ।
ବାଲଜଣ ଲକ୍ଷିବେ ସେ କାଳେ ରମ୍ଭା ରମା ସମରେ । ୨୭ ।
ବେଣୀ ଗୁନ୍ଥି ଶିରେ ଶୁକ୍ଳ ରଙ୍ଗ ଫୁଲେ ଯତନ ।
ତ୍ରିବେଣୀ କି ଚ୍ୟୁତ କି ନଭରୁ ହୋଇଛନ୍ତି ପତନ । ୨୮ ।
ବିଲମ୍ବିତ କର୍ଣ୍ଣେ କୁଣ୍ଡଳ କି ସେ ଶାଙ୍କୁଳୀ ବଳା ?
ବିଲମ୍ବିତ ଦମ୍ଭ ଗଞ୍ଜରେ ଦେବ ଗୃହୁଁ ନୋହିଲା । ୨୯ ।
ବୟସ ବଳ ବାହୁଁ ଏ ଗାତ୍ରମାନ ସୁନ୍ଦରୀମଣି ।
ବୟଃସନ୍ଧି କି ପ୍ରକାଶି ଅନ ପ୍ରକାରେ ଅଣି । ୩୦ ।

---

୨୭ଶ ପଦ:—ବାଲଜଣେ—ମୂର୍ଖମାନେ ।

୨୮ଶ ପଦ:—ବେଣୀ କି ଚ୍ୟୁତ ଅର୍ଥାତ୍ ତ୍ରିବେଣୀ—ଗଙ୍ଗା, ଯମୁନା ଓ ସରସ୍ୱତୀ ନଦୀତ୍ରୟର ସଙ୍ଗମସ୍ଥାନ । ନଭରୁ—ଆକାଶରୁ ।

୨୯ଶ ପଦ :—ବିଲମ୍ବିତ ଦମ୍ଭଗଞ୍ଜରେ—ଧୈର୍ଯ୍ୟଶାଳୀ ବ୍ୟକ୍ତିମାନଙ୍କୁ ।

୩୦ଶ ପଦ:—ବୟଃସନ୍ଧି—ଯୌବନର ପ୍ରଥମ ଅବସ୍ଥା ।

---

୨୭ଶ ପଦ—ସେ ସୀତା କ୍ରମଶଃ ଶିଶୁଙ୍କ ସହିତ ଖେଳିବାକୁ ଆରମ୍ଭ କଲେ । ସେତେବେଳର ଶୋଭାକୁ ଦେଖି କେବଳ ମୂର୍ଖମାନେ ରମ୍ଭା ଓ ଲକ୍ଷ୍ମୀଙ୍କ ସହିତ ସମାନ ବୋଲି କହିବେ ( ରମ୍ଭା ଓ ଲକ୍ଷ୍ମୀଙ୍କ ଶୋଭା ମଧ୍ୟ ସେ ଶୋଭା ସହିତ ତୁଳନୀୟ ହୋଇ ନ ପାରେ ) ।

୨୮ଶ ପଦ—ବେଣୀଦ୍ୱାରା ଶୋଭିତ ମସ୍ତକରେ ଧଳା ଓ ଲାଲ ରଙ୍ଗର ଫୁଲ ଯତ୍ନରେ ମଣ୍ଡନ କଲେ; ତାହା ଦେଖି ମନେ ହୁଏ ତ୍ରିବେଣୀ—ଗଙ୍ଗା, ଯମୁନା, ସରସ୍ୱତୀ ଆକାଶରୁ ଖସି ପଡ଼ୁଅଛନ୍ତି କି ? ( ଗଙ୍ଗାର ପାଣି ଧଳା, ଯମୁନା ପାଣି ଗାଢ଼ ନୀଳ ଓ ସରସ୍ୱତୀର ପାଣି ଲାଲ ବର୍ଣ୍ଣ ଦେଖାଯାଏ ) ।

୨୯ଶ ପଦ—କର୍ଣ୍ଣରେ କୁଣ୍ଡଳ ଝୁଲୁଥିବାର ଦେଖିଲେ ତାହା ଶାଙ୍କୁଳିପର ଆଖିକୁ ବାନ୍ଧି ରଖେ । ଧୈର୍ଯ୍ୟଶାଳୀ ଲୋକ ହେଲେ ମଧ୍ୟ ଗୃହଁଲେ ତାର ଆଖି ସେ ଫେରାଇ ପାରିବ ନାହିଁ ।

୩୦ଶ ପଦ—ହେ ସୁନ୍ଦରୀଶିରୋମଣି ସୀତା ଏ କାଳ ଶୂଳର ଗାତ୍ରମାନଙ୍କୁ ଦେହର ପ୍ରଥମ ଯୌବନ ସମୟର ଭଳି ଗାତ୍ରମାନ ପ୍ରକାଶ କଲେ ।

ବଲ୍ଲିକାଳେ ନାଗ୍ରୀ ଯେମନ୍ତେ ଜନ୍ୟାଳଙ୍କାର ମୁଞ୍ଚ ।
ବଲ୍ଲିବନା ହେଲା ତହିଁରେ ନବବିଳାସ ରଞ୍ଚି ।୩୧।
ବସନ୍ତଦୂତ ଧ୍ୱନି କଲାବେଳେ ଜେତେ ଇଙ୍ଗିତ ।
ବସନ୍ତ ରାଗରେ ଆଳାପ ତହିଁ କରନ୍ତି ଗୀତ । ୩୨ ।
ବସନ୍ତ ବସନେ ଘଣ୍ଟି କି ଦେଇ କଟେ ସଜାଇ ।
ବସନ୍ତ ବସନ ମୋହିବ ଏହି ଗୁମାନ ବହି । ୩୩ ।
ବନ୍ଦନ କରେ ନାନା ଛନ୍ଦେ ଗାବୀ ସେ ପୁନଃ ପୁନଃ ।
ବନ୍ଧଉଣପଷ୍ଟ ଏକାନ୍ତେ ଗୃହିବାରେ ସୁମନ । ୩୪ ।
ବନ୍ଦ ଯାହାଙ୍କୁ ବନ୍ଧ ବୋଲି ସକନ୍ଦର୍ପେ ଧରିରେ ।
ବନ୍ଦୀପରି ହୋଇ ରହିଲା ଅବରୋଧେ ଧରିରେ । ୩୫ ।

---

୩୨ଶ ପଦ—ବସନ୍ତଦୂତ—କୋକିଳ । ବସନ୍ତ—ରାଗବିଶେଷ ।

୩୩ଶ ପଦ—ବସନ୍ତ ବସନେ—ହଳଦିଆ ଲୁଗାରେ । ବସନ୍ତ ବସନ—ପୀତାମ୍ବର, ବସ୍ତ୍ର ।

୩୪ଶ ପଦ—ଗାବୀ—ଗାଇ । ବନ୍ଧଉଣପଷ୍ଟ—ଚଉଷଠି ବନ୍ଧ ଉଣଷ୍ଠି ଉଣପଷ୍ଟ ।

୩୫ଶ ପଦ ବନ୍ଦ—ବନ୍ଦନା କରି । ଅବରୋଧେ—ଅନ୍ତଃପୁରରେ ।

---

୩୧ଶ ପଦ—ବଲ୍ଲିକାଳରେ ନାରୀ ଯେପରି ପିଲାଦିନର ଅଳଙ୍କାରସବୁ ଛାଡି ଅନ୍ୟ ଅଳଙ୍କାରକୁ ଇଚ୍ଛା କରେ, ସେହିପରି ଯୌବନ କାଳରେ ପୁରାତନ କ୍ରୀଡା ଛାଡ଼ି ନୂତନ କ୍ରୀଡା କରିବାକୁ ସେ ମନ କଲାଇଲେ ।

୩୨ଶ ପଦ—କୋକିଳ ଧ୍ୱନି କଲାବେଳେ ସୀତା ସେ ସ୍ୱନକୁ ଉପହାସ କରି ବସନ୍ତ ରାଗରେ ଗୀତ ବୋଲୁଥିଲେ । ( ସୀତାଙ୍କ ସ୍ୱନ କୋକିଳ ସ୍ୱନଠାରୁ ଉତ୍କୃଷ୍ଟତର ) ।

୩୩ଶ ପଦ—ସୀତା ହଳଦିଆଲୁଗା ପିନ୍ଧି ତାର କାନିରେ ଘଣ୍ଟି ଦେଇ କାନ୍ଧରେ ପକାଉଥିଲେ ! ସେଥିରୁ ଜଣା ଯାଉଥିଲା, ସେ ରାମଚନ୍ଦ୍ରଙ୍କୁ ବନେ ନିଶ୍ଚୟ ମୋହିତ କରିବେ,—ଏହି ଗୁମାନରେ ଯେପରି କାନିରେ ଘଣ୍ଟି ପକାଇ ରଖୁଅଛନ୍ତି ।

୩୪ଶ ପଦ—ସେ ସୀତା ନାନାପ୍ରକାର ଛନ୍ଦରେ ଗାବୀ ବାରମ୍ବାର ବନ୍ଦନ କଲେ । ଚଉଷଠି ବନ୍ଧ ଚିତ୍ରକୁ ଏକାନ୍ତରେ ଦେଖିବାକୁ ମନ କଲାଇଲେ ।

୩୫ଶ ପଦ—ବ୍ରହ୍ମାଣ୍ଡରେ ସୌନ୍ଦର୍ଯ୍ୟପଣରେ ଶ୍ରେଷ୍ଠ ସ୍ଥାନ ଅଧିକାରୀ ଯାହାକୁ ବନ୍ଦନା କରୁଥାଏ, ଏପରି ଯେ ସୀତା, ସେ ଯୌବନକାଳ ହେବାରୁ ଅନ୍ତଃପୁରରେ ବନ୍ଦୀ ହୋଇ ରହିଲେ ।

ବୟସର ନବରୁ ଘନକୁଦନ ପ୍ରଭା ବଢ଼ାଇ ।
ବକ୍ଷରେ କୁଚ ଅଙ୍କୁରିତ, ଏହୁ ଉତ୍‌ପ୍ରେକ୍ଷା ହୋଇ । ୩୬ ।
ବର୍ଣ୍ଣମାଳୀପରି ରୋମାଳି କି ସେ ସରଘାପନ୍ତି ।
ବର୍ଣ୍ଣନୀୟ ଏହୁ, କରନ୍ତି କି ସେ ଊର୍ଦ୍ଧ୍ୱକୁ ଗତି ? ୩୭ ।
ବିକଳନା କରି ସଞ୍ଚନ୍ତି ମଧୁ କଳ୍ପଦ୍ରୁମରେ ।
ବିକଳପ, ଫଳ ଅଙ୍କୁ ଉଚ୍ଚେ ବୃଦ୍ଧି କ୍ରମରେ । ୩୮ ।
ବିକଳ୍ପ ହୋଇଲା କ୍ରମୁକଠାରୁ ତାଳସରିକି ।
ବିଜୟ ହୃଦରେ ସ୍ୱୟମ୍ଭୁ ରୂପେ କଲେ ଶମ୍ଭୁ କି ? ୩୯ ।
ବଳଶ୍ରେଷ୍ଠ କାମ ତାହାଙ୍କ ବାମ କଲା ପ୍ରହାର ।
ବଳି ବାଟୁଳିକି ସ୍ତନାଗ୍ରରୂପେ ସେ ମନୋହର । ୪୦ ।

---

୩୬ଶ ପଦ—ବୟସରନବରୁ—ନୂଆବୟସଠାରୁ । ବକ୍ଷରେ—ଛାତିରେ ।
୩୭ଶ ପଦ—ବର୍ଣ୍ଣମାଳୀ—ଅକ୍ଷରମାଳା ।
୩୮ଶ ପଦ—ସରଘାପନ୍ତି—ମଧୁମକ୍ଷିକାଗଣ ।
୩୯ଶ ପଦ—ବିକଳପ—କଳ୍ପନା । କ୍ରମୁକ—ଗୁଆ ।

---

୩୬ଶ ଓ ୩୭ଶ ପଦ—ନୂଆ ବୟସ ହେବାରୁ ଘନକୁ ଘନ (ସୀତାଙ୍କ) ପ୍ରଭା ବଢ଼ିଲା । ବକ୍ଷସ୍ଥଳରେ କୁଚ ଅଙ୍କୁରିତ ହେବାରୁ ଏହି ଉତ୍‌ପ୍ରେକ୍ଷା କହନ୍ତି—ବର୍ଣ୍ଣମାଳା ପ୍ରାୟ ଯେଉଁ ରୋମାବଳୀ, ସେ ମହୁମାଛି ହେଲା । ସେହି ମହୁମାଛି ଉପରକୁ ଗତି କରୁଅଛି କି ? ଏହାହିଁ ବର୍ଣ୍ଣନାଯୋଗ୍ୟ ।

୩୮ଶ ଓ ୩୯ଶ ପଦ—ସ୍ତନ୍ୟରୂପ କଳ୍ପଦ୍ରୁମରେ (ରୋମାବଳୀ ରୂପ ମହୁମାଛିମାନେ) ମଧୁ ସଞ୍ଚୁ ଅଛନ୍ତି—ଏହା ବିଶେଷ ଭାବରେ ଅନୁମାନ କରିବାର କଥା । ଅଥବା ସେ କଳ୍ପଦ୍ରୁମରେ ଫଳ ଫଳି କ୍ରମଶଃ ଗୁବାକଠାରୁ ତାଳ ଫଳ ସଦୃଶ ବୃଦ୍ଧି ପ୍ରାପ୍ତ ହେଲା କି ? କିମ୍ବା ସ୍ୱୟମ୍ଭୁ (ଯେ ସ୍ୱୟଂ ଜନ୍ମିତ ହୁଅନ୍ତି) ଶିବ-ଲିଙ୍ଗ ହୃଦରେ ବିଜୟ କଲେ କି ?

୪୦ଶ ପଦ—ମହାବଳୀ କନ୍ଦର୍ପ ଶିବଙ୍କର ଶତ୍ରୁ ଅଟେ । ତେଣୁ ସେ ସଦ୍ୟ ବାଟୁଳି ବଳି ପ୍ରହାର କଲା କି ? ସେହି ବାଟୁଳି କୁଚାଗ୍ର ରୂପରେ ମନୋହର ଦିଶୁଅଛି (ବାଟୁଳି ବାଣ ଫୁଟିବା ପଡ଼ିବାର କଥା, ମାତ୍ର ଏ ବାଟୁଳି ସାଙ୍ଗେ ସାଙ୍ଗେ ଚଅଡ଼ ହୋଇଥିବାରୁ ଓଦା ଥିଲା ଓ କଳା ଦିଶୁଥିଲା । ସେହି କଳା ଓ ଓଦା ବାଟୁଳି ମହାଦେବଙ୍କ ଶିରରେ ବାଜି ଲାଗି ରହିଅଛି କି ?)

ବାସରେ ଯତନେ ଘୋଡାଇ ଚୋଳ କବଚ ଦେଇ ।
ବାସଅଙ୍ଗୀ ସ୍ମର ଭୟରୁ ରତ ସେବନେ ସ୍ନେହ । ୪୧ ।
ବନଧରକୁ ଯେ ଜିଣିଲା କଟି କୃଶତା ହୋଇ ।
ବନଧରକେଶୀ କିଙ୍କିଣୀ ଜୟବାଦ୍ୟ ବଜାଇ । ୪୨ ।
ବଳାହଂସକ ନାଦେ ଗତି ବଡ଼ିମା ଶୁଣାଇ ।
ବଳାହାଟରେ ମନ୍ଦ ସଞ୍ଚରଣ ଗଜ ହଂସ ଜିଣାଇ । ୪୩ ।
ବାରଣବୃଷା ଗର୍ବ ଖର୍ବ କରି ଊରୁ ଦୀପିତ ।
ବାରଣଦନ୍ତ କୁନ୍ଦା ସ୍ତମ୍ଭ କି କୁଙ୍କୁମ ଲେପିତ । ୪୪ ।

---

୪୧ ଶ ପଦ—ବାସରେ—ଲୁଗାରେ । ଚୋଳ—କାଞ୍ଚୁଲି । କବଚ—ସାଞ୍ଜୁ ।

୪୨ ଶ ପଦ—ବନଧର—ହିଂସ୍ର । ବନଧରକେଶୀ—ମେଘର ବର୍ଣ୍ଣପରି ଯାହାର କେଶର ବର୍ଣ୍ଣ ( ସୀତା )।

୪୩ଶ ପଦ—ହଂସକ—ନୂପୁର । ମନ୍ଦ ସଞ୍ଚରଣେ—ମନ୍ଦଗତିରେ ।

୪୪ଶ ପଦ—ବାରଣବୃଷା—କଦଳୀ ବୃକ୍ଷ । ଊରୁ—ଜାନୁ । ଦୀପିତ—ଶୋଭିତ । ବାରଣଦନ୍ତ—ହସ୍ତୀଦନ୍ତ ।

---

୪୧ ପଦ- ସୌରଭଙ୍ଗୀ ସୀତା କାମ ଭୟରୁ ସ୍ତନଶମ୍ଭୁଙ୍କୁ ରକ୍ଷା କରିବାପାଇଁ ତାକୁ କାଞ୍ଚୁଲି ରୂପ କବଚରେ ଆଚ୍ଛାଦନ କରି ତା ଉପରେ ଲୁଗା ଘୋଡ଼ାଇଲେ । ଆଉ ମଧ୍ୟ ରତି ସେବା କଲେ ( ରତି ସେବା କଲେ ରତିଙ୍କ ସ୍ୱାମୀ କାମଦେବ ସନ୍ତୁଷ୍ଟ ହେବେ ; ଅର୍ଥାତ୍ ରତି ରସରେ ଚିତ୍ତ ମଜ୍ଜିଲା )।

୪୨ ପଦ—ସୀତାଙ୍କର କଟି କ୍ଷୀଣତାର ହିଂସ୍ରକୁ ଜୟ କଲା । ତେଣୁ ସେହି ଜଳଧରକେଶୀ ସୀତା କିଙ୍କିଣୀରୂପ ଜୟବାଦ୍ୟ ବଜାଇଲେ ।

୪୩ଶ ପଦ—ସୀତାଙ୍କର ଗମନ ଗଜ ଓ ହଂସର ଗତିକୁ ବଳି ପଡିବାରୁ ସେ ଧୀର ଗତି କଲାବେଳେ ବଳା ଓ ନୂପୁର ନାଦରେ ଗମନର ବଡିମାକୁ ଶୁଣାଇଲେ । ( ତାଙ୍କ ଗତି ହଂସ ଓ ଗଜର ଗତିଠାରୁ ମଧ୍ୟ ମନ୍ଥର ହେଲା । )

୪୪ଶ ପଦ—ତାଙ୍କ ଊରୁଦ୍ୱୟ କଦଳୀ ବୃକ୍ଷର ଗର୍ବକୁ ଖର୍ବ କରି ତେଜ ପ୍ରକାଶ କଲା । ( ତାହା ଦେଖି ମନେ ହେଲା ) କୁନ୍ଦା ହୋଇଥିବା ହସ୍ତୀ-ଦନ୍ତର ସ୍ତମ୍ଭରେ କୁଙ୍କୁମ ବୋଳା ହୋଇଛି କି ?

ବାହୁ ଶୋଭା ଚାହିଁ ମୃଣାଳ କଣ୍ଟକକୁ ବହିଲା ।
ବାହୁଟି ତାଡ଼ରେ ଜାଣିଲି ସେ ପୂଜାକୁ ପାଇଲା । ୪୫ ।
ବ୍ରହ୍ମାଣ୍ଡରେ ନାହିଁ ସେ ହସ୍ତତୁଲ କହିବା ତର୍କେ ।
ବ୍ରହ୍ମା ତେଣୁ ଦେଲା ଅତୁଲ କର ନାମ କଟକେ । ୪୬ ।
ବିଭୂଷଣ ଭୂଷାନିଚୟ ସର୍ବ ସୁନ୍ଦରୀଙ୍କରେ ।
ବଲ୍ଲ ସେ ଜାନକୀ ଅତୁଲ ତାଙ୍କୁ ଅମ୍ଭେ ଏଠାରେ । ୪୭ ।
ବନ୍ଦଅମଣ୍ଡନେ ଶ୍ରବଣେ ତ ଲପନ ଘଣ୍ଡ ।
ବନ୍ଦଅ ନୋହୁ କି ସେ ଯିବ, ଯେଉଁ ନୟନ ପଡ଼ । ୪୮ ।

---

୪୫ଶ ପଦ—ମୃଣାଳ—ପଦ୍ମନାଡ ।
୪୭ଶ ପଦ—ବିଭୂଷଣ—ମଣ୍ଡନ । ଭୂଷାନିଚୟ—ଅଲଙ୍କାର ସମୂହ ।

---

୪୫ଶ ପଦ—ବାହୁର ସୌନ୍ଦର୍ଯ୍ୟ ଦେଖି ପଦ୍ମନାଡ଼ ( ଅସମାନ ହେବାରୁ ) ଦେହରେ କଣ୍ଟା ବହନ କଲା । ତହିଁରେ ବାଜୁବନ୍ଧ ଓ ତାଡ଼ ଦିଅ ଯିବାରୁ ମନେ କରୁଛି,—ସେ ଦୁହେଁ ( ବାହୁକୁ ) ପୂଜା କରୁଅଛନ୍ତି କି ? କିମ୍ବା—ବାଜୁବନ୍ଧ ଓ ତାଡ଼ ଦୁହେଁ କି ହୁରେ ଘଟିବାରୁ ନିଜେ ନିଜେ ବାହୁଶୋଭା ( ପୂଜ୍ୟ ହେଲେ ) ଆଦର ଲଭିଲେ ) ।

୪୬ ପଦ—ସୀତାଙ୍କ ସହିତ ତୁଲ୍ୟ ହେବାକୁ ବ୍ରହ୍ମାଣ୍ଡରେ ଆଉ କିଛି ନାହିଁ । ତେଣୁ ମନେ ହୁଏ, ବ୍ରହ୍ମା ସେ ହସ୍ତରେ ଥିବା ବଳୟର ନାମ ଅତୁଲ୍ୟ ରଖିଅଛନ୍ତି ।

୪୭ଶ—ପଦ ପୃଥିବୀର ସମସ୍ତ ସୁନ୍ଦରୀ ନାନା ଅଲଙ୍କାରରେ ଭୂଷିତ ହୋଇ ସୁଦ୍ଧା ସୀତାଙ୍କ ସହିତ ସମକକ୍ଷ ହେବେ ନାହିଁ । ତେଣୁ ସେମାନେ ମନେ ( ଅଲଙ୍କାରମାନେ ) କଲେ—ସୀତା ଅମ୍ଭମାନଙ୍କର ତୁଲ୍ୟ । ଅମ୍ଭେ ତାଙ୍କୁ ସମକକ୍ଷ ନୋହୁ । [ ଅଲଙ୍କାର ସବୁ ସୁନ୍ଦରୀମାନଙ୍କର ଭୂଷଣ । ମାତ୍ର ସେହି ଅଲଙ୍କାରମାନ ସୀତାଙ୍କୁ ଦେଖି ମନେ କଲେ, ସୀତା ଅମର ତୁଲ୍ୟ, ଅମେ ତାଙ୍କର ଭୂଷଣ ହେବା ତ ଦୂରେ ଥାଉ, ତାଙ୍କ ସମକକ୍ଷ ମଧ୍ୟ ହୋଇପାରିଲୁ ନାହିଁ । )

୪୮ଶ ପଦ---ସେ ତଡ଼ିତାକୁ ବଦଳାଇ ତା ପରିବର୍ତ୍ତିରେ କନ୍ଦଅ [ କର୍ଣ୍ଣାଳଙ୍କାର ବିଶେଷ ] ଶ୍ରବଣରେ ମଣ୍ଡନ କଲେ । ତହିଁରେ ଯେଉଁ ଅକ୍ଷି ପଡ଼ିବ, ସେ ବନ୍ଦୀ ନ ହୋଇ କି ଅଛି ଯିବ ? [ ସେହି ବନ୍ଦଅଠାରେ ଅକ୍ଷି ବାନ୍ଧି ହୋଇ ରହିବ । )

ତାଡ଼ୀ ଫଳଡାଢ ସୁଫୁଲ ମଲ୍ଲୀକଢ଼ୀ କଟ ଷଷେ ।
ତାଳୀ ଫଳଡାଳ ଯେମନ୍ତ ନୋହିବ ଶେଷେ । ୪୯ ।
ବନ୍ଧା ସୁମନରେ ଜୁଡ଼ା ଯେ ଧୈର୍ଯ୍ୟ ହରୁଡ଼ା ସେହି
ବନ୍ଧା ସୁମନକୁ ପକାଇ ନେବ କେ ମୁକୁଳାଇ ? ୫୦ ।
ବିଶେଷେ ଚଞ୍ଚଳ ଈକ୍ଷଣ ବାଣ ସେ ଗତାଗତ ।
ବିଷେ ସେ ଯୁକ୍ତ କି ଅଞ୍ଜନେ ଯେଣୁ ଅତି ଜ୍ୱଳିତ । ୫୧ ।
ତାକିବାର ଭୟେ କୁରଙ୍ଗ ମୀନ ବନେ ପଳାଇ ।
ତାଜୀବାର ଗତାଗତ ସେ ଗତି ଶିଖିବା ପାଇଁ । ୫୨ ।

---

୪୯ଶତ ପଦ—ତାଳୀ—ସୀତା, କର୍ଣ୍ଣାଳଙ୍କାର ବିଶେଷ । ଶେଷେ—ଶେଷଦେବଙ୍କଦ୍ୱାରା, ଅନନ୍ତଦ୍ୱାରା ।

୫୦ଶତ ପଦ—ସୁମନରେ—ଫୁଲରେ ।

୫୧ଶତ ପଦ—ଈକ୍ଷଣ—ନେତ୍ର । ଗତାଗତ—ଗମନାଗମନ । ଅଞ୍ଜନ—କଜ୍ଜଳ । ଜ୍ୱଳିତ—ଉଜ୍ଜ୍ୱଳ ।

୫୨ଶତ ପଦ—କୁରଙ୍ଗ—ମୃଗ । ମୀନ—ମତ୍ସ୍ୟ । ବନେ—ଅରଣ୍ୟରେ, ଜଳରେ । ତାଜୀବାର—ଘୋଟକ ସମୂହ, ପକ୍ଷୀମାନେ ।

---

୪୯ଶତ ପଦ—ସୀତା ତାଳୀ, ଫଳଫାଶିଆ, କାନଫୁଲ ଓ ମଲ୍ଲୀକଢ଼ୀ ( ମଲକଢ଼ୀ ) ପ୍ରଭୃତି କର୍ଣ୍ଣଭୂଷଣରେ ଭୂଷିତ ହୋଇ ଯେଉଁ ଅନିର୍ବଚନୀୟ ଶୋଭା ଧାରଣ କରିଥିଲେ, ତାହା ଶେଷଦେବ ସହସ୍ରମୁଖରେ ସୁଦ୍ଧା ବର୍ଣ୍ଣନା କରି ପାରିବେ ନାହିଁ

୫୦ ଶତ ପଦ—ତାହାଙ୍କର ନାନାଜାତି ଫୁଲରେ ମଣ୍ଡିତ ହୋଇଥିବା ଜୁଡ଼ା ଦର୍ଶକମାନଙ୍କର ଧୈର୍ଯ୍ୟ ଲୋପକାରୀ ଥିଲା । ଏଣୁ ଥରେ ମାତ୍ର ତାହାକୁ ଦେଖିଲେ, ସେହି ଶୋଭା ଦର୍ଶନରୁ ମନକୁ ଫେରାଇ ଆଣିବା କଷ୍ଟକର ହେଉଥିଲା ।

୫୧ ଓ ୫୨ଶତ ପଦ—ମୃଗସମୂହ ଓ ମୀନସମୂହ ଅତିଶୀଘ୍ର ଗମନାଗମନ କରୁଥିବାରୁ ସୀତାଙ୍କର ଅକ୍ଷିକୁ ଶର ଏବଂ ସେଥିରେ ଅତି ଉଜ୍ଜ୍ୱଳ କଜ୍ଜଳ ଲାଗିଥିବାରୁ ବିଷବୋଳା ( ଶର ) ବୋଲି ଭାବି କେଉଁଠି ଆମ ଦେହରେ ବାଜିବ, ଏହି ଆଶଙ୍କାରେ ଅରଣ୍ୟ ଓ ଜଳରେ ପ୍ରବେଶ କଲେ । କିନ୍ତୁ ଘୋଡ଼ା ଓ ପକ୍ଷୀମାନେ ତାହାଙ୍କ ନେତ୍ରର ଗତି ସହିତ ସମାନ ହେବାପାଇଁ ଶୀଘ୍ରତର ଅଭ୍ୟାସରେ ଲାଗିଲେ । ( ଅର୍ଥାତ୍ ମୃଗ, ମୀନ, ଘୋଟକ ଓ ପକ୍ଷୀମାନଙ୍କର ଗତିଠାରୁ ତାଙ୍କ ନେତ୍ରର ଗତି ବଳି ପଡ଼ୁଥିଲା ) ।

ବର୍ତ୍ତୁଳ ମୁକ୍ତା ଚଳଇ ନାସା ପୁଟ ଯେ ଫୁଲେ ।
ବର୍ତ୍ତିବେ ତା ବୁଦ୍ଧି ଅଜନ୍ମ ବ୍ରହ୍ମଗ୍ରସ୍ତ ହୋଇଲେ । ୫୩ ।
ବନ୍ଧୁ କରିବାର ଇଚ୍ଛିଲା ଯେଣୁ ଅଧର ତୁଲେ ।
ବନ୍ଧୁକ ନାମହିଁ ରହିଲା ତେଣୁ ରକ୍ତିମ ଫୁଲେ । ୫୪ ।
ବନ୍ଧୁଲି ଅଧର ବୋଲିବା ଯୁକ୍ତ ଅର୍ଥରେ ଅନ ।
ବନ୍ଧୁ କରେ ତହିଁ ଉପରେ ହାସ ପ୍ରକାଶମାନ । ୫୫ ।
ବହନ୍ତି ମୋତସନ୍ତ ଦନ୍ତ ଓଷ୍ଠ ମାଣିକ୍ୟପାନେ ।
ବିଭବ ଶୋଭାର କେ କହୁ ଯେ ବଦନ ବଖାଣେ । ୫୬ ।

---

୫୩ଶତ୍ ପଦ—ବର୍ତ୍ତୁଳ—ଗୋଲ । ଫୁଲେ—ଫୁଲି ଉଠୁଥିବା । ଅଜନ୍ମ—ପିଲାଦିନରୁ ।

୫୪ଶତ୍ ପଦ—ରକ୍ତିମ ଫୁଲ—ବନ୍ଧୁଲି ଫୁଲ । ଅଧର—ଓଠ ।

୫୫ଶତ୍ ପଦ—ବନ୍ଧୁ—ବୋହୂ, ଏଠାରେ ସୀତା । ଅଧର—ନ୍ୟୂନ ।

୫୬ଶତ୍ ପଦ—ମୋତ—ଶୁକ୍ଳ ହୀର । ମାଣିକ୍ୟ—ପଦ୍ମରାଗମଣି । ବିଭବ—ସମୂହ, ଏଠାରେ ଉତ୍କର୍ଷ ।

---

୫୩ଶତ୍ ପଦ—ପିଲାଦିନରୁ ବ୍ରହ୍ମଗ୍ରସ୍ତ ହୋଇଥିଲେ ସୁଦ୍ଧା ( ନିଶ୍ୱାସ ନେବା ସମୟରେ ) ଫୁଲି ଉଠୁଥିବା ତାହାଙ୍କ ନାକପୁଡ଼ା ନିକଟରେ ଦୋହଲୁଥିବା ଗୋଲ ମୁକ୍ତାକୁ ଦେଖି କେଉଁ ଲୋକ ବର୍ତ୍ତିବ ?

୫୪ଶତ୍ ପଦ—ବନ୍ଧୁଲି ଫୁଲ [ ସାତଘଡିଆ ଫୁଲ । ସୀତାଙ୍କର ଓଷ୍ଠ ସହିତ ବନ୍ଧୁତା କରିବାକୁ ଇଚ୍ଛା କରିବାରୁ, ତାହାର ନାମ ବନ୍ଧୁକ ହେଲା । ( ଅର୍ଥାତ୍ ତାଙ୍କର ଓଷ୍ଠ ବନ୍ଧୁଲି ଫୁଲ ପରି ରକ୍ତବର୍ଣ୍ଣ ଅଟେ ) ।

୫୫ଶତ୍ ପଦ—ସୀତାଙ୍କର ଓଷ୍ଠ ବନ୍ଧୁଲିର ସମାନ ଥିବାରୁ ତାହାଙ୍କୁ ବନ୍ଧୁଲିଅଧର କହିବା ଉପଯୁକ୍ତ ହେଲେ ମଧ୍ୟ ସେପରି ଅର୍ଥ କରିବା ଠିକ୍ ନୁହେଁ, ଯେହେତୁ ସୀତା ସେହି ବନ୍ଧୁଲି-ଅଧର ( ଓଷ୍ଠ ) ଉପରେ ହାସ ପ୍ରକାଶ କରନ୍ତି । ( ଅର୍ଥାତ୍ ବନ୍ଧୁଲିକୁ ଉପହାସ କରନ୍ତି ) ଅତଏବ 'ବନ୍ଧୁଲି' ରକ୍ତିମ ଫୁଲ ତାହାଙ୍କର ଓଷ୍ଠଠାରୁ 'ଅଧର' ନ୍ୟୂନ ଅଟେ ।

୫୬ଶତ୍ ପଦ—ସୀତାଙ୍କର ଓଷ୍ଠରୂପୀ ପଦ୍ମରାଗ ମଣିର ପାତ୍ର ଦନ୍ତରୂପୀ ହୀର ସମୂହକୁ ଧାରଣ କରିଅଛି (ଅର୍ଥାତ୍ ତାହାଙ୍କର ଅତି ସ୍ୱଚ୍ଛ ଦନ୍ତପଂକ୍ତି ଓଷ୍ଠର ରକ୍ତିମାଭାସ ସମସ୍ତ ସମୟରେ ରଞ୍ଜିତ ହୋଇଅଛି ) । ଏଣୁ ମନେ ହୁଏ, ସେହି ଶୋଭାର ଉତ୍କର୍ଷ ଶବ୍ଦରେ ଦେଖାଇ ହେବ ନାହିଁ, ତାହାକୁ କିଏ ବର୍ଣ୍ଣନା କରିବ ?

ବିଭୂଷଣ ନାନାପ୍ରକାରେ ଯେତେକ କରନ୍ତି ଜନ ।
ବିଭୂଷଣ ପର ତହିଁକି ଦିଶେ ସୁନ୍ଦରୀ ଜ୍ୟୋତି । ୫୭ ।
ବଦନରେ ଚନ୍ଦ୍ର ଦର୍ପଣ ପଦ୍ମ ନିନ୍ଦୁଥାଇବା ।
ବଦନରେ ଏହୁ ଉକ୍ତିକି ଆନ କି ଲପ ଦେବା ? ୫୮ ।
ବରବର୍ଣ୍ଣିନୀ ରସଲତା ନବ ପୁଷ୍ପବତୀ ସେ ।
ବରଣ କରିବା ଜନକ କହେ ଯତିଙ୍କ ପାଶେ । ୫୯ ।
ବାଶଲେ ବାଲ୍ମୀକି ଛେଦିବ ଯେହୁ ଶିବରୂପକୁ ।
ବାରିଜଗନ୍ଧାକୁ ପ୍ରଦାନ ନିଶ୍ଚେ କରିବା ତାକୁ । ୬୦ ।
ବୋଧ ଜନକ ହରଧନୁ ସ୍ୱୟମ୍ବର ରଚିତ ।
ବୋଧକର ମୁଖେ ବିଖ୍ୟାତ, ନୃପଗଣେ ଅଗତ । ୬୧ ।

---

୫୮ଶତ୍ ପଦ—ବଦନ—ମୁଖ । ଲପ—ଉପମା ।

୫୯ତମ ପଦ—ବରବର୍ଣ୍ଣିନୀ—ପୀତବର୍ଣ୍ଣା । ରସଲତା—ଶୃଙ୍ଗାରରସରୂପ ଲତା । ପୁଷ୍ପବତୀ—କୁସୁମବତୀ, ଯୁବତୀ ।

୬୦ତମ ପଦ—ବାଶଲେ—କହିଲେ । ଶିବରୂପ—ଶିବଧନୁ । ବାରିଜଗନ୍ଧା—ପଦ୍ମଗନ୍ଧା ।

୬୧ ତମ ପଦ—ବୋଧକର—ଭାଟ ।

---

୫୭ଶତ୍ ପଦ—ସୀତା ପ୍ରତିଦିନ ଯେଉଁସବୁ ଅଳଙ୍କାର ଧାରଣ କରନ୍ତି, ତାହାଙ୍କର କାନ୍ତି ସେହି ଅଳଙ୍କାରମାନଙ୍କର ଅଳଙ୍କାର ପରି ଦେଖାଯାଏ । (ଅର୍ଥାତ୍ ସୀତା ଅଳଙ୍କାରର ଅଳଙ୍କାର ଅଟନ୍ତି ) ।

୫୮ଶତ୍ ପଦ—ଆନନ୍ଦଦାୟକ ଗୁଣରେ ଚନ୍ଦ୍ର, କାନ୍ତିରେ ଦର୍ପଣ ଓ ସୁଗନ୍ଧରେ ପଦ୍ମ, ସୀତାଙ୍କ ମୁଖଠାରୁ ଊଣା ଅଟନ୍ତି । ଅତଏବ ଅନ୍ୟ କୌଣସି ବସ୍ତୁର ନାମ ମୁଖରେ ଉଚ୍ଚାରଣ କରି ଉପମା ଦେବା ଠିକ ନୁହେଁ ।

୫୯ତମ ପଦ—ସେହି ସୁନ୍ଦରୀ ସୀତା ଯୌବନରେ ପଦାର୍ପଣ କରିବାରୁ 'ତାହାଙ୍କର ସ୍ୱୟମ୍ବର କରିଉ ରାଜାମାନଙ୍କୁ ନିମନ୍ତ୍ରଣ କରିବା,— ଏହି କଥା ଜନକ ଋଷିମାନଙ୍କ ନିକଟରେ ପ୍ରକାଶ କଲେ ।

୬୦ତମ ପଦ—ଏହା ଶୁଣି ବାଲ୍ମୀକି ମୁନି କହିଲେ, "ଯେ ଶିବଧନୁ ଛେଦିବାକୁ ସମର୍ଥ ହେବ, ତାହାକୁ ପଦ୍ମିନୀ ସୀତାଙ୍କୁ ପ୍ରଦାନ କରିବା ।"

୬୧ ତମ ପଦ—ଜନକ 'ହରଧନୁ' ଛେଦିବା ପଣରେ ରଚିକରି ସ୍ୱୟମ୍ବର ସଭାର ସମସ୍ତ ଯୋଗାଡ଼ କରି ଖ୍ୟାତନାମ ଭାଟମାନଙ୍କ ଦ୍ୱାରା ରାଜାମାନଙ୍କ ନିକଟକୁ ନିମନ୍ତ୍ରଣ ପଠାଇଲେ ।

ବାସ କରନ୍ତୁ ସେହି ସୀତାଲୀଳା ସଦା ମୋ ହୃଦ ।
ବାଷଠୀପଦେ ଉପଇନ୍ଦ ଭଞ୍ଜ କହେ ଏ ଛାନ୍ଦ । ୬୨ ।

---

## ଚତୁର୍ଥ ଛାନ୍ଦ

### ରାଗ—ମାଳବଗଉଡ଼ା

ବୁଦ୍ଧି ଉତ୍ତମ ଯାହାର ଭାବ୍ୟ ଅଭଧାନେ ।
ବୃଜନନାଶ ଚରିତ ଶୁଣ ସାବଧାନେ ହେ । ୧ ।
ବୃଦ୍ଧିହୀନ ଦ୍ୱାଦଶ ବରଷ ଚମ୍ପାବତୀ ।
ବଡ଼ ଚିନ୍ତା ଇଭ ଲୋମପାଦ ନରପତି ଯେ । ୨ ।
ବରଷା ହେବ ଋଷ୍ୟଶୃଙ୍ଗ ଆଗମନେ ।
ବ୍ରହ୍ମଜ୍ଞାନ ଦରି ଯେଣ ଯୋଗୀନ୍ଦ୍ର ସମାନେ ଯେ । ୩ ।

---

୧ମ ପଦ—ବୃଜନ ନାଶ—ପାପ କ୍ଷୟକର ।
୨ୟ ପଦ—ବୃଷ୍ଟିହୀନ—ବର୍ଷାଶୂନ୍ୟ । ନରପତି—ରାଜା ।
୩ୟ ପଦ—ଯୋଗୀନ୍ଦ୍ର—ତପସ୍ୱୀ ଶ୍ରେଷ୍ଠ ।

---

୬୨ତମ ପଦ—ସେହି ସ୍ୱୟମ୍ବର ସୀତାଙ୍କର ଲୀଳା ସଦା ମୋ ହୃଦୟରେ ଜାଗିଉଠୁ । ଉପେନ୍ଦ୍ର ଭଞ୍ଜ ଏହିକଥା କହି ବାଷଠିପଦରେ ଏଛାନ୍ଦ ଶେଷ କଲେ ।

---

## ଚତୁର୍ଥ ଛାନ୍ଦ

୧ମ ପଦ—ଯେଉଁମାନଙ୍କର ଭାବ୍ୟ ଓ ଅଭଧାନରେ ଉତ୍ତମ ବୁଦ୍ଧି ଅଛି, ସେମାନେ ପାପ କ୍ଷୟକର ଏହି ଚରିତକୁ ମନ ଦେଇ ଶୁଣନ୍ତୁ ।

୨ୟ ପଦ—ଚମ୍ପାବତୀ ନଗରୀରେ ବାରବର୍ଷ ପର୍ଯ୍ୟନ୍ତ ବର୍ଷା ନ ହେବାରୁ ଲୋମପାଦ ରାଜା (ଚମ୍ପାବତୀର ରାଜା) ଅତ୍ୟନ୍ତ ଚିନ୍ତିତ ହେଲେ ।

୩ୟ ପଦ—ଯୋଗୀମାନେ ବ୍ରହ୍ମଜ୍ଞାନକୁ ସତ୍ୟ ମନେ କଲା ପରି, ଲୋମପାଦ 'ଋଷ୍ୟଶୃଙ୍ଗ ଆସିଲେ ବର୍ଷା ହେବ' ଏହି କଥାକୁ ସତ୍ୟ ମନେ କରିଥିଲେ ।

ବୁଲଇ ନିଜ ନଗରେ ପଞ୍ଚରତ୍ନ ଥାଳୀ ।
ବଜ୍ର ଧରି ଶତମନ୍ୟୁ ପରାୟେ ସେ ଝଳି ଯେ । ୪ ।
ଉଦ୍ଭାଶରେ ପଦ୍ମରାଗ ସବିତା ପ୍ରତିଭା ।
ବହିଛି ସେ ମାରକତୀ ହୋଇ ରତି ଶୋଭା ଯେ । ୫ ।
ବିଦ୍ରୁମେ ମହୋଜ୍ଜ୍ୱଳ ଅଟବୀ ସଦୃଶ ।
ବହି ଗର୍ଭେ ମୌକ୍ତିକ ଶୁକ୍ତି, ଏ ବିବିଧ ଶ୍ଳେଷ ଯେ । ୬ ।
ବେଶ୍ୟାସାର କରିତା ତା ରତା ହୋଇ ନେଲା ।
ବନ୍ଦି ଅଜନ୍ମତପସ୍ୱୀ ଅର୍ଣ୍ଣବ ବୋଇଲା ଯେ । ୭ ।

---

୪ର୍ଥ ପଦ :—ବଜ୍ର—ଇନ୍ଦ୍ରଙ୍କ ଅସ୍ତ୍ର, ହୀରା । ଶତମନ୍ୟୁ—ଇନ୍ଦ୍ର ।

୫ମ ପଦ :—ପଦ୍ମରାଗ—ମରକତମଣି, ପଦ୍ମଜାତ ସ୍ନେହ । ସବିତା—ସୂର୍ଯ୍ୟ । ମାରକତୀ—ମରକତ ସମ୍ବନ୍ଧୀ, କନ୍ଦର୍ପର ନିକଟବର୍ତ୍ତୀ ।

୬ଷ୍ଠ ପଦ :—ବିଦ୍ରୁମେ—ପୋହଳାରେ, ନୂତନ ପତ୍ରରେ । ଅଟବୀ—ଅରଣ୍ୟ । ମୌକ୍ତିକ—ମୁକ୍ତା । ଶୁକ୍ତି—ଶାମୁକା ।

୭ମ ପଦ :—ରତା—ଅନୁରକ୍ତା । ଅଜନ୍ମତପସ୍ୱୀ—ଆଜନ୍ମବ୍ରହ୍ମଚାରୀ ।

---

୪ଥ ପଦ:—(କ୍ଷେମପାଦ ରାଜା) ଇନ୍ଦ୍ର ନିଜର ଅସ୍ତ୍ର ବଜ୍ରକୁ ଧରିଥିବାରୁ ଯେପରି ତେଜୀୟାନ୍ ଅଟନ୍ତି, ସେହିପରି 'ବଜ୍ର' ହୀରା ଥିବାରୁ ଅତି ତେଜୀୟାନ୍ ଦେଖାଯାଉଥିବା ପଞ୍ଚରତ୍ନ ଥାଳୀ (କ୍ଷେମପାଦ ରାଜା) ନିଜ ନଗରରେ ବୁଲାଇଲେ ।

୫ମ ପଦ:—ସେ ଥାଳୀ ପଦ୍ମରାଗ ମଣିର ତେଜରେ ରଞ୍ଜିତ ହୋଇ ସୂର୍ଯ୍ୟଙ୍କପରି ଦେଖାଯାଉଛି । ତାହା ଦେଖି ମନେ ହୁଏ—ସୂର୍ଯ୍ୟ ପଦ୍ମଠାରେ ସ୍ନେହ କରି ତାହାର ବିକାଶ ନିମନ୍ତେ ନିଜର ତେଜକୁ ତାହା ଉପରେ ନିକ୍ଷେପ କରନ୍ତି (ଅର୍ଥାତ୍ ସୂର୍ଯ୍ୟକିରଣ ପଡ଼ିଲେ ପଦ୍ମ ଫୁଟେ) । ଅତଏବ ଏହି ଥାଳୀରେ 'ପଦ୍ମ-ରାଗ' ପଦ୍ମଜାତ ସ୍ନେହ ଥିବାରୁ ଥାଳୀଟି ସୂର୍ଯ୍ୟଙ୍କପରି ତେଜୀୟାନ୍ ହୋଇଅଛି । ଆଉ ମଧ୍ୟ ସେହି ଥାଳୀ ରତିଙ୍କପରି ସୁନ୍ଦର ଦେଖାଯାଉଛି, କାରଣ ରତି ସବୁବେଳେ କନ୍ଦର୍ପର ନିକଟରେ ଥାନ୍ତି । ଏହି ଥାଳୀ ମଧ୍ୟ "ମାରକତୀ" ମରକତ ମଣିର ସମ୍ବନ୍ଧକୁ ପାଇଛି; ଅର୍ଥାତ୍ ପଦ୍ମରାଗ ମଣି ଏଥିରେ ଅଛି ।

୬ଷ୍ଠ ପଦ—ସେହି ଥାଳୀ ମଧ୍ୟରେ ଅତି ଉଜ୍ଜ୍ୱଳ ପୋହଳା ଥିବାରୁ ନବପଲ୍ଲବ ଧାରଣ କରି ଅତି ମନୋହର ଦେଖାଯାଉଥିବା ଅରଣ୍ୟପରି ଦିଶୁଅଛି । ଆଉ ମଧ୍ୟ ଏହା ମଧ୍ୟରେ ମୁକ୍ତା ଥିବାରୁ, ମୁକ୍ତାଗର୍ଭେ ଶାମୁକାପରି ଶୋଭା ପାଉଛି । ଏହିପରି ଏ ତିନି ପଦରେ ଶ୍ଳେଷାର୍ଥ ରହିଛି ।

୭ମ ପଦ—ବେଶ୍ୟାଶ୍ରେଷ୍ଠା ଅନୁରକ୍ତା ସେହି ପଞ୍ଚରତ୍ନ ଥାଳୀକୁ ଅଚ୍ଛନ୍ଦ ସହିତ ନେଇ ବନକୁ ଅଜନ୍ମ ବ୍ରହ୍ମଚାରୀ ସେହି ଋଷ୍ୟଶୃଙ୍ଗକୁ 'ଅର୍ଣ୍ଣବ' ବୋଲି କହିଲା ।

ବୃଷଭ ଗୋଡ଼ାଇ ଧେନୁ ପଛରେ ଯେମନ୍ତ ।
ବେଦାଧ୍ୟୟନ ଛଡ଼ାଇ ଆଣିବ ତେମନ୍ତ ଯେ ।୮।
ବର୍ଦ୍ଧକୀ ଡକାଇ ସଜାଡ଼ାଇ ଦିଅ ନାବ ।
ବେଶ୍ମ ସବୁ ମହା ମନୋରମ ହୋଇଥିବ ଯେ ।୯।
ବିବିଧ ପଦାର୍ଥ ଭର୍ତ୍ତି କରିଦିଅ ତହିଁ ।
ବନ ରଚନାହିଁ ହୋଇଥିବ, ଲୁଷେ ଭଡ଼ ଯେ ।୧୦।
ବଟସ୍ଥର ନୃପତି ସାମନ୍ତେ ଭୃତ୍ୟପରି ।
ବାର ବାରନାରୀ ଗଲେ ଅନୁକୂଳ କରି ଯେ ।୧୧।
ବସିଲେ ତରଣୀ ଅଙ୍କେ ଛାୟା ପରି ହୋଇ ।
ବସ୍ତ୍ରବା ପୁଷ୍କର ଗମନେ ସେ ଯୋଗାଇଲେ ଯେ ।୧୨।

---

୯ମ ପଦ—ବର୍ଦ୍ଧକୀ—ବଢେଇ । ବେଶ୍ମ— ଘର । ମହାମନୋରମ—ଅତି ସୁନ୍ଦର ।

୧୧ଶ ପଦ—ବଟସ୍ଥର—ଆଶ୍ରିତ । ନୃପତି—ରାଜା । ସାମନ୍ତ—ମୂଳକ । ଭୃତ୍ୟ—ଚାକର । ବାରନାରୀ—ବେଶ୍ୟା ।

୧୨ଶ ପଦ—ତରଣୀ—ନୌକା, ସୂର୍ଯ୍ୟ । ଅଙ୍କେ—କୋଳରେ, ମଧ୍ୟରେ । ଛାୟା—ସୂର୍ଯ୍ୟଙ୍କ ସ୍ତ୍ରୀ ।

---

୮ମ ପଦ—"ଷଣ୍ଢ ଯେଉଁପରି ଗାଈର ପଛେ ପଛେ ଗୋଡ଼ାଇ ଆସେ, ମୁଁ ସେହିପରି ତାଙ୍କୁ ବେଦ ପଢ଼ା ଛଡ଼ାଇ ମୋର ପଛେ ପଛେ ଦୌଡ଼ାଇ ଆଣିବି ।"

୯ମ ପଦ—"ବଢ଼ାଇ ଡକାଇ ଅତି ସୁନ୍ଦର ଘରପରି ଗୋଟିଏ ନୌକା ସଜାଇ ଦିଅ ।"

୧୦ମ ପଦ—"ତହିଁରେ ନାନାପ୍ରକାର ଜିନିଷ ରଖି ଅବିକଳ ଗୋଟିଏ ଜଙ୍ଗଲପରି କରିଦିଅ । ଏହି କଥା ଜରତୀ ରାଜାଙ୍କୁ କହିଲା ।

୧୧ଶ ପଦ—ଭୃତ୍ୟମାନେ ତାଙ୍କ ସାମନ୍ତଙ୍କର ଆଶ୍ରିତ ହୋଇ ପରି, ଲୋମପାଦ ରାଜା ତାହାର ଆଜ୍ଞା ପାଳନ କରିଥିଲେ । ଜରତୀ ବାରଜଣ ବେଶ୍ୟାଙ୍କ ସହ ଅନୁକୂଳ କରି ବାହାରିଲା ।

୧୨ଶ ପଦ—ସେହି ବେଶ୍ୟାମାନେ ସୂର୍ଯ୍ୟଙ୍କ କୋଳରେ ଛାୟାଦେବୀ ବସିଲାପରି ନୌକାର ମଧ୍ୟରେ ବସିଲେ ଏବଂ ଯିବା ସମୟରେ ଗତି କରୁଥିବା ପଦ୍ମପରି ଦେଖା ଗଲେ ।

ବିଖ୍ୟାତ ଉଡୁପ ନାମ ଯୁକ୍ତ ତାରକାରେ ।
ବଂହିଷ୍ଠବନ୍ତ ଗତି କରେ ନିଶି ଦିବସରେ ଯେ ।୧୩।
ବେନିକୂଳେ ମହାରଣ୍ୟ ସତ୍ତ୍ୟବାକେ ହୀନ ।
ବିଘନ ପଶୁ ସମୂହେ ସତ୍ୟବାକେ ପୂର୍ଣ୍ଣ ଯେ ।୧୪।
ବାଜୀ-ଗମ୍ୟ ସ୍ଥାନ ନୋହେ ସର୍ବ ସମୟରେ ।
ବାଜୀରାଜି କ୍ରୀଡ଼ା କରେ ବିଗତଭୟରେ ଯେ ।୧୫।
ବିଶ୍ରମ ଅଶ୍ରମ କେତେଦୂରେ ନାବ କରି ।
କାମାକ୍ଷୀ କାମମୋହିନୀ ବେନି ବାରନାରୀ ଯେ ।୧୬।
ବାହାରେ ରଖି ଉରତା ଭ୍ରମରବେଣୀଙ୍କୁ ।
ବଳେଇ ଏମନ୍ତ ବନ, ଏମନ୍ତ ଋଷିଙ୍କି ଯେ ।୧୭।
ବର୍ଷେଯୁ ପଲ୍ଲଶୀରେ ପଲ୍ଲଶୀରେ ଘନ ।
ବିନାତପ ପ୍ରଭୃତପ ପ୍ରସ୍ଥରେ ପ୍ରଧାନ ଯେ ।୧୮।

---

୧୩ଶ ପଦ— ଉଡୁପ—ନୌକା, ଚନ୍ଦ୍ର । ତାରକା—ସୁନ୍ଦରୀ ସଖୀଗଣ, ତାରାସମୂହ । ବଂହିଷ୍ଠବନ୍ତ—ଶୀଘ୍ର ।

୧୪ଶ ପଦ—ସତ୍ତ୍ୟବାକ—କାକ । ବିଘନ—ପୂର୍ଣ୍ଣ । ସତ୍ୟବାକେ—ଋଷିମାନଙ୍କଦ୍ୱାରା ।

୧୫ଶ ପଦ—ବାଜୀ—ଅଶ୍ୱାରୋହୀ, କାଣୁଆ, ପକ୍ଷୀ ।

---

୧୩ଶ ପଦ—ଚନ୍ଦ୍ର ତାରକାରେ ବେଷ୍ଟିତ ହୋଇ ଉଡୁପ ନାମରେ ଖ୍ୟାତ ହୋଇ କେବଳ ରାତ୍ରିରେ ଗମନ କରନ୍ତି; ମାତ୍ର ନୌକା 'ତାରକା' ସୁନ୍ଦରୀ ବେଶ୍ୟା ସମୂହ ଦ୍ୱାରା ବେଷ୍ଟିତ ହୋଇ ଦିନ ଓ ରାତିରେ ଅତି ଶୀଘ୍ର ଗତି କରୁଅଛି ।

୧୪ଶ ପଦ—ଯେଉଁ ନଦୀରେ ସେହି ନୌକା ଚଳୁଅଛି, ତାହାର ଉଭୟ କୂଳ କାକ ଶୂନ୍ୟ, ଋଷି ପୂର୍ଣ୍ଣ ଓ ପଶୁ ସଂକୁଳ ମହାରଣ୍ୟ ଅଟେ ।

୧୫ଶ ପଦ—ସେହି ଅରଣ୍ୟ ଏପରି ନିବିଡ଼ ଯେ, ସେଥିରେ ଅଶ୍ୱାରୋହୀ ଶିକାରୀ ପ୍ରବେଶ କରିବା ତ ଦୂରର କଥା, ଶର ସୁଦ୍ଧା ପ୍ରବେଶ କରି ପାରେ ନାହିଁ । ଏଣୁ ପକ୍ଷୀମାନେ ଭୟଶୂନ୍ୟ ହୋଇ କ୍ରୀଡ଼ା କରନ୍ତି ।

୧୬—୨୧ଶ ପଦ—କାମାକ୍ଷୀ, କାମମୋହିନୀ ପ୍ରଭୃତି ବେଶ୍ୟାମାନେ ଉରତା ଓ ଭ୍ରମରବେଣୀ ସହିତ ନାବକୁ ଆଶ୍ରମର କିଛି ଦୂରରେ ରଖି, ତପୋବନରେ

ବିଭୂତି ବାଞ୍ଛିତ ନୋହୁ, ବିଭୂତି ବାଞ୍ଛିତ ।
ବର୍ଜିତ କାମ ଉଦୟ, କାମ ଉଦୟିତ ଯେ । ୧୯ ।
ବଲ୍ଲରୀ ଅନ୍ତରେ ଯାଇଁ ଆରମ୍ଭିଲେ ଗୀତ ।
ବଲ୍ଲକୀ ବଜାଇ କଲେ ସପ୍ତସ୍ୱର ଜାତ ଯେ । ୨୦ ।
ବର୍ବୁର ରାଗ ସରାଗ ମୁନିର ଜନ୍ମାଇଁ ।
ବୃଦ୍ଧି ପଞ୍ଚଶରକୁ ପଞ୍ଚମସ୍ୱର ଦେଇଁ ଯେ । ୨୧ ।
ବିଟପୀକି ମୁନିମଣି ଅନେକ ଯେ ଥିଲେ ।
ବିଟପୀକି ମୁନି ମଣି ସମ୍ଭାବନା କଲେ ଯେ । ୨୨ ।
ବସାଇ ଆସନେ ପୁଚ୍ଛେ କାହିଁ ତପୋଗଣ ।
ବସ ମଠ କଇ, କହ ମଠ ନ ବରଣି ହେ । ୨୩ ।
ବଖାଣ କି କି ମନ୍ତ୍ରକୁ ଜପ କର ଜାଣ ।
ବସ୍ତୁ ଶିବ ସେବା କାହା ଭାବରେ ନିପୁଣ ହେ ? ୨୪ ।

---

୧୮ଶ ପଦ—ବର୍ଯ୍ୟସ୍ତ—ଶୂନ୍ୟ । ପଲ୍ଲଶୀ—ମାଂସଭୋଜୀ ପ୍ରାଣୀ, ବୃକ୍ଷ । ଆତପ—ସୂର୍ଯ୍ୟକିରଣ । ପ୍ରଭା—ତେଜ । ତପ—ତପସ୍ୟା ।

୧୯ଶ ପଦ—ବିଭୂତି—ଧନ, ଭସ୍ମ । । କାମ—କନ୍ଦର୍ପ, ଅଭିଳାଷ ।

୨୦ଶ ପଦ—ବଲ୍ଲରୀ--ଲତା । ବଲ୍ଲକୀ--ବୀଣା ।

୨୧ଶ ପଦ--ପଞ୍ଚଶର--କନ୍ଦର୍ପ ।

୨୨ଶ ପଦ--ବିଟପୀ--ବୃକ୍ଷ, ବେଶ୍ୟା । ସମ୍ଭାବନା--ଆଦର ।

---

ପ୍ରବେଶ କରି ଦେଖିଲେ ଯେ, ସେହି ବନ ସିଂହ, ବ୍ୟାଘ୍ର ପ୍ରଭୃତି ହିଂସ୍ର ଜନ୍ତୁ ଶୂନ୍ୟ, ବୃକ୍ଷ ସଂକୁଳ ହୋଇଥିବାରୁ ସୂର୍ଯ୍ୟକିରଣ ଶୂନ୍ୟ ଓ ଋଷିମାନଙ୍କର ତପଃ ପ୍ରଭାବରେ ପବିତ୍ର ଅଟେ । ସେହି ବନରେ ବାସ କରୁଥିବା ଋଷିମାନେ ଧନ ପ୍ରତି ଅନିଚ୍ଛା ପ୍ରକାଶ କରି, ଭସ୍ମ ବୋଳି ହୋଇ, ସମସ୍ତ ଇନ୍ଦ୍ରିୟସୁଖ ପରିତ୍ୟାଗ ପୂର୍ବକ ମୁକ୍ତିକାମନା କରୁଅଛନ୍ତି । ଏଣୁ ସେମାନେ ଋଷ୍ୟଶୃଙ୍ଗଙ୍କୁ ନିଜ ନିଜ ପ୍ରତି ଆକୃଷ୍ଟ କରାଇବା ନିମିତ୍ତ ଲତା କୁଞ୍ଜରେ ରହି ସପ୍ତସ୍ୱରରେ ବୀଣା ବଜାଇ ଗୀତ ଗାନ କଲେ । କାରଣ ସେମାନେ ଭାବି ସ୍ଥିର କଲେ, ଗୀତର ରାଗ ମୁନିଙ୍କ ହୃଦୟରେ ଆମ୍ଭ ପ୍ରତି ଅନୁରାଗ ବଢ଼ାଇବ ଓ ପଞ୍ଚମସ୍ୱର କାମ ଶକ୍ତିକୁ ବୃଦ୍ଧି କରିବ ।

୨୨—୨୪ଶ ପଦ—ମୁନିଶ୍ରେଷ୍ଠ ଋଷ୍ୟଶୃଙ୍ଗ ସେହି ତପୋବନରେ କୌଣସି ବୃକ୍ଷକୁ ଆଲିଙ୍ଗନ କରିଥିଲେ । ସେ ଏହି ବେଶ୍ୟାମାନଙ୍କୁ ଦେଖି ଋଷି ମନେ କରି ଆଦର ପୂର୍ବକ ତାଙ୍କୁ ବସିବାପାଇଁ ଆସନ ଦେଇ କହିଲେ, "ବିଳମ୍ବ ନ କରି ଶୀଘ୍ର କହନ୍ତୁ; ଆପଣମାନଙ୍କ ମଠ କେଉଁଠାରେ ? କି ମନ୍ତ୍ର ଜପ କରନ୍ତି ? ଶିବ ବା ବିଷ୍ଣୁଙ୍କୁ ଉପାସନା କରନ୍ତି ?"

ଜଡାଣି ହାସ ବଚାଣ ହାଳଣ ରସିକା ।
ବୋଇଲେ ଗେହ୍ଲ ହେଇ ଫୁଲଇ ନାସିକା ଯେ । ୨୫ ।
ବନେ ତୁମ୍ଭେ ଭ୍ରମ, ଅମ୍ଭେ ବଣାରେ ବିଳସୁଁ ।
ବନୌକା ତୁମ୍ଭେ, ବନିତା ଅମ୍ଭେତି ଏ ବଶୁ ଯେ । ୨୬ ।
ବୋଲିବାର ରାମମନ୍ତ୍ର ଆଦ୍ୟବର୍ଣ୍ଣ ଭିନ୍ନ ।
ବିସର୍ଗ ଚତୁର୍ଥ ବର୍ଣ୍ଣ ଏକ ବର ଯେନ ଯେ । ୨୭ ।
ବସନ୍ତି ଅମ୍ଭ ଦେବତା ଶମ୍ଭୁ ହୃଦସ୍ଥଳ ।
ବକ୍ଷୋରୁହ ଉରେ ଯୋଡି ଶୀଘ୍ରେ ଭଲ ବୋଲ ଯେ । ୨୮ ।
ବିଭୁତ ଅମ୍ଭ ଦେଶର ବୋଲି ତତପର ।
ବୋଲି ଦେଲା ଚୂର ବାମମୋହନୀ କର୍ପୂର ଯେ । ୨୯ ।
ବାସାନ୍ତର କରି ଉଷି ଦେଖି ପୟୋଧର ।
ବୋଇଲେ ହେ ହର ହର ! ମୋତେ କୃପା କର ହେ । ୩୦ ।

---

୨୭ଶ ପଦ—ବଣା—ଉପବନ । ବନୌକା—ବନବାସୀ ଏଠାରେ ଋଷି ।
୨୮ଶ ପଦ—ଶମ୍ଭୁ—ଶିବ । ବକ୍ଷୋରୁହ—ସ୍ତନ । ଉର—ଛାତି ।
୩୦ଶ ପଦ—ବାସାନ୍ତର କରି—ବସ୍ତ୍ର ଫେଡ଼ି । ପୟୋଧର—ସ୍ତନ । ହର—ମହାଦେବ ।

---

୨୫—୨୭ଶ ପଦ—ଋଷିଙ୍କର ଏହି କଥା ଶୁଣି ବେଶ୍ୟାମାନେ ନାକ ଫୁଲାଇ ଗେହ୍ଲେଇ ହୋଇ କହିଲେ, "ତୁମ୍ଭେ ବନରେ ବାସ କରୁଥିବାରୁ ଯେପରି ବନୌକା ନାମରେ ପରିଚିତ ହୋଇଅଛ, ଅମ୍ଭେ ସେହିପରି ବଣାରେ (ଉପବନରେ) ବାସ କରୁଥିବାରୁ ବନିତା ନାମରେ ଖ୍ୟାତ ଲାଭ କରିଅଛୁଁ । ତୁମ୍ଭେ ରାମ ମନ୍ତ୍ର (ରାମାୟ ନମଃ) ଜପ କର । ଅମ୍ଭେମାନେ ମଧ୍ୟ ସେହି ମନ୍ତ୍ର ଜପ କରୁ" ମାତ୍ର ଏତିକି ପ୍ରଭେଦ, ଆରମ୍ଭ 'ରା' ସ୍ଥାନରେ 'କା' ହୁଏ । (ଅର୍ଥାତ୍ ଅମ୍ଭେମାନେ 'କାମାୟ ନମଃ' ଏହି ମନ୍ତ୍ର ଜପ କରୁଁ ) । ଚତୁର୍ଥ ବର୍ଣ୍ଣ 'ବା' ରୁ ଛାଡ଼ି ବିସର୍ଗସହ ଅନ୍ୟ ଗୃହଗୋଟି ବର୍ଣ୍ଣ ଏକ ପର ଜାଣ ।

୨୮ଶ ପଦ—ଅନନ୍ତର କାମମୋହିନୀ "ଅମ୍ଭମାନଙ୍କର ଆରାଧ୍ୟ ଦେବତା ଶିବ ଅମ୍ଭମାନଙ୍କର ବକ୍ଷ ସ୍ଥଳରେ ବିରାଜମାନ" ଏହା କହି ଋଷିଙ୍କୁ କୋଳ କଲା ।

୨୯ଶ ପଦ—ତତ୍ପରେ କର୍ପୂର ଚୂର "ଏହା ଅମ୍ଭ ଦେଶର" ଭସ୍ମ ବୋଲି କହି ଋଷିଙ୍କ ଦେହରେ ବୋଳି ଦେଲା ।

୩୦ଶ ପଦ—ଋଷି ଲୁଗା ଫିଟାଇ ସ୍ତନକୁ ଦେଖିବା ସଙ୍ଗେ ସଙ୍ଗେ "ହେ ମହାଦେବ ! ମୋତେ ଦୟାକର", ବୋଲି କହିଲେ ।

ଝଲ୍ଲାନ ବେନି ଅର୍ଥକୁ ଝନ୍ତୁଁ ସେ ବଚନେ ।
ବିଧାନ ତାଙ୍କ ମୁଖରେ ଚୁମ୍ବନେ ଚୁମ୍ବନେ ଯେ । ୩୧ ।
ବନ୍ୟଫଳ କହି ସଙ୍ଗ କଦଳୀ ଲୁଣ୍ଠାଇ ।
ବାଣ ପଯ୍ୟଃପେଟୀ ପଯ୍ୟଃ ପାନ ସେ କରାଇ ଯେ । ୩୨
ବୋଧି ଚାରୁ ଏ ଅନ୍ନ ବର୍ଜ୍ଜିର ମାର କହି ।
ବୃଷ୍ୟକାସ୍ତି କାମସ୍ରାଙ୍କ ଅଧାମ ଚୂସ୍ରଇ ଯେ । ୩୩ ।
ବାଢିଲେ ଯେ ଘୃତସକ୍ତ ଅମିକ୍ଷା ଅସ୍ତରେ ।
ବର୍ଣ୍ଣି ପୁଚ୍ଛେ କି, ଭୋଜନ କର ସେ ବୋଲନ୍ତେ ଯେ । ୩୪ ।
ବିପ୍ର ତୁମ୍ଭେ, ଅମ୍ଭେ ଯାହା ବୋଲୁଁ ତା ଶୁଣ ।
ବିପ୍ରଲବ୍‌ଧା ସେନା ଅଶ୍ମ ତାଙ୍କରେ ନିପୁଣ । ୩୫ ।

---

୩୧ ଶ ପଦ —ଝଲ୍ଲନ—ଅତଗୁପ୍ତ । ବେନି ଅର୍ଥକୁ—ଦ୍ୱିବିଧ ଅର୍ଥକୁ ।
୩୨ ଶ ପଦ —ବାଣପଯ୍ୟଃ ପେଟୀ—ବାଣପଇଡ଼ । ପଯ୍ୟଃ—ଜଳ ।
୩୩ ଶ ପଦ —ବୃଷ୍ୟକାସ୍ତି—ବଳକର ।
୩୪ ଶ ପଦ —ଅମିକ୍ଷା—ଛେନା ।

---

୩୧ଶ ପଦ— "( ହର ହର ) ମହାଦେବଙ୍କ ଧୈର୍ଯ୍ୟ ଲୋପକାରୀ କନ୍ଦର୍ପ ମୋତେ ରକ୍ଷାକର" ଋଷି ଏହି ଦ୍ୱିତୀୟ ଅର୍ଥ ଗୁପ୍ତଭାବରେ ରହିଥିବା କଥା କହିବାରୁ, ବାମମୋହିନୀ ସେହି ଦ୍ୱିତୀୟ ଅର୍ଥକୁ ପ୍ରକୃତ ଅର୍ଥ ମନେକରି ତାହାଙ୍କର ମୁଖରେ ବାରମ୍ବାର ଚୁମ୍ବନ ପ୍ରଦାନ କଲେ । ( ପଣ୍ଡିତମାନେ ଗୁପ୍ତକଥା ଶ୍ଳେଷରେ କହିବାକୁ ଉପଦେଶ ଦେଇଅଛନ୍ତି ।

୩୨ଶ—୩୪ଶ ପଦ —ତତ୍ପରେ ବେଶ୍ୟାମାନେ ବଣଫଳ ବୋଲି କହି ଋଷିଙ୍କୁ ପାଚିଲା କଦଳୀ ଖାଇବାକୁ ଏବଂ ଅମ ଦେଶର ଜଳ ପାଣି ବୋଲି କହି ବାଣପଇଡ଼ ପାଣି ପିଇବାକୁ ଦେଇ କିଛିକ୍ଷଣ ପରେ ବଳକର ଓ କାମୋ-ଦୀପକ ଅଧାମ, ଛେନା ପ୍ରଭୃତି କାଢ଼ି ଋଷିଙ୍କୁ ଖାଇବା ନିମନ୍ତେ ଅନୁରୋଧ କରିବାରୁ, ଋଷି ସେମାନଙ୍କୁ ଜାତ ପଚାରିଲେ ।

୩୫ଶ ପଦ—ବେଶ୍ୟାମାନେ କହିଲେ, "ତୁମ୍ଭେ 'ବିପ୍ର' ବ୍ରାହ୍ମଣ; ଅମ୍ଭେମାନେ ବିପ୍ରଲବ୍‌ଧା ପ୍ରଭୃତି ଅଠପ୍ରକାର ନାୟିକା ଜାତରେ ପ୍ରଧାନ ଅଟୁଁ"।

ବାଲଭାଏ ବୋଲି ମୂଳ ଲୁଞ୍ଜି ସ୍ୱାଦ ପାଇ ।
ବଟୁ ! ତୁମ୍ଭ ତପ ଧନ୍ୟ ବୋଲି ପ୍ରଶଂସଇ ଯେ । ୩୬ ।
ବଟୁଂ ଯାହା ହୋଇଲ ପ୍ରମାଣ ଅନୁସ୍ୱାରେ ।
ବାତ୍ସ୍ୟାୟନଶାସ୍ତ୍ର ପଢ଼ା ଗୁରୁ ଅନ୍ତ ଦୂରେ ଯେ । ୩୭ ।
ବେଳାସ୍ତ ହେବାର ଜାଣି, ମେଲଣି ହେଲଟି ।
ବାର ମୁଖେ ଋଷି କହୁଁ, ଗଲେ ସେ ପାଛେଟି ଯେ । ୩୮ ।
ବାଟେ ରହ ରହ କହି ଗଲେ ବାରାଙ୍ଗନା ।
ବାହୁଡ଼ିବା ହେଉ ଆମ୍ଭେ କାଲି ଆସୁଁ ପିନା ଯେ । ୩୯ ।
ବହୁଳତେ ଆସିବାରେ କରାଇ ନିୟମ ।
ବାହୁଡ଼ିଲେ ଋଷ୍ୟଶୃଙ୍ଗ ଆପଣା ଆଶ୍ରମ ଯେ । ୪୦ ।
ବହିତ୍ରଉତ୍ତମ ନାବେ ପ୍ରବେଶ ନାଗରୀ ।
ବ୍ୟବସାୟ ଚର୍ଯ୍ୟ କହି ବ୍ୟବସ୍ଥିତ କରି ଯେ । ୪୧ ।

---

୩୭ଶ ପଦ —ବଟୁ—ବ୍ରାହ୍ମଣ । ବାତ୍ସ୍ୟାୟନଶାସ୍ତ୍ର—କାମଶାସ୍ତ୍ର ।

୪୧ଶ ପଦ— ବହିତ୍ରଉତ୍ତମ— ବୋଇତ ଭଳି ସୁନ୍ଦର । ବ୍ୟବସାୟ ଚର୍ଯ୍ୟ—ବ୍ୟବହାର ସମ୍ବନ୍ଧ ।

---

୩୬ଶ ପଦ—ବେଶ୍ୟାମାନେ ଏହିପରି କନ୍ଦ କନ୍ଦ ମୂଳ ସ୍ୱାଦ ପାଇ ସମସ୍ତ ଜିନିଷ ଖାଇବାରେ ଲଗିଲେ ଏବଂ ସେମାନଙ୍କୁ ସମ୍ବୋଧନ କରି କହିଲେ, "ହେ 'ବଟୁ' ବ୍ରାହ୍ମଣମାନେ ! ତୁମ୍ଭର ଜୀବନ ଧନ୍ୟ ଅଟେ ।"

୩୭ଶ ପଦ—ଋଷିଙ୍କର ଏହିପରି କଥା ଶୁଣି ବେଶ୍ୟାମାନେ କହିଲେ, "ଆମ୍ଭଙ୍କୁ 'ବଟୁ' ବୋଲି ଯାହା ସମ୍ବୋଧନ କଲ ତାହା ଅନୁସ୍ୱାର ଯୋଗ କଲେ ପ୍ରମାଣିତ ହେବ ( ଅର୍ଥାତ୍ ଆମ୍ଭେମାନେ ପୁରୁଷଙ୍କୁ 'ବଟୁଂ' ଠକୁ) । କାମଶାସ୍ତ୍ରରେ ନିପୁଣ ଆମ୍ଭମାନଙ୍କର ଗୁରୁ ଏହି ସ୍ଥାନରୁ ଦୂରରେ ଅଛନ୍ତି ।"

୩୮—୪୦ଶ ପଦ—ଏହି ସମୟରେ ସୂର୍ଯ୍ୟ ଅସ୍ତ ହେବାର ଜାଣି, ବେଶ୍ୟାମାନେ ବିଦାୟ ମାଗି ବାହାରିବାରୁ ଋଷି ସେମାନଙ୍କ ପଛେଟି ଗଲେ । ସେମାନେ ଋଷିଙ୍କୁ କହିଲେ, "ଆପଣ ଫେରିଯାନ୍ତୁ, ଆମ୍ଭେ କାଲି ଆସିବୁଁ ।" ଋଷି ସେମାନଙ୍କୁ ନିଶ୍ଚୟ ଆସିବାପାଇଁ ନିୟମ କରାଇ ଆଶ୍ରମକୁ ଫେରିଗଲେ ।

୪୧ଶ ପଦ—ବେଶ୍ୟାମାନେ ବୋଇତ ପରି ସୁନ୍ଦର ସେହି ନୌକାରେ ପ୍ରବେଶ କରି ଋଷିଙ୍କ ସହ ସେମାନଙ୍କର ଯାହା ଯାହା ଘଟିଥିଲା, ସେ ସମସ୍ତ ଭରତାକୁ କହିଲେ ।

ବିଭାଣ୍ଡକ ଆସି ପୁତ୍ରେ ଜାନୁରେ ବସାଇ ।
ବିଷାଣ-ଋଷ୍ୟ ଅଙ୍ଗରୁ ସୁବାସକୁ ପାଇ ଯେ । ୪୨ ।
ବଦତା ସକଳ କଥା, କୈତବେ ଭ୍ରମିତ ।
ବିଭାବରୀ-ଚରୀ ସେ ଭଣନ୍ତି ତପିସୁତ ଯେ । ୪୩ ।
ବ୍ୟବହାର କଲେ ନିଷ୍ଟେ ତାହାଙ୍କ ସଙ୍ଗରେ ।
ବାଳୁ ହେବୁ ଅଗ୍ନିପ୍ରୀତ ପତଙ୍ଗ ପ୍ରକାରେ ଯେ । ୪୪ ।
ବିରୋଧୋକ୍ତି ଜନକର ନ ଘେନିଲେ ଲବ ।
ବୁଝିଲେ ନେହ ସ୍ୱପନେ ଦେଖେ ସେହି ଭାବ ଯେ । ୪୫ ।
ବିଭାବରୀ ଅନ୍ତ ତାତ ତପସ୍ଥାନେ ଗତ ।
ବଣ କରିଥିଲେ ରମା ଛନ୍ନ ମୁନିସୁତ ଯେ । ୪୬ ।
ବିପ୍ରଲମ୍ଭ ଶୃଙ୍ଗାର ଯେ ଉଦାସ୍ତ ମାନସ ।
ବାଞ୍ଛି ପୁନଃ ପୁନଃ ରମା ଚୁମ୍ବନ ଆଶ୍ଳେଷ ଯେ । ୪୭ ।

---

୪୩ଶ ପଦ—କୈତବେ—କପଟରେ । ବିଭାବରୀଚରୀ—ରାକ୍ଷସୀ ।

୪୫ଶ ପଦ—ବିରୋଧୋକ୍ତି—ବିପରୀତ କଥା । ଜନକ—ପିତା । ଲବ—ଲେଶମାତ୍ର ।

୪୭ଶ ପଦ—ବିପ୍ରଲମ୍ଭ ଶୃଙ୍ଗାର—ମିଳିତ ହୋଇ ପାରି ନ ଥିବା ସ୍ତ୍ରୀ ପୁରୁଷମାନଙ୍କର ମିଳନ ଇଚ୍ଛା । ରମା—ସୁନ୍ଦରୀ ସ୍ତ୍ରୀ । ଆଶ୍ଳେଷ—ଆଲିଙ୍ଗନ ।

---

୪୨ଶ ପଦ—ବିଭାଣ୍ଡକ ଋଷି ତପସ୍ୟା ସ୍ଥାନରୁ ଫେରିଆସି 'ଋଷି-ବିଷାଣ' ଋଷ୍ୟଶୃଙ୍ଗଙ୍କୁ କୋଳରେ ବସାଇ ତାଙ୍କ ଦେହ ବାସୁଥିବାରୁ ତାହାର କାରଣ ପଚାରିଲେ ।

୪୩, ୪୪ଶ ପଦ—ଋଷ୍ୟଶୃଙ୍ଗ ସମସ୍ତ କଥା ତାଙ୍କ ଆଗରେ କହିବାରୁ ବିଭାଣ୍ଡକ କପଟରେ କହିଲେ, ''ସେମାନେ ରାକ୍ଷସୀ ଋଷିପିଲାମାନଙ୍କୁ ମାରି ଖାଆନ୍ତି । ସେମାନଙ୍କ ସହିତ ବ୍ୟବହାର କଲେ, ଅଗ୍ନିରେ ପତଙ୍ଗ ପରି ପଡି ମରିବୁ ।"

୪୫,୪୬ଶ ପଦ—ନିଜେ ଭଲ ମନେ କରି କରୁଥିବା କାର୍ଯ୍ୟର ଓଲଟା କଥା ଜନକ କହିବାରୁ, ସେ ସେକଥା କ୍ଷଣକପାଇଁ ସୁଦ୍ଧା ଭାବିଲେ ନାହିଁ । ଶୋଇଲା ବେଳେ ସେହିମାନଙ୍କୁହିଁ ସ୍ୱପ୍ନ ଦେଖିଲେ । ସକାଳୁ ଉଠି ଋଷି ତପସ୍ୟା ସ୍ଥାନକୁ ଚାଲିଯିବାରୁ ସ୍ତ୍ରୀ ବଣ ସେହି ଋଷିପୁତ୍ରଙ୍କର ମନ ଚଞ୍ଚଳ ହେବାକୁ ଲାଗିଲା ।

ଭାଳବାର ଅଣ୍ବେଷରେ ନ ଅସେ ଚୁଂକାର ।
ବନପ୍ରିୟ ତାଙ୍କୁ କଣ୍ଠ ଚୁମ୍ବଇ ସତ୍ବର ଯେ । ୪୮ ।
ବାହ ପ୍ରାପ୍ତ ଗତ କରି ପୁଣି ଲେଉଟଇ ।
ବାଳବର୍ଦ୍ଧ ଯଥା ଭଲୁ ଧେନୁକୁ ଇଚ୍ଛଇ ଯେ । ୪୯ ।
ବଳାଧିକ କରି ସେନା ଟିଙ୍କାରି ଟଙ୍କାର ।
ବାତାୟୁ ତାଳଘଣ୍ଟିରେ ଦଣ ପରକାର ଯେ । ୫୦ ।
ଛନ୍ଦିବା ଆରମ୍ଭି ଅଣ୍ଣ ମନୋଜ ପୁଳିନ୍ଦ ।
ବାତୁଳ ପ୍ରାୟ ଜନମ ହେଉଛି ଉନ୍ମାଦ ଯେ । ୫୧ ।
ବାଢ଼ିବାରୁ ବେଳୁଁ ବେଳ ପ୍ରେମନଦୀ ତହିଁ ।
ବୁଡ଼ୁ ନାହିଁ ଚେତା ବୃଣ ପରାୟ ଭାସଇ ଯେ । ୫୨ ।

---

୪୮ଶ ପଦ—ବନପ୍ରିୟ—କୋକିଳ ।
୪୯ଶତ୍ ପଦ—ବାହ—ଘୋଡ଼ା । ଧେନୁ—ଗାଈ ।
୫୦ଶତ୍ ପଦ—ବାତାୟୁ—ମୃଗ । ତାଳଘଣ୍ଟି—ତାମ୍ବ ଘଣ୍ଟି (ଟିପା) ।
୫୧ଶତ୍ ପଦ—ମନୋଜ ପୁଳିନ୍ଦ—କନ୍ଦର୍ପ ଶବର । ବାତୁଳ—ପାଗଳ ।
ଉନ୍ମାଦ—ଚିତ୍ତଭ୍ରମ ।

---

୪୮ଶ ପଦ ଋଷିଙ୍କ ମନରେ ବାରମ୍ବାର ଆଲିଙ୍ଗନର ଲୋଭ ବଢ଼ି ଉଠିବାରୁ ଚୁମ୍ବନ ଦେବା ସମୟରେ ଶବ୍ଦ ଉଚ୍ଚାରିତ ହେଲା ନାହିଁ । ସେ କୋକିଳର ରବ ଶୁଣି ସେମାନେ (ବେଶ୍ୟାମାନେ) ଭାବିଲେ କ ବୋଲି କାନ ଡେରୁଥିଲେ ।

୪୯ଶତ୍ ପଦ—ସେମାନେ ଯାଉଥିବା ରାସ୍ତାରେ ଋଷି ଘୋଡ଼ା ପରି କିଛି ଦୂର ଦୌଡ଼ି ଯାଇ ପୁଣି ଫେରି ଆସୁଥିଲେ ଏବଂ ବଳଦ ଋତୁମତୀ ଧେନୁକୁ ପାଇବା ଆଶାରେ ଇତସ୍ତତଃ ହେଲା ପରି ସେ ଏ ପାଖ ସେ ପାଖ ହେଉଥିଲେ ।

୫୦ଶତ୍ ପଦ—ମୃଗମାନେ ତାମ୍ବ ଘଣ୍ଟିର ଶବ୍ଦକୁ ମନ ଦେଇ ଶୁଣିଲା ପରି, ଋଷି ଟିଙ୍କାରି ଶବ୍ଦକୁ ସେମାନଙ୍କର ବଳାଧିକ ମନେ କରି ଅଗ୍ରହରେ ଶୁଣୁଥିଲେ ।

୫୧ଶତ୍ ପଦ—କନ୍ଦର୍ପଶବର ଋଷିଙ୍କୁ ପ୍ରତି ଶର ମାରିବାରୁ ଟିକି ଯାଳୋମାନଙ୍କ ପରି ତାହାଙ୍କର ଚିତ୍ତ ବିଭ୍ରମ ଘଟିଲା ।

୫୨ଶତ୍ ପଦ—ଫେଣୁ ଋଷିଙ୍କ ମନରେ ଥିବା ସେମାନଙ୍କ ପ୍ରତି ସ୍ନେହ ନଦୀରୂପ ଧାରଣ କରି କେବଳ ବଢ଼ିବାରୁ ତହିଁରେ ତାଙ୍କର ଚେତା ବୁଡ଼ି ନ ଯାଇ ଘାସ ପରି ଭାସି ଉଠିଲା (ଅର୍ଥାତ୍ ସେ କାମ ବାଧାରେ ଅଚେତନ ନ ହୋଇ ଚେତନ ଥିଲେ) ।

ବିଳମ୍ବ କାହିଁକ ବେଗେ ଆସ ବେଗେ ଆସ ।
ବେଳ ବଳିଗଲେ ମିଥ୍ୟା ହେଉଛୁଟି ଆଶ ଯେ । ୫୩ ।
ବୋଲି ବୋଲି ଆଶ୍ରମ ପ୍ରାନ୍ତକୁ ସେ ଯେ ଗଲେ ।
ବୃକ୍ଷାରୂଢ଼େ ଆସିବାର ପଥ ନିରେଖିଲେ ଯେ । ୫୪ ।
ବ୍ୟଥିତ ହେବାର ତପୋଧନ ପୁଣ୍ୟ ଆସି ।
ବରତନୁଂ ଦେଖନ୍ତି କୁଞ୍ଜୋଦରେ ପଶି ଯେ । ୫୫ ।
ବିସ୍ମୟ ଚିତ୍ତ ଚିନ୍ତିଲେ ଗୃହୀ ବଶହେବା ।
ବାରଣ ପରିରେ ତାଙ୍କୁ ଚୋପେ ପକାଇବା ଯେ । ୫୬ ।
ବୋଧିଦ୍ରୁମଦଳ ତୁଲ୍ୟ ତନୁ ଭୋଗ ଦେଇ ।
ବିକ୍ରୟ କରିବା ନୃପତିରେ ଧନ ପାଇ ଯେ । ୫୭ ।
ବାହାରିଲେ ପୁଣି ତରୁଣୀଏ ଲତା ମଧ୍ୟୁଁ ।
ବଳେଇ ପାଶେ ମିଳିଲେ ସେ ଅଜନ୍ମ ସାଧୁ ଯେ । ୫୮ ।

---

୫୫ଶତ୍ ପଦ—ବ୍ୟଥିତ—ଦୁଃଖିତ । କୁଞ୍ଜୋଦର—ଲତାଭ୍ୟନ୍ତର ।

୫୬ଶତ୍ ପଦ—ବିସ୍ମୟ—ଆଶ୍ଚର୍ଯ୍ୟ । ବଶ—ଅଧୀନ । ବାରଣ—ହସ୍ତୀ । ଚୋପ—ଖୋଲ ।

୫୭ଶତ୍ ପଦ—ବୋଧିଦ୍ରୁମଦଳ—ଅଶ୍ୱତ୍ଥ ପତ୍ର । ତନୁ—ଦେହ ।

---

୫୩ ଓ ୫୪ଶତ୍ ପଦ—(ଋଷି କାମଶରଘାତରେ ପାଗଳ ପରି ହୋଇଥିବାରୁ କେତେବେଳେ କହି ଉଠିଲେ, "ବିଳମ୍ବ କାହିଁକି କରୁଛ ? ଶୀଘ୍ର ଆସ; ବିଷ୍ଣୁବେଳ ଗଡି ଗଲେ ତୁମ୍ଭେମାନେ ମିଥ୍ୟାବାଦୀ ହେବ ଯେ ।" ଏହା କହି ଆଶ୍ରମର ଶେଷଭାଗକୁ ଯାଇ ଗଛ ଉପରେ ଚଢି ସେମାନଙ୍କର ଆସିବା ବାଟକୁ ଚାହିଁବାକୁ ଲାଗିଲେ ।

୫୫ଶତ୍ ପଦ—ଏହି ସମୟରେ ବେଶ୍ୟାମାନେ ଋଷିଙ୍କର ଧର୍ମବଳରୁ ଆସି ସେଠାରେ ପହଞ୍ଚିଲେ ଓ ଲତା ଉହାଡ଼ରେ ରହି ତାଙ୍କର ଦୁଃଖ ଦେଖିଲେ ।

୫୬ ଓ ୫୭ଶତ୍ ପଦ—ଋଷ୍ୟଶୃଙ୍ଗ ଏପରି ହେବାର ଦେଖି ବେଶ୍ୟାମାନେ ମନେ ମନେ ଆଶ୍ଚର୍ଯ୍ୟ ହୋଇ 'ଋଷି ଆମ୍ଭର ଅଧୀନ ହୋଇ ପଡ଼ିଛନ୍ତି' ବୋଲି ନିଶ୍ଚୟ କରି ବିଚାରିଲେ, 'ହାତୀକୁ ହାତୀଧରା ଖାଲରେ ପକାଇ ଅଶ୍ୱତ୍ଥପତ୍ର ଖାଇବାକୁ ଦେଇ ବାନ୍ଧି ନେଇ ବିକ୍ରୟ କଲାପରି ଆମ୍ଭେମାନେ ଏହାଙ୍କୁ ନୌକା ରୂପକ ଖାଲରେ ପକାଇ ଅଶ୍ୱତ୍ଥପତ୍ର ତୁଲ୍ୟ ଅମ୍ଭମାନଙ୍କର ଦେହକୁ ଭୋଗ କରାଇ ଦେଇ ଧନ ପାଇ ରାଜାଙ୍କୁ ବିକ୍ରୟ କରିଦେବା ।"

୫୮ ଓ ୫୯ତମ ପଦ—ଏହା କହି ଯୁବତୀମାନେ ଲତା ଉହାଡ଼ରୁ ବାହାରି ହେଲେ । ସେହି ଅଜନ୍ମବ୍ରହ୍ମଚାରୀ ଋଷ୍ୟଶୃଙ୍ଗ ତାହାଙ୍କୁ ଦେଖି ନିକଟକୁ

ବାହୁ ଛନ୍ଦାଛନ୍ଦ କାମମୋହନୀ ସଙ୍ଗର ।
ବଦାର ଅଧିରେ ଚୁମ୍ବେ ପୁଲକ ଅଙ୍ଗର ଯେ । ୫୯ ।
ବୋଇଲେ ଭାରତୀ ଗୁରୁ ଲୋଭିତ ଦର୍ଶନେ ।
ବଳେ କର ଥରେ ଉଟଜକୁ ବିଜେ ମନେ । ୬୦ ।
ବ୍ରହ୍ମବଶ ରତିଶାସ୍ତ୍ର ତାଠାରୁ ଜାଣିବ ।
ବହ୍ନେ ସମ୍ମତ କରି ଚଳିଲେ ସେ ଜବ ଯେ । ୬୧ ।
ବକ୍ରମି ନଉକାରେ ପ୍ରବେଶ ହେବା ଶୁଣି ।
ବାରି ଭରି ଝରି ପାଦ ଧୋଇ ଭୂମ୍ନୀ କହି ଯେ । ୬୨ ।
ବଲ୍କଳ ବୋଲି ପିନ୍ଧାଇ କୌଶେୟ ବସନ ।
ବ୍ୟାଘ୍ରଚର୍ମ ଭ୍ରମରେ ସିନ୍ଦୁଆ ଶଯ୍ୟାମାନ ଯେ । ୬୩ ।

---

୬୦ତମ ପଦ—ଉଟଜକୁ—କୁଟୀରକୁ ।
୬୧ତମ ପଦ—ବ୍ରହ୍ମବଶ—ରତିଶାସ୍ତ୍ର ଆନନ୍ଦଦାୟକ ରତିଶାସ୍ତ୍ର । ଜବ—ଶୀଘ୍ର ।
୬୨ତମ ପଦ —ବକ୍ରମି—ଯାଇ । ବାରି—ଜଳ । ଭୂମ୍ନୀ—ଇଷ୍ଟଭୂମ୍ବା ।
୬୩ତମ ପଦ—ବଲ୍କଳ—ଗଛର ବକଳ । କୌଶେୟ ବସନ—ପାଟ ଲୁଗା । ସିନ୍ଦୁଆ—ତୋରିଯୁକ୍ତ ।
୬୪ ତମ ପଦ—ଅଶନ—ଭୋଜନ । ପାଦପ—ବୃକ୍ଷ ।

---

ଅସିଲେ । ଉପୂରେ କାମମୋହିନୀ ସହିତ ବାହୁ ବନ୍ଧାଛନ୍ଦ କରି ତାହାଙ୍କୁ ଚୁମ୍ବନ ଦଅନ୍ତେ ଋଷିଙ୍କର ଦେହ ରୋମାଞ୍ଚିତ ହେଲା ।

୬୦ତମ ପଦ—ବେଶ୍ୟାମାନେ ଋଷିଙ୍କୁ କହିଲେ, 'ଆମ୍ଭମାନଙ୍କର ଗୁରୁ ଭରତୀ ଅପଣଙ୍କୁ ଦେଖିବା ନିମନ୍ତେ ଶ୍ରଦ୍ଧା ପ୍ରକାଶ କରୁଛନ୍ତି । ଆପଣ ଦୟାକରି ଥରେ ମାତ୍ର ଅମ୍ଭମାନଙ୍କର ବିଜେ କରନ୍ତୁ ।"

୬୧ତମ ପଦ—"ଆମ୍ଭମାନଙ୍କର ଗୁରୁଙ୍କଠାରୁ ମହାନନ୍ଦଦାୟକ ରତିଶାସ୍ତ୍ର ଶିକ୍ଷା କରିବେ ।" ଋଷି ତାହାଙ୍କର ଏହି କଥାରେ ଭୋଳ ହୋଇ ତାଙ୍କ କଥା ମାନି ତାଙ୍କ ସଙ୍ଗରେ ଗଲେ ।

୬୨ତମ ପଦ—ଋଷି ନୌକାରେ ପ୍ରବେଶ ହେବାର ଦେଖି ବେଶ୍ୟାମାନେ ଜଳପୂର୍ଣ୍ଣ ଝରି ଆଣି ତାହାଙ୍କର ପଦ ଧୋଇ ଦେଇ ସେହି ସ୍ଥାନକୁ ଦେଖାଇ କହିଲେ—'ଏ ଆମ୍ଭର ଇଷ୍ଟ ଭୂମ୍ବା ।"

୬୩,୬୪ ଓ ୬୫ତମ ପଦ—ଭରତୀ ଋଷିଙ୍କୁ ନମସ୍କାର କରି ବଲ୍କଳ ବୋଲି ପାଟଲୁଗା ପିନ୍ଧାଇ ଦେଲେ ଏବଂ ବାଘଚମ ବୋଲି କହି ସୁନ୍ଦର ତୋରିଆ

ବିବିଧ ସ୍ୱାଦୁ ପଦାର୍ଥ ଭକ୍ଷଇ ପଣ୍ଡନ ।
ବସାଇ ଚୂଳ କୁସୁମେ ଚନ୍ଦନ ଲେପନ ଯେ । ୬୪ ।
ବସିଲା ଓଳଗି ପାଶେ ଜରଠା ଧୂମୁଣ୍ଡୀଁ ।
ବେଷ୍ଟିତା ଲତା ପ ଦଣ୍ଡେ ପରି କୋଳ ବନ୍ଧୁ ଯେ । ୬୫ ।
ବଞ୍ଚା ସେ ପ୍ରଥମରସେ ଚନ୍ଦ୍ର ଚାଳ ଦେଲା ।
ବଞ୍ଚାନେ ଋଷି କୁମାର ଉତ୍ତାନେ ଶୋଇଲା ଯେ । ୬୬ ।
ବିଧୂନନ ଆରମ୍ଭିଲା ପୁରୁଷାୟିତରେ ।
ବନପତି ଉପରେ ହରିଣୀ ଲୀଳା କରେ ଯେ । ୬୭ ।
ବୈଶ୍ୱାନର ପରେ ନୃତ୍ୟ କରେ ଶୁଭାପାଙ୍ଗୀ ।
ବିଷମ ସମସ୍ୟାହିଁ ପୂରଣ ଶ୍ଳେଷଭଙ୍ଗୀ ଯେ । ୬୮ ।

---

୬୬ତମ ପଦ—ବଞ୍ଚା—ପଣ୍ଡିତା । ପ୍ରଥମରସ—ଆଦିରସ । ଚନ୍ଦ୍ରଚାଳନ—ତିଥି ଭେଦରେ ଦେହରେ ଅଂଶ ବିଶେଷକୁ ଚାଳନ କରି କାମୋଦ୍ଦୀପନ କରିବାର ଉପାୟ । ବଞ୍ଚନେ—ଅଚେତନ ହୋଇ । ଉତ୍ତାନେ—ଚିତ୍ ହୋଇ ।

୬୭ତମ ପଦ—ବିଧୂନନ—ରତି । ପୁରୁଷାୟିତ—ବିପରୀତ ରତି । ବନପତି—ସିଂହ, ହସ୍ତି, ବିଷ୍ଣୁ । ହରିଣୀ—ମୃଗୀ, ହରିଣାକ୍ଷୀ ( ଯେ କୌଣସି ସ୍ତ୍ରୀ )

୬୮ତମ ପଦ—ବୈଶ୍ୱାନର—ଅଗ୍ନି, ଯେ କୌଣସି ତେଜସ୍ୱୀ ପୁରୁଷ । ଶୁଭ୍ରାପାଙ୍ଗୀ—ମୟୂରୀ, ଯେ କୌଣସି ସ୍ତ୍ରୀ ।

---

ଶେଷରେ ବସାଇ ନାନାବିଧ ସ୍ୱାଦୁ ପଦାର୍ଥ ଖାଇବାକୁ ଦେଲା ଏବଂ ଚୂଡ଼ା ଦେହରେ ଫୁଲମାଳ ବାନ୍ଧି ଚନ୍ଦନ ବୋଳି ଦେଇ ଗଛ ଦେହରେ ଲତା ଚଢ଼ିଲା ପରି ତାହାଙ୍କ ବେକରେ ଦୁଇ ବାହୁକୁ ଛନ୍ଦି ଅର୍ଥାତ୍ କୋଳ କରି ବସିଲା ।

୬୬ତମ ପଦ—କେଳିପ୍ରବୀଣା ଜରଠା ଚନ୍ଦ୍ର ଚାଳିଦେବାରୁ, ଋଷି ମୋହିତ ହୋଇ ଚିତ୍ ଭାବରେ ଶୋଇଲେ ।

୬୭ଓ ୬୮ତମ ପଦ—ଜରଠା ବିପରୀତ ରତି ଆରମ୍ଭ କରି ଋଷିଙ୍କ ଉପରେ କ୍ରୀଡ଼ା କଲାବେଳେ, ବିଷ୍ଣୁଙ୍କ ଉପରେ ଲକ୍ଷ୍ମୀ କ୍ରୀଡ଼ା କଲାପରି, ସିଂହ ଉପରେ ମୃଗୀ କ୍ରୀଡ଼ା କଲା ପରି, ଅଗ୍ନିଙ୍କ ଉପରେ ସ୍ୱାହା ଦେବୀ କ୍ରୀଡ଼ା କଲା ପରି କିମ୍ବା ମୟୂରୀ ନୃତ୍ୟ କଲା ପରି ଦେଖା ଗଲା । ଏହି ଦୁଇ ପଦରେ କବି ଶ୍ଳେଷ ଛଳରେ ବିଷମ ସମସ୍ୟା ପୂରଣ କଲେ ।

ବସ୍ତୁଁ ଚେତା, ଭବେ ଅନନୁଭବୀ ଯୁବା ।
ବବୁଧାଳୟ ସୁଖ ସେ ସେହି ଏହୁ ଅବା ଯେ । ୬୯ ।
ବାଜଣୀ କଙ୍କିଣୀ ବାଦ୍ୟ ତାଳ ତାଳ ସ୍ୱନ ।
ବ୍ୟାଖ୍ୟାନ ଧ୍ୱନି ଶ୍ଳେଷ ସେ କରଇ ପ୍ରଧାନ ଯେ । ୭୦ ।
ବବୁଦ୍ଧ ହୃଦଇ ସେହି ସ୍ୱରନାମା ହୃଦେ ।
ବାଦେ ବେଣୀ ହାର ନାଚେ ନିଷ୍ଠୁର ସେ ବାଦ୍ୟେ ଯେ । ୭୧ ।
ବାହୁଲେ ସଲିଳରଥ କୈବର୍ତ୍ତେ ସେକାଳେ ।
ବାହୁକ ପ୍ରାୟେ ସେ ଦଣ୍ଡଧାରଣେ ଧଶିଲେ ଯେ । ୭୨ ।

---

୬୯ ତମ ପଦ—ଅନନୁଭବୀ—ଅଜ୍ଞ । ବବୁଧାଳୟ ସୁଖ—ସ୍ୱର୍ଗ ସୁଖ ।

୭୦ତମ ପଦ—କଙ୍କିଣୀ—କଟୀନିବଦ୍ଧ କ୍ଷୁଦ୍ର ଘଣ୍ଟି । ତାଳ—ହାତକୁ ହାତ ବାଜି ଉଠୁଥିବା ଶବ୍ଦ । ତାଳ ସ୍ୱନ—କରତାଳ ( ଗିନି ) ଶବ୍ଦ । ବ୍ୟାଖ୍ୟାନ ଧ୍ୱନି—କହୁଥିବା ଶବ୍ଦ ।

୭୧ ତମ ପଦ—ସ୍ୱରନାମା—କନ୍ଦର୍ପ ।

୭୨ତମ ପଦ—କୈବର୍ତ୍ତେ—କେଉଟମାନେ । ସଲିଳ ରଥ—ନୌକା, ଜଳଗାମୀ ରଥ । ବାହୁକ—ସାରଥି । ଦଣ୍ଡ—ବାଡ ।

---

୬୯ ଓ ୭୦ତମ ପଦ—ଯୁବକ ଉଷ ଚେତନା ପାଇ କେବେ ଅନୁଭବ କରି ନ ଥିବା ସେହି ରତିସୁଖକୁ 'ଏହାହିଁ ସ୍ୱର୍ଗ ସୁଖ' ବୋଲି ମନେ କଲେ ଏବଂ କଙ୍କିଣୀ ନାଦକୁ ବାଦ୍ୟ ଧ୍ୱନି, କର ତାଡ଼ନ ଶବ୍ଦକୁ କରତାଳି ଶବ୍ଦ ଓ ଜରତା ପ୍ରକାଶ କରୁଥିବା ହୁଁ ହୁଁ ଶବ୍ଦକୁ ସଙ୍ଗୀତ ଅବସ୍ଥାକାଳୀନ ତାନ ବୋଲି ମନେ କଲେ ।

୭୧ ତମ ପଦ—ଋଷିଙ୍କ ହୃଦୟରେ କନ୍ଦର୍ପ ବିକାର କେତେବେଳ ବୃଦ୍ଧି ପାଇଲା ଏବଂ କଙ୍କଣୀ ବାଦ୍ୟ ବାଜିବାକୁ ଜରତାର ବେଣୀ ଓ ହାର ଦୁହେଁ ବିବାଦ କରି ନାଚିଲେ । ( ଅର୍ଥାତ୍ ଜରତା ଗାଢ଼ ରତିରେ ମତ୍ତ ହେବାରୁ ବେଣୀ ଓ ହାର ଖୁବ ଜୋରରେ ଦୋହଲିଲେ )

୭୨ତମ ପଦ—କେଉଟମାନେ ସେହି ସମୟରେ ନୌକା ରଥ ବାହିବାକୁ ଲାଗିଲେ; ମାତ୍ର ଯେତେବେଳେ ସେମାନେ ବାଡ ହାତରେ ଧରିଲେ, ସେତେବେଳେ ସାରଥିପରି ଦେଖା ଗଲେ । ( ନୌକାକୁ ଜଗନ୍ନାଥଙ୍କ ରଥ ସହିତ ତୁଳନା କରି ଯାଇଛି, ଏଠାରେ ରଥଯାତ୍ରା ବର୍ଣ୍ଣନା କରୁଥିବାରୁ କେଉଟମାନଙ୍କୁ ଜଗନ୍ନାଥଙ୍କ ରଥର ଆଗ ବସି ରହିଥିବା ସାରଥି ପରି ବର୍ଣ୍ଣନା କଲେ ) ।

ଝାଟ ରଜ୍ଜୁ, ମୀନ କୂର୍ମ ଝିଙ୍କାଜନ ଯୋଗେ ।
ବେନରୋଧେ ମୃଗ ମୃଗୀ ନର ନାରୀ ଦେଖେ ଯେ । ୭୩ ।
ବସ୍ତ୍ରକୁଞ୍ଚା ଶୈବଳ ଚାମରେ ସେ ମଣ୍ଡନ ।
ବସ୍ତୁତ ରୂପକ ରଥଯାତ୍ରାର ସମାନ ଯେ । ୭୪ ।
ବାସର ନିଶା ହେବାର ଜଣା ନୋହେ ତହିଁ ।
ବାମା ଦ୍ୱାଦଶେ ଗଞ୍ଜନ୍ତି ରତିରସେ ମୋହି ଯେ । ୭୫ ।
ବେଲାରେ ଲାଗିଲା ନାବ ଚମ୍ପାବତୀ ପୁରେ ।
ବରଷିଲା ଝଡି ଝରଣାର ଲୋଉଡ଼ାରେ ଯେ । ୭୬ ।
ବହିଲା ପ୍ରବାହ , ପୂର୍ଣ୍ଣ କେଦାର ହୋଇଲେ ।
ଋଷ୍ୟଣ୍ଡବ ପୂର୍ବପାଶେ ଲୋମପାଦ ମିଳେ ଯେ । ୭୭ ।

---

୭୩ତମ ପଦ —ଝାଟ—ଲହରୀ । ରଜ୍ଜୁ—ଦଉଡି । ବେନରୋଧ—ଦୁଇପାଖ କୂଳ ।

୭୪ତମ ପଦ—ଶୈବଳ—ପତାକା ।

୭୬ତମ ପଦ—ବେଲା—କୂଳ ।

୭୭ତମ ପଦ—ପ୍ରବାହ—ସ୍ରୋତ । କେଦାର—କିଆରୀ ।

---

୭୩—୭୫ତମ ପଦ—ଜଗନ୍ନାଥଙ୍କ ରଥରେ ଦୌଡି ଲାଗିଥାଏ । ଏହି ରଥରେ ସେହିପରି ଲହରୀମାନେ ଦୌଡ଼ି ହୋଇ ଲାଗିଲେ । ତାଙ୍କ ରଥକୁ ଯେପରି ବହୁତ ଲୋକ ଟାଣୁଥାନ୍ତି, ସେହିପରି ଏହି ରଥକୁ ମାଛ ଓ କଇଁଛମାନେ ଟାଣିଲେ ଓ ତାଙ୍କ ରଥକୁ ଯେପରି ବହୁ ନର ନାରୀ ଦେଖୁଥାନ୍ତି, ଏହି ରଥକୁ ସେହିପରି ଉଭୟ କୂଳବର୍ତ୍ତୀ ମୃଗ, ମୃଗୀ, ନର, ନାରୀମାନେ ଦେଖିଲେ । ତାଙ୍କର ରଥ ଯେପରି ଚାମର ପ୍ରଭୃତିଦ୍ୱାରା ମଣ୍ଡିତ, ଏ ରଥ ସେହିପରି ଚାମର ମଣ୍ଡିତ ଅଟେ । ତାଙ୍କ ରଥଯାତ୍ରା ସମୟରେ ଦିନରାତି ଜଣାଯାଏ ନାହିଁ । ଏ ରଥଯାତ୍ରାରେ ମଧ୍ୟ ଜରତା ପ୍ରଭୃତି ବାରଜଣ ସ୍ତ୍ରୀ ରତି ରସରେ ମୋହିତ କରୁଥିବାରୁ ଦିନ, ରାତି ଜଣା ଯାଇ ନ ଥିଲା । (ସୁତରାଂ ଏ ନୌକାଯାତ୍ରା ସେ ରଥଯାତ୍ରାର ସମାନ)

୭୬, ୭୭ତମ ପଦ—ଚମ୍ପାବତୀ ପୁର ଘାଟରେ ନୌକା ଲାଗିଲା; ଋଷିଙ୍କର ଜଳ ଖୋଜିବାରୁ ବର୍ଷା ହେଲା । ଧାନ କିଆରୀସବୁ ପାଣିରେ ପୂର୍ଣ୍ଣ ହୋଇଗଲା; ବୃକ୍ଷଅଡ଼େ ସୁଅ ଚାଲିଲା । ଏହା ଦେଖି ଋଷ୍ୟଶୃଙ୍ଗ ଆସିଲେ ବୋଲି ଜାଣିପାରି ଲୋମପାଦ ରାଜା ଋଷିଙ୍କ ନିକଟକୁ ଅଗମନ କଲେ ।

ବିରଞ୍ଚିଲେ ଲକ୍ଷ ଗିରି ସଙ୍ଗେ ଋଷ୍ୟଶୃଙ୍ଗ ।
ବିଧାଇ ବଜ୍ର-ସୁହାସ ଯୋଗେ ଦମ୍ଭ ଭଙ୍ଗ ଯେ । ୭୮ ।
ବିଷୟ ବୁଝାଇ ଯୋଷା ମହାତପୋବନ୍ତେ ।
ବାହୁଁ କଲ୍ୟାଣ ବସାଇ ରାଜା ଦଣ୍ଡବତେ ଯେ । ୭୯ ।
ବିମଳ ଚିତ୍ତେ ମଣ୍ଡିଲେ ଯାଇ ତାର ପୁରୀ ।
ବରଦାତା ପୁତ୍ରଦାନେ ହୋମାରମ୍ଭ କରି ଯେ । ୮୦ ।
ବାଡବକଲ୍ୟାଣିଏ ଶୁଣି ଦଶରଥେ କହି ।
ବେଶ୍ୟା ଜରଠା-ପ୍ରମୁଖ୍ୟା ଜାଙ୍ଗଲିକା ହୋଇ ଯେ । ୮୧ ।
ବିବର ପର୍ଣ୍ଣକୁଟୀରେ ଥିଲେ ମୁନିନାଗ ।
ବଜାଇ ସପ୍ତକୀ ନାଗେଶ୍ୱର ବାଦ୍ୟ ବେଗ । ୮୨ ।
ବିଭେଦିତ-କୁତଚଞ୍ଚୁ ରସଗୀତ ଗାଇ ।
ବିଧୁଚୂର୍ଣ୍ଣ ମନ୍ମଥଧୂଳି ଫିଙ୍ଗାଇ ପକାଇ ଯେ । ୮୩ ।

---

୮୧ତମ ପଦ :—ବାଡବକଲ୍ୟାଣି—ବ୍ରାହ୍ମଣ । ପ୍ରମୁଖ୍ୟା —ଶ୍ରେଷ୍ଠା ଜାଙ୍ଗଲିକ — ବିଷବୈଦ୍ୟ ।

୮୨ ତମ ପଦ:—ବିବର—ଗର୍ତ୍ତ । ସପ୍ତକୀ—ବୀଣା ।

୮୩ତମ -ପଦ:— ବିଭେଦିତ କୁତ ଚଞ୍ଚୁ— ହୃଦୟକୁ ତରଳାଇ ବିଧୁଚୂର୍ଣ୍ଣ—କର୍ପୂରଗୁଣ୍ଡ ।

୮୪ତମ ପଦ:—ବାରବାମା—ବେଶ୍ୟା । ଭୋଗିନୀ —ସର୍ପିଣୀ' ସହବାସ-ଯୋଗ୍ୟା । ବିରତ—ବିଷଶୂନ୍ୟ, କ୍ରୋଧଶୂନ୍ୟ । ଭୋଗୀ- ଭୋଗଶାଳୀ, ସାପ ।

---

୭୮ତମ ପଦ :—ଲୋମପାଦ ଋଷ୍ୟଶୃଙ୍ଗଙ୍କୁ ଦେଖି ତାଙ୍କୁ ପର୍ବତ ସଙ୍ଗେ ତୁଳନା କଲେ । କାରଣ ପର୍ବତର ଯେପରି ଶୃଙ୍ଗ ଅଛି, ଏହାଙ୍କର ମଧ୍ୟ ସେହିପରି ଶୃଙ୍ଗ ଅଛି । ବଜ୍ରାଘାତ ପାଇ ପର୍ବତମାନେ ଦମ୍ଭ ହରାଇଥିଲେ, ଏ ମଧ୍ୟ ବେଶ୍ୟାମାନଙ୍କ ମନ୍ଦ ହାସରେ ଦମ୍ଭ ହରାଇ ଅଛନ୍ତି ।

୭୯, ୮୦ତମ ପଦ—ବେଶ୍ୟାମାନେ ସମସ୍ତ ବିଷୟ ଋଷିଙ୍କୁ ବୁଝାଇବା ବେଳେ ଲୋମପାଦ ତାହାଙ୍କୁ ପ୍ରଣାମ କଲେ । ଋଷି ତାହାଙ୍କୁ କଲ୍ୟାଣ କରି ନିକଟରେ ବସାଇଲେ । ତତ୍‌ପରେ ରାଜନଗରରେ ପ୍ରବେଶ ହୋଇ 'ତୁମ୍ଭର ପୁତ୍ର ପ୍ରାପ୍ତି ହେଉ' ଏହି ବର ଦାନ କଲେ ଓ ସେ ଉଦ୍ଦେଶ୍ୟରେ ପୁତ୍ରେଷ୍ଟି ଯଜ୍ଞ ଆରମ୍ଭ କଲେ ।

୮୧—୮୪ତମ ପଦ— ବ୍ରାହ୍ମଣମାନେ ଏହି କଥାଶୁଣି ଆସି ଦଶରଥଙ୍କୁ କହିଲେ, "ବେଶ୍ୟାଶ୍ରେଷ୍ଠା ଜରଠା ବିଷବୈଦ୍ୟ ଅର୍ଥାତ୍ ବେଳୁଣୀ ବା ଗୁଣିଆଣୀ ସାଜି ହୃଦଅଗର ରୂପ ଗାତରେଥିବା ମୁନିରୂପୀ ନାଗସାପକୁ ନାଗେଶ୍ୱର ରୂପ ବୀଣା ବାଦ୍ୟବଜାଇ, ଅଧରସରସ ଗୀତ ଗାଇବାଦ୍ୱାରା ତାହାଙ୍କର ଚିତ୍ତକୁ ତରଳାଇ ମନ୍ମଥଧୂଳି ରୂପ କର୍ପୂର ଗୁଣ୍ଡ ତାଙ୍କ ଉପରେ ବାରମ୍ବାର ପକାଇ

## ଚତୁର୍ଥ ଛାନ୍ଦ

ତାହାରକୁ ଆଣି ନାବ ପେଡ଼ାରେ ମୁଦିଲା ।
ବିଳାସ ବଶ କରଣ ପୁଣି ଖେଳାଇଲା ଯେ ।୮୪।
ତାରବାମା ତାର ଭୋଗିମାରେ ସେହୁ ଯୋଗୀ ।
ବିଗରିତ ଏଣିକି ସେ ବୋଲାଇବେ ଭୋଗୀ ଯେ ।୮୫।
ବହୁ ନାଗରେ ଈଶ୍ୱରପର ଚମ୍ପାପୁରେ ।
ବସନ୍ତ କୃପାକ୍ତ ହୋଇ କୁମାର ଦାନରେ ଯେ ।୮୬।
ବାର୍ତ୍ତା ଶୁଣି ତୋଷ ଭୂପ ହୋଇ ସୂର୍ଯ୍ୟବଂଶୀ ।
ବଳ ସଙ୍ଗ କରି ଚମ୍ପାପୁରେ ମିଳେ ଆସି ଯେ ।୮୭।
ତାହୁଁ ଲୋମପାଦ ନେଇ ଋଷିକି ଭେଟାଇ ।
ବିକଶିତହାସ କରି କଲ୍ୟାଣେ ବସାଇ ଯେ ।୮୮।

---

୮୬ତମ ପଦ—ନାଗରେ—ରସିକମାନେ । ଈଶ୍ୱର—ଶିବ । ଚମ୍ପାପୁରେ—ଚମ୍ପାଫୁଲରେ, ଚମ୍ପାବତୀ ପୁରରେ । କୃପାକ୍ତ—ଦୟାକ୍ତ । କୁମାର—କାର୍ତ୍ତିକେୟ, ପୁତ୍ର ।

---

ତାହାରକୁ ଆଣି, ନୌକାରୂପ ପେଡ଼ାରେ ବନ୍ଦୀ କରି ରଖିଲା ଏବଂ ତାଙ୍କୁ ନାନାବିଧ ରସ କ୍ରୀଡ଼ାରେ ବଶ କରି ଖେଳାଇଲା । ସେହୁ 'ଯୋଗୀ' ମୁନିନାଥ ସନ୍ନ୍ୟାସ ଯୋଗ୍ୟ ବାରଗୋଟି ବେଶ୍ୟାଙ୍କଦ୍ୱାରା 'ବିଗରିତ' ବିଷଶୂନ୍ୟ ଅର୍ଥାତ୍ କ୍ରୋଧଶୂନ୍ୟ ହେଲେ । ଏଣିକି ଭୋଗୀ ଅର୍ଥାତ୍ ଭୋଗଶାଳୀ ( ରସିକ ) ବୋଲାଇବେ ।

୮୬ତମ ପଦ—ରସିକ ଓ ଶିବ ଚମ୍ପାଫୁଲକୁ ଆଦର କଲା ପରି ଋଷି ଚମ୍ପାବତୀପୁରକୁ ଆଦର କରି, ସେହି ପୁରର ରାଜାଙ୍କୁ ପୁତ୍ରଦାନ ଦେବା ପାଇଁ ଶିବ କାର୍ତ୍ତିକେୟଙ୍କୁ ଦୟା କଲା ପରି ଦୟା ପ୍ରକାଶ କରିଛନ୍ତି ।

୮୭ତମ ପଦ—ଏହି କଥା ଶୁଣି ସୂର୍ଯ୍ୟବଂଶୀୟ ରାଜା ଦଶରଥ ସସୈନ୍ୟ ଚମ୍ପାବତୀପୁରରେ ପ୍ରବେଶ ହେଲେ ।

୮୮ତମ ପଦ—ଲୋମପାଦ ଦଶରଥଙ୍କୁ ତାଠାରୁ ନେଇ ଋଷିଙ୍କ ସହ ସାକ୍ଷାତ କରାଇ ଦେଲେ । ଋଷି ମନ୍ଦହାସ ପ୍ରକାଶ କରି ତାଙ୍କୁ ଆଶୀର୍ବାଦ ପୂର୍ବକ ନିକଟରେ ବସାଇଲେ ।

ବିପ୍ରୋତ୍ତମ ପୁଚ୍ଛେ ତବ ସର୍ବମଙ୍ଗଳ କି ?
ବୋଲେ ବିଜଲେ ପୁଚ୍ଛିଲ ସର୍ବଜ୍ଞ ତରକି ଯେ । ୮୯ ।
ବୃଥା ଜନମ୍ବ ବିନତ ହୋଇଣ ତଦର୍ଥୀ ।
କରଚୁପାଙ୍ଗୀକା ଅଛୁ କହିଦେଲ ଏଥି ଯେ । ୯୦ ।
ବରାଙ୍ଗନା ସୁନ୍ଦରୀରତନ ତବ ସୁତା ।
ବିବାହ କର ଯତୀନ୍ଦ୍ରେ ହେବେ ସୁତଦାତା ଯେ । ୯୧ ।
ବୀରବର ଉପେନ୍ଦ୍ର ଭଞ୍ଜ କହେ ରସ ।
କଲ୍ୟାଣୋଇ ପଦରେ ଏ ଛାନ୍ଦ ହେଲା ଶେଷ ଯେ । ୯୨ ।

---

୮୯ତମ ପଦ—ବିପ୍ରୋତ୍ତମ—ବ୍ରାହ୍ମଣଶ୍ରେଷ୍ଠ । ବିଜଲେ—ତର୍କ କରି । ସର୍ବଜ୍ଞତର—ସର୍ବଜ୍ଞଶ୍ରେଷ୍ଠ ।

୯୦ତମ ପଦ—ତଦର୍ଥୀ—ପୁତ୍ରାର୍ଥୀ । କରଚୁପାଙ୍ଗୀକା—ବେଶ୍ୟାଶ୍ରେଷ୍ଠା ।

୯୧ତମ ପଦ—ବରାଙ୍ଗନା—ସ୍ତ୍ରୀଶ୍ରେଷ୍ଠା । ଯତୀନ୍ଦ୍ର—ମୁନିଶ୍ରେଷ୍ଠ । ସୁତଦାତା—ପୁତ୍ରଦାତା ।

---

୮୯ତମ ପଦ—ବ୍ରାହ୍ମଣଶ୍ରେଷ୍ଠ ଋଷ୍ୟଶୃଙ୍ଗ ଦଶରଥଙ୍କୁ "ତୁମ୍ଭର ସମସ୍ତ ମଙ୍ଗଳ ତ ?" ବୋଲି ପଚାରିବାରୁ ସେ ତର୍କ କରି କହିଲେ, "ଆପଣ ସର୍ବଜ୍ଞଶ୍ରେଷ୍ଠ, ଏପରି କାହିଁକି ପଚାରୁଛନ୍ତି ?"

୯୦—୯୨ତମ ପଦ—ଦଶରଥ ପୁତ୍ରାର୍ଥୀ ହୋଇ ଆସି ଥିବାର ଜାଣି ଅତି ଦୁଃଖିତ ହେଲେ । ଏହି ସମୟରେ ବେଶ୍ୟାଶ୍ରେଷ୍ଠା ଜରତା ଦଶରଥଙ୍କୁ କହିଲା, "ଆପଣଙ୍କର ସୁନ୍ଦରୀଶିରୋମଣି ସ୍ତ୍ରୀ ଶ୍ରେଷ୍ଠା କନ୍ୟା ଶାନ୍ତାଙ୍କୁ ଏହି ପ୍ରଧାନ ଋଷିଙ୍କୁ ବିବାହ ଦିଅନ୍ତୁ । ସେ ଆପଣଙ୍କୁ ପୁତ୍ରପ୍ରାପ୍ତି ବର ପ୍ରଦାନ କରିବେ । ବୀରବର ଉପେନ୍ଦ୍ର ଭଞ୍ଜ କଲ୍ୟାଣୋଇ ପଦରେ ଏହି ରସପୂର୍ଣ୍ଣ ଛାନ୍ଦ ଶେଷ କଲେ ।

## ପ୍ରଥମ ଛାନ୍ଦ

### ରାଗ—ମଙ୍ଗଳଗୁଜ୍ଜରୀ

ବିଭାକରବଂଶୀ ଶୁଣି ପୁଲକ ବହି ।
ବିଭା କର ଲଗ୍ନ ବୁଝି ବଶିଷ୍ଠେ କହି । ୧ ।
ବିନ୍ୟାସ କଲେ ସେ ବାଣୀ ସନ୍ଧ୍ୟାବସାନେ ।
ବସାଇବା ମଣ୍ଡପରେ କନ୍ୟା ସୁମତେ । ୨ ।
ବିଜନ ସ୍ଥାନରେ ବସି ବେନି ନୃପତି ।
ବିବିଧ ସମ୍ଭାର କରି ନଗ୍ର ମଣ୍ଡନ୍ତି । ୩ ।
ବାସଙ୍ଗରସ ନବାନୁଭବୀ ଭ୍ରମର ।
ବାରିଜବାସ ଲଭି କି ନୋହେ ଆତୁର । ୪ ।
ବାରସ୍ତ୍ରୀଙ୍କି ପୁଚ୍ଛି ଏକାନ୍ତରେ ତା କାନ୍ତି ।
ବର୍ଣ୍ଣନ ଅର୍ଥେ କମେ ସେ ଶେଷ କଥିତ । ୫ ।

---

## ପ୍ରଥମ ଛାନ୍ଦ

୧ମ ପଦ—ସୂର୍ଯ୍ୟବଂଶୀୟ ରାଜା ଦଶରଥ ଭରତାଠାରୁ ଏହି କଥା ଶୁଣି ବଶିଷ୍ଠଙ୍କୁ କହିଲେ, "ଲଗ୍ନ ବୁଝି ବିଭା କରାଅ ।"

୨ୟ ପଦ—ଏହା ଶୁଣି ବଶିଷ୍ଠ କହିଲେ, "ସନ୍ଧ୍ୟାପରେ ଉତ୍ତମରୂପେ ବିଚାର କରି କନ୍ୟାଙ୍କୁ ବିବାହ ମଣ୍ଡପରେ ବସାଇବା ।"

୩ୟ—୫ମ ପଦ—ଦଶରଥ ଓ ଲୋମପାଦ ରାଜା ଦୁହେଁ ଏକାନ୍ତରେ ବସି ନଗରମଣ୍ଡନ କରାଇଲେ । ନୂଆ କରି ବାସଙ୍ଗ ଫୁଲରୁ ମଧୁ ଆସ୍ୱାଦନ କରୁଥିବା ଭ୍ରମର ପଦ୍ମଗନ୍ଧ ପାଇ ଆତୁର ହେଲା ପରି ଅର୍ଥାତ୍ ବେଶ୍ୟାରତ ଋଷି ରାଜକନ୍ୟା ରତିର ଆଶାରେ ଆତୁର ହୋଇ ବେଶ୍ୟା ଜରତାକୁ 'ତା କାନ୍ତି' ସେ କିପରି ସୁନ୍ଦରୀ ବୋଲି ପଚାରିଲେ । ସେ ବେଶ୍ୟା ଋଷିଙ୍କର ସ୍ନେହ ବଢ଼ାଇବା ପାଇଁ ଶାନ୍ତାଙ୍କର ସୌନ୍ଦର୍ଯ୍ୟ ବିଶେଷ ଭାବରେ ବର୍ଣ୍ଣନା କରିବାକୁ ଲାଗିଲା ।

ବିଳସ ପାଣ ପାଟଳୀ ସାରସ ପାଳି ।
ବାହୁ ଶ୍ରବଣ ଉଦର ଗଣ୍ଡରେ ଦଳି ।୬।
ବକ୍ଷୋଜ ନିତମ୍ବ ଚକ୍ରେ ପକାଇ ତଡ଼ା ।
ବିଭ୍ରମ ଭ୍ରମରେ ଲକ୍ଷ ନାଭି ଅଳକା ।୭।
ବିସ୍ତୀର୍ଣ୍ଣରେ ଶୋଭା ରମ୍ଭା ପ୍ରଭାକୁ ଗଞ୍ଜି ।
ବିଶାଳ ଊରୁଯୁଗଳ ଚରମ ସନ୍ଧି ।୮।

---

୬ଷ୍ଠ ପଦ—ସାରସ—ପଦ୍ମ । ପାଳି—ଖଣ୍ଡାର ମୂଠା । ଗଣ୍ଡ—ଗାଲ ।
୭ମ—ବକ୍ଷୋଜ—ସ୍ତନ । ଚକ୍ର—ଚକ୍ରବାକ, ରଥଚକ୍ର । ବିଭ୍ରମ—ଜଳଭଉଁରି । ଭ୍ରମରେ- ଭଅଁରସବୁ, ଭ୍ରାନ୍ତିରେ ।
୮ମ ପଦ—ବିସ୍ତୀର୍ଣ୍ଣରେ—ବିଶେଷ ଭାବରେ । ରମ୍ଭା—କଦଳୀବୃକ୍ଷ, ରମ୍ଭାନାମକ ସ୍ୱର୍ଗ ବେଶ୍ୟା । ପ୍ରଭା—କାନ୍ତି । ବିଶାଳ—ଉନ୍ନତ । ଊରୁଯୁଗଳ—ଜାନୁଦ୍ୱୟ । ଚରମସନ୍ଧି—ଜାନୁର ନିମ୍ନ ଅଂଶଗୁଡ଼ିକ ।

---

୬ଷ୍ଠ ପଦ—"ପାଣ, ପାଟଳି ଫୁଲ, ପଦ୍ମ, ଖଡ୍ଗପାଳି ଏମାନଙ୍କୁ ଶାନ୍ତାଙ୍କର ବାହୁ, ଶ୍ରବଣ, ଉଦର ଓ ଗଣ୍ଡ ଦେଶ ସହିତ ଗାଢ଼ଦୃଷ୍ଟି ଦେଇ ତୁଳନା କଲେ ଜଣାଯାଏ, ଉପର ଲିଖିତ ବସ୍ତୁମାନଙ୍କର ଶୋଭା ତଳ ଲିଖିତ ଅବୟବମାନଙ୍କର ଶୋଭାଦ୍ୱାରା ଦଳି ହୋଇ ଯାଇଅଛି ।"

୭ମ ପଦ—"ତାହାଙ୍କର ସ୍ତନସହିତ ଚକ୍ରବାକ ପକ୍ଷୀ ଓ ନିତମ୍ବସହିତ ରଥର ଚକ୍ର ସୌନ୍ଦର୍ଯ୍ୟରେ ସମାନ ନ ହେବାରୁ ତଡ଼ା ପକାଉଅଛନ୍ତି ଅର୍ଥାତ୍ ଚକ୍ରବାକ ପକ୍ଷୀ ଓ ଚକ୍ର (ଗମନ ସମୟରେ) କେଁ କେଁ ଶବ୍ଦ ପ୍ରକାଶ କରୁଅଛନ୍ତି ଏବଂ ତାହାଙ୍କର ନାଭିସହିତ ଜଳଭଉଁରି ଓ ଅଳକା ସହିତ ଭ୍ରମରମାନଙ୍କୁ ତୁଳନା କରିବା ତୁଳନାକାରୀର ଭ୍ରମ ମାତ୍ର ।"

୮ମ ପଦ—"ତାହାଙ୍କର ବିଶାଳ ଜାନୁଦ୍ୱୟ ବିଶେଷଭାବରେ କଦଳୀ ବୃକ୍ଷର ଶୋଭାକୁ ଗଞ୍ଜିଅଛି ଏବଂ ଜାନୁର ନିମ୍ନ ଅଂଶ ଜଙ୍ଘ ଓ ପାଦପ୍ରଭୃତି ରମ୍ଭାବେଶ୍ୟାର ସେହି ସେହି ଅଂଶର ଶୋଭାକୁ ଗଞ୍ଜିଅଛି ଅର୍ଥାତ୍ ଧିକ୍କାର କରୁଅଛି । ( କେହି କେହି 'ଚରମସନ୍ଧି' ପୃଷ୍ଠଦେଶ 'ଦୁଇକୁ' ଦୁର୍ଗାଙ୍କ ଶୋଭାକୁ ଧିକ୍କାର କରୁଅଛି, ଏହା କହନ୍ତି )

ବିଘଟିତ ହର ଓଷ୍ଠେ ପ୍ରାତୋଦୟରେ ।
ବିଶୀର୍ଣ୍ଣ କଟୀ ନାସିକା ମଧୁର ଗିରେ । ୯ ।
ବିଜିତ ଚନ୍ଦ୍ର ହାସେ ତନୁ ଶୀତଳେ ।
ବର୍ଣ୍ଣ ମୁଖପଦ୍ମ ରୋମାବଳୀର ତୁଲେ । ୧୦ ।
ବାଳଭ୍ରୂ ଲତା ଲୋଚନ ଗମନ ଗଳା ।
ବପୁ ସୁଗନ୍ଧେ ସାରଙ୍ଗେ ନୋହିବେ ତୁଲା । ୧୧ ।
ବିଧାତା ଶୋଭା ବିଧାନେ ଶାନ୍ତ ସେ ଶାନ୍ତା ।
ବୋଲି ମଜନ ହୋଇଲା ବାରବନିତା

---

୯ମ ପଦ—ବିଘଟିତ—ତୁଳିତ । ହର—ସୂର୍ଯ୍ୟ, ସିଂହ, ଶୁକପକ୍ଷୀ’ କୋକିଳ । ପ୍ରାତୋଦୟରେ—ଉଦୟ ହେଉଥିବା ସମୟରେ । ବିଶୀର୍ଣ୍ଣ—କ୍ଷୀଣ ;

୧୦ମ ପଦ—ଚନ୍ଦ୍ର—କର୍ପୂର, ଜଳ, ଚନ୍ଦ୍ରିକା, ସୁବର୍ଣ୍ଣ, ଚନ୍ଦନ, ଇନ୍ଦୁ ଓ ଅଳାଇଚ ।

୧୧ଶ ପଦ—ସାରଙ୍ଗ—ମେଘ, ଧନୁ; ଚକୋର, ହଂସ ବା ହସ୍ତୀ, ଶଙ୍ଖ ଓ ପଦ୍ମ ।

---

୯ମ ପଦ—“ତାହାଙ୍କର ଓଷ୍ଠସହ ଉଦୟକାଳୀନ ସୂର୍ଯ୍ୟ, କ୍ଷୀଣ କଟୀସହ ସିଂହକଟୀ, ନାସିକା ସହ ଶୁକ ଚଞ୍ଚୁ ଓ ମଧୁର ବଚନସହ କୋକିଳର ସ୍ୱର ତୁଳନୀୟ ନୁହେ ।”

୧୦ମ ପଦ—“ତାହାଙ୍କର ହାସ ସହ ଚନ୍ଦ୍ରିକା, ଶରୀରର ଶୀତଳତ ସହ କର୍ପୂର, ଜଳ କିମ୍ବା ଚନ୍ଦନ, ବର୍ଣ୍ଣସହ ସୁବର୍ଣ୍ଣ, ମୁଖସହ ଚନ୍ଦ୍ର ଏବଂ ରୋମରାଜିସହ ଅଳେଇଚଲତା ତୁଳନୀୟ ନୁହେ ।”

୧୧ଶ ପଦ—“ତାହାଙ୍କର କେଶଗୁଚ୍ଛସହ ମେଘ, ଭ୍ରୂଲତାସହ ଧନୁ, ଚକ୍ଷୁସହ ଚକୋର, ଗତିସହ ହସ୍ତୀ, କଣ୍ଠସହ ଶଙ୍ଖ ଓ ଦେହର ଗନ୍ଧସହ ପଦ୍ମ ତୁଳନୀୟ ନୁହନ୍ତି ।”

୧୨ଶ ପଦ—‘ବିଧାତା ଏହାଙ୍କର ଶୋଭା ରଚନା କରି ଶାନ୍ତ ହେବାରୁ ଅର୍ଥାତ୍ ବିଧାତାର ସୁନ୍ଦରୀ ନିର୍ମାଣ ଇଚ୍ଛା ଏହଠାରୁ ଶାନ୍ତି ଲାଭ କରିବାରୁ ଏହାଙ୍କ ନାମ ଶାନ୍ତା ହୋଇଅଛି ।’ ଏତନ୍ମାତ୍ର କହି ବେଶ୍ୟା ମଜନ ହେଲ ।

ବିଧୁନ୍ତୁଦପ୍ରାୟ ହୋଇ ସନ୍ଧ୍ୟା ଆସିଲା ।
ବିବସ୍ୱାନ ଗ୍ରାସୀ ରଙ୍ଗଭାବ ଦର୍ଶିଲା । ୧୩ ।
ବାଳୀ ସେ କାଳୀ ପିଧାନୀ କି ପାଟଶାଢ଼ୀ ।
ବହିଲେ କି ସରସ୍ୱତୀ କାଳିନ୍ଦୀ ଜଡ଼ି । ୧୪ ।
ବନଜାରିକର ରକ୍ତ ଆସିଲା ଧଣି ।
ବାରୁଣୀ ତ୍ରିବେଣୀ ଘାଟେ ପଡ଼ିଲା ସେଷି । ୧୫ ।
ବିସ୍ତାରି ପକ୍ଷେ ଦିବାନ୍ଧ ପ୍ରମୁଖ ଦ୍ୱିଜେ ।
ଭଣାଷୀ ଶ୍ଳୋକ ବାଣୀକି ବିହାରେ ମଜ୍ଜେ । ୧୬ ।

---

୧୩ ପଦ—ବିଧୁନ୍ତୁଦପ୍ରାୟ—ରାହୁପରି । ବିବସ୍ୱାନଗ୍ରାସୀ— ସୂର୍ଯ୍ୟଙ୍କୁ ଗ୍ରାସ କରି ।

୧୪ଶ ପଦ—ବାଳୀ—ସ୍ତ୍ରୀ । ପିଧାନୀ—ପିନ୍ଧି ।

୧୫ଶ ପଦ—ବନଜାରିକର—ଚନ୍ଦ୍ରକିରଣ । ବାରୁଣୀ—ପ୍ରସିଦ୍ଧ ସ୍ନାନ ଯୋଗ । ତ୍ରିବେଣୀଘାଟ—ଗଙ୍ଗା, ଯମୁନା, ସରସ୍ୱତୀର ସଙ୍ଗମ ସ୍ଥଳ ।

୧୬ଶ ପଦ—ଦିବାନ୍ଧ ପ୍ରମୁଖ ଦ୍ୱିଜେ—ନିଶିଚର ପକ୍ଷୀମାନେ । ଅନ୍ୟପକ୍ଷରେ, ପ୍ରମୁଖ ଦ୍ୱିଜେ—ଶ୍ରେଷ୍ଠ ବ୍ରାହ୍ମଣମାନେ । ବିହାର—କ୍ରୀଡ଼ା ।

---

୧୩ଶ ପଦ—ଅନନ୍ତର ସନ୍ଧ୍ୟାକାଳ ରାହୁପରି ମାଡ଼ି ଆସି ସୂର୍ଯ୍ୟଙ୍କୁ ଘୋଡ଼ାଇ ପକାଇଲା ଏବଂ ଲାଲବର୍ଣ୍ଣ ଦେଖାଗଲା ।

୧୪ଶ ପଦ—ସଙ୍ଗେ ସଙ୍ଗେ ଅନ୍ଧକାର ମାଡ଼ିଆସିବାରୁ ବୋଧହୁଏ, ସେହି ସନ୍ଧ୍ୟାରମଣୀ କଳା ଶାଢ଼ୀ ପିନ୍ଧିଛି କି ? ଅଥବା ସରସ୍ୱତୀ ନଦୀ ଯମୁନା ସହିତ ମିଶି ବହିଲା କି ? ( କାରଣ ସରସ୍ୱତୀ ଜଳ ଶୁକ୍ଳ ଓ ଯମୁନାର ଜଳ କୃଷ୍ଣ ଅଟେ ) ।

୧୫ଶ ପଦ—ଏହି ସମୟରେ ଚନ୍ଦ୍ର ଉଦୟ ହେବାରୁ ତାହାଙ୍କର ଉଦୟ କାଳୀନ ଆରକ୍ତ କିରଣ ସେହି ସନ୍ଧ୍ୟାକାଳୀନ ଶୋଭାରେ ମିଶିଗଲା । ତାହା ଦେଖି ମନେ ହେଲା, ତ୍ରିବେଣୀ ଘାଟରେ ବାରୁଣୀ ସ୍ନାନ ଯୋଗ ପଡ଼ିଲା କି ?

୧୬ଶ ପଦ—ବ୍ରାହ୍ମଣମାନେ ତ୍ରିବେଣୀ ଘାଟରେ ଗଙ୍ଗା ସ୍ତୋତ୍ର ପାଠ କରି ଜଳରେ ମଗ୍ନ ହେଲା ପରି, ଦିନରେ ଅନ୍ଧ ହୋଇ ରହିଥିବା ପେଚା ଅନ୍ୟ ନିଶିଚର ପକ୍ଷୀମାନଙ୍କର ନେତା ହୋଇ ପକ୍ଷ ବିସ୍ତାର ପୂର୍ବକ ଚତୁର୍ଦ୍ଦିଗରେ ବୁଲି କ୍ରୀଡ଼ା କରିବାକୁ ଲାଗିଲେ ।

ବନ୍ଧଘୋଷ ଆଦି ବାଦ୍ୟ ବାଜେ ଏକାଳେ ।
ବର କନ୍ୟା ଋଷ୍ୟଶୃଙ୍ଗ ଶାନ୍ତାଙ୍କୁ ବଲେ । ୧୭ ।
ଦାନ ତୋଳା ଦେଲେ ଶଙ୍ଖେ ଶଙ୍ଖେ ରତନ ।
ବତ୍ସାସହ ଧେନୁ କଉଶେୟ ବସନ । ୧୮ ।
କନକାସନ ସାବିତ୍ରୀ ପ୍ରାୟ ଦିଶିଲେ ।
ବିନୋଦେ ସର୍ବସ୍ୱରେ ଏକାନ୍ତେ ରସିଲେ । ୧୯ ।
ବାହୁଲେୟ ପ୍ରାୟେ ହେଲା ପ୍ରାତ ଉତ୍ପତ୍ତି ।
ଦେବାଙ୍କ ତାରକା-ସୁର ପ୍ରମୋଦ ଅତି । ୨୦ ।
ଦେବାଙ୍କ ଉଜ୍ଜ୍ୱଳ ଶକ୍ତି ମନ୍ତ୍ରରେ ସେହି ।
ବିହାଗ୍ନି ହୋଇ କ୍ରମଶେ ଷଷ୍ଠୀରେ ସ୍ନେହୀ । ୨୧ ।

---

୧୭ଶ ପଦ—ବନ୍ଧଘୋଷ—ଢକା ଢୋଲ ବାଦ୍ୟ ବିଶେଷ ।

୧୮ଶ ପଦ—ଶଙ୍ଖେ—ଏକଶଙ୍ଖ ପରିମିତ । କୌଶେୟ-ବସନ—ପଟ୍ଟବସ୍ତ୍ର ।

୧୯ଶ ପଦ—କନକାସନ—ବ୍ରହ୍ମା । ବିନୋଦେ—ଆନନ୍ଦରେ ।

୨୦ଶ ପଦ—ବାହୁଲେୟ—କାର୍ତ୍ତିକେଶ୍ୱର । ତାରକା—ତାରା, ତାରକାସୁର । ସୁର—ସୂର୍ଯ୍ୟ ।

୨୧ଶ ପଦ—ଶକ୍ତିମନ୍ତ୍ର—ଅତି ପରାକ୍ରମୀ, ଶକ୍ତିଧାରୀ । ଷଷ୍ଠୀ—ଦୁର୍ଗା ।

---

୧୭ଶ ଓ ୧୮ଶ ପଦ—ଏହି ସମୟରେ ବନ୍ଧଘୋଷ ପ୍ରଭୃତି ବାଦ୍ୟ ବାଜିଲା । ଋଷ୍ୟଶୃଙ୍ଗ ଓ ଶାନ୍ତାଙ୍କୁ ବିବାହ ବେଶରେ ସଜ୍ଜିତ କରି ମଣ୍ଡପ ଉପରକୁ ନେଇ, ହସ୍ତଗଣ୍ଠି ପଡ଼ିବା ପରେ ଦଶରଥ ଶଙ୍ଖରେ ପାଣି ଟେକି ଦେଇ ଏକ ଶଙ୍ଖ ରତ୍ନ, ସବତ୍ସା ଧେନୁ ଓ ପାଟ ଯୋଡ଼ି ପ୍ରଭୃତି ଯଉତୁକ ଦେଲେ ।

୧୯ଶ ପଦ—ଋଷି ଓ ଶାନ୍ତା ବ୍ରହ୍ମା ସାବିତ୍ରୀଙ୍କ ପରି ଦେଖା ଗଲେ; ଅନନ୍ତର ସ୍ୱର୍ଗରେ ଏକାନ୍ତରେ ଶୃଙ୍ଗାର ରସରେ ମଜ୍ଜିଲେ ।

୨୦ଶ ପଦ—ତତ୍ପରେ କାର୍ତ୍ତିକେୟ ଜନ୍ମ ହୋଇ ତାରକାସୁରକୁ ମାରି ଦେବତାମାନଙ୍କୁ ଆନନ୍ଦ ଦେଲା ପରି ପ୍ରଭାତ ଉପସ୍ଥିତ ହୋଇ ତାରାମାନଙ୍କୁ ଲୁପ୍ତପୂର୍ବକ ସୂର୍ଯ୍ୟଙ୍କୁ ପ୍ରକାଶିତ କରିବାରୁ ଜଗତରେ ଅତିଶୟ ଆନନ୍ଦ ଖେଳି ଉଠିଲା ।

୨୧ଶ ପଦ—ଯେପରି କାର୍ତ୍ତିକେୟ ଅତି ଉଜ୍ଜ୍ୱଳ ଶକ୍ତି ନାମକ ଅସ୍ତ୍ର ଧାରଣ କରି ଅଥବା ଅତିଶୟ ଶକ୍ତିଶାଳୀ ହୋଇ ବିହାର କରି କ୍ରମେ ଦୁର୍ଗାଙ୍କଠାରେ ଅନୁରକ୍ତ ହୋଇଥିଲେ, ସେହିପରି ପ୍ରଭାତ ଉଜ୍ଜ୍ୱଳ ସୂର୍ଯ୍ୟ କିରଣ ବିସ୍ତାର ପୂର୍ବକ କ୍ରମେ କ୍ରମେ ଜଗତକୁ ଆଲୋକିତ କଲା ଏବଂ ଷାଠିଏ ଦଣ୍ଡ ପର୍ଯ୍ୟନ୍ତ ରହିଲା ।

ତାରକରେ ଖ୍ୟାତ ଶିବପୁରେ ଉତ୍ସବେ ।
ତାଡନ ଯେ ଶଙ୍ଖମାଳି-ଗଣହିଁ ସ୍ୱବେ ।୨୨।
ଭଗତ ନିଦ୍ରା ଏକାଳେ ଦଶରଥର ।
ବସାଇ ଜାମାତା ଘେନିଗଲେ ରଥର ।୨୩।
ବପ୍ର ଲଙ୍ଘି ପରବେଶ ଅଯୋଧ୍ୟା ଦୁର୍ଗେ ।
ବ୍ରତ ଆଚରଇ ତହୁଁ ମହର୍ଷୀବର୍ଗେ ।୨୪।
ବୀତହୋତ୍ର ସ୍ଥାପି ଯଜ୍ଞକୁଣ୍ଡେ ସତ୍ୱରେ ।
ବ୍ରହ୍ମବେତ୍ତା ହୋମ କଲେ ପୁତ୍ର ଅର୍ଥରେ ।୨୫।
ବ୍ୟାପି ତହୁଁ ଧୂମାବଳି ଊର୍ଦ୍ଧ୍ୱେ ଚପଲେ ।
ବିୟତରେ ଜଳଧର ପ୍ରାୟ ଦିଶିଲେ ।୨୬।

---

୨୨ଶ ପଦ—ତାରକରେ—ତାରଗୋଟି ଜାତରେ, କୌଣସି ଗୋଟିଏ ତାରରେ । ଶିବପୁର—କୈଳାସ । ଶଙ୍ଖମାଳୀ—ଶଙ୍ଖ ସମୂହ । ଗଣ—ଶିବଗଣ ।
୨୪ଶ ପଦ—ବପ୍ର—ଗଡପ୍ରାଚୀର ।
୨୫ଶ ପଦ—ବିତିହୋତ୍ର—ଅଗ୍ନି ।
୨୬ଶ ପଦ—ବିୟତରେ—ଆକାଶରେ ।

---

୨୨—ତାରକେ ଯେଉଁ ତାରଗୋଟି ହସ୍ତ ଧାରଣ କରି ଯେତେବେଳେ ଜନ୍ମ ହେଲେ, ସେହି ସମୟରେ କୈଳାସରେ ଉତ୍ସବ ହୋଇଥିଲା, ଶିବଗଣମାନେ ଅନେକ ଶଙ୍ଖ ବଜାଇଥିଲେ; ସେହିପରି ପ୍ରଭାତ ରବି, ସୋମ ପ୍ରଭୃତି କୌଣସି ଏକ ତାରରେ ଖ୍ୟାତ ହେଲା ଏବଂ ସେହି ସମୟରେ ମାଳୀମାନେ ନିଜ ମନ୍ଦିରରେ ଶଙ୍ଖ ବଜାଇଲେ ।

୨୩ଶ ପଦ—ଏହି ସମୟରେ ଦଶରଥଙ୍କ ନିଦ୍ରା ଭାଙ୍ଗିଲା । ସେ ଜାମାତାଙ୍କୁ ରଥରେ ବସାଇ ନେଇଗଲେ ।

୨୪ଶ-୨୬ଶ ପଦ—ଅଳ୍ପକ୍ଷଣପରେ ସେମାନେ ଗଡର ପାଚେରି ଲଙ୍ଘି ଅଯୋଧ୍ୟା ଦୁର୍ଗରେ ପ୍ରବେଶ ହେଲେ । ବ୍ରହ୍ମଜ୍ଞାନୀ ଋଷି ଗୁଣୀମାନଙ୍କୁ ବ୍ରତ କରାଇ ପୁତ୍ରେଷ୍ଟି ଯଜ୍ଞ ନିମନ୍ତେ ହୋମକୁଣ୍ଡରେ ଅଗ୍ନି ସ୍ଥାପନ କଲେ । ହଠାତ୍ ହୋମକୁଣ୍ଡରୁ ଉପରକୁ ଧୂଆଁ ଉଠି ଆକାଶରେ ବ୍ୟାପିଯିବାରୁ ତାହା ମେଘପରି ଦେଖାଗଲା ।

ବିଜୁଳି ଲକ୍ଷ ବଡ଼ଭି ରଙ୍ଗକେତନ ।
ଚରନ୍ଧ ଟେକି ଅନାଇ କେକୀ ନର୍ତ୍ତିନ । ୨୭ ।
ବଥିରଶତ୍ରୁ ତୃଷାର୍ତ୍ତୀ ଯେତେକ ସାରଙ୍ଗ ।
ବୀଥୀ ବୀଥୀ ହୋଇ ନଚଲେ ନବଟେ ରଙ୍ଗ । ୨୮ ।
ବାୟୁନାଏ ଦୁନ୍ଦୁଭି ଦଅନ୍ତି ହରଷେ ।
ଘନନାଦ ସ୍ତନିତ କି ପ୍ରତେ ମାନସେ । ୨୯ ।
ଅନେକ ମଧୁସ୍ୱ ଭେରୀ ଦାତ୍ୟୂହ ଭଙ୍କ ।
ବର୍ଷାଭୂ ଝମକ ଯନ୍ତ୍ର ଉଇନାଦକ । ୩୦ ।
ବଳାକାପ୍ରକାର ନଭେ ଚିହ୍ନକମାନ ।
ବଣେ ଉଡୁଚନ୍ତି ହୋଇ ଅତି ରଞ୍ଜିନ । ୩୧ ।

---

୨୭ଶ ପଦ—ବଡ଼ଭି—ପ୍ରାସାଦ । ରଙ୍ଗକେତନ—ଲାଲପତାକା । ଚରନ୍ଧ—ପୁଚ୍ଛ । କେକୀ—ମୟୂର ।

୨୮ଶ ପଦ—ବଥିରଶତ୍ରୁ—ଅସ୍ଥିର ହୃଦୟ । ସାରଙ୍ଗ—ଚାତକ । ବୀଥୀ ବୀଥୀ ହୋଇ—ଦଳ ଦଳ ହୋଇ ।

୨୯ଶ ପଦ—ବାୟୁନାଏ—ବାଦକମାନେ । ସ୍ତନିତ—ଘଡଘଡି ଶବ୍ଦ ।

୩୦ଶ ପଦ—ଦାତ୍ୟୂହ—ଡାହୁକ । ବର୍ଷାଭୂ—ବେଙ୍ଗ ।

୩୧ଶ ପଦ—ବଳାକା ପ୍ରକାର—ବକଶ୍ରେଣୀ ପରି । ଚିହ୍ନ—ପତାକା ।

---

୨୭ଶ ପଦ—ରାଜାଙ୍କର କୋଠା ଉପରେ ଉଡୁଥିବା ଲାଲ ପତାକାକୁ ବିଜୁଳି ମନେ କରି ମୟୂରମାନେ ପୁଚ୍ଛ ଟେକି ନୃତ୍ୟ କଲେ ।

୨୮ଶ ପଦ—ତୃଷାର୍ତ୍ତ ଅସ୍ଥିର ହୃଦୟ ଚାତକମାନେ ଦଳ ଦଳ ହୋଇ ଅଛି (ସେହି ମେଘକୁ ଦେଖି) ଆନନ୍ଦରେ ନୃତ୍ୟ କଲେ ।

୨୯ଶ ପଦ—ବାଦକମାନେ ଏହି ସମୟରେ ଆନନ୍ଦରେ ଦୁନ୍ଦୁଭି ବଜାଇଲେ । ସେହି ଧ୍ୱନି ମେଘର ଘଡ ଘଡି ଧ୍ୱନି ବୋଲି ମନେ ହେଲା ।

୩୦ଶ ପଦ—ମହୁରୀ ଓ ଭେରୀର ସ୍ୱର ଡାହୁକ ଓ ଭଙ୍କପକ୍ଷୀର ସ୍ୱର ପରି ଏବଂ ଅନ୍ୟ ଉଇ ଝମକ ଧ୍ୱନି ବେଙ୍ଗ ରଡିପରି ପ୍ରତୀତ ହେଲା ।

୩୧ଶ ପଦ—ଆକାଶର ଅନ୍ତରୀକ୍ଷରେ ଫର ଫର ହୋଇ ଉଡୁଥିବା ଅତି ଶୁକ୍ଳ ପତାକାଗୁଡିକ ବକପଙ୍କ୍ତି ପରି ଦେଖାଗଲେ ।

ବରଷିବେ କୃପାଜଳ ହୃଦୟେ ହରି ।
ବହ୍ନିକୁଣ୍ଡ ନଭ ଅବଲମ୍ବନ କରି । ୩୨ ।
ବଶିଷ୍ଠାଦି ଋଷ୍ୟଶୃଙ୍ଗ ସେଠାରେ ଥିଲେ ।
ବିହୀନ ନିମିଷ ନୟେ ସେମାନେ ନମିଲେ । ୩୩ ।
ବରୁଣାଳୟ କରୁଣାକର ବୋଇଲେ ।
ବାରିଜ କମ୍ବୁ ଚକ୍ର ଗଦାରେ ମଞ୍ଜୁଳେ । ୩୪ ।
ବଧର କର ମକର ଲକ୍ଷଣମାନ ।
ବୁଡ଼ାନ୍ତ ମହତୀଯୋଗେ ନୟନ-ମୀନ । ୩୫ ।

---

୩୨ ପଦ—ହରି ଇନ୍ଦ୍ର, ବିଷ୍ଣୁ । ଅବଲମ୍ବନ—ଆଶ୍ରୟ ।

୩୩ଶ ପଦ—ବିହୀନ ନିମିଷ—ଅପଲକ ଚକ୍ଷୁ ।

୩୪ଶ ପଦ—ବରୁଣାଳୟ—ସମୁଦ୍ର । କରୁଣାକର—ଦୟା ସମୁଦ୍ର । କମ୍ବୁ—ଶଙ୍ଖ । ଚକ୍ର—ଚକ୍ରବାକ ପକ୍ଷୀ, ଜଳଭଉଁରି, ଅସ୍ତ୍ର ବିଶେଷ । ଗଦା—ଅସ୍ତ୍ର ବିଶେଷ, ସମୂହ । ଅବ୍ଜ—ପଦ୍ମ, ଚନ୍ଦ୍ର ।

୩୫ଶ ପଦ—ମହତୀ—ବଡ଼; ମହତୀ ନାମକ ଯୋଗ । ଲକ୍ଷଣମାନ—ଲକ୍ଷ ଲକ୍ଷ ପଦ୍ମଚିହ୍ନ, ଚିହ୍ନମାନ । କର—ହସ୍ତ ।

---

୩୨ଶ ପଦ—ମେଘ ଉଦୟ ହେଲେ ଇନ୍ଦ୍ର ଯେପରି ତାହାକୁ ଆଶ୍ରୟ କରି ବର୍ଷା କରନ୍ତି, ସେହିପରି ବିଷ୍ଣୁ ଅଗ୍ନିକୁଣ୍ଡ ରୂପକ ମେଘକୁ ଆଶ୍ରୟ କରି କୃପା ରୂପ ଜଳବର୍ଷଣ କରିବେ ।

୩୩ଶ ପଦ—ହୋମକୁଣ୍ଡ ନିକଟରେ ଥିବା ବଶିଷ୍ଠ, ଋଷ୍ୟଶୃଙ୍ଗ ପ୍ରଭୃତି ଋଷିମାନେ ସେହି ହୋମକୁଣ୍ଡରେ ଆବିର୍ଭୂତ ବିଷ୍ଣୁଙ୍କୁ ଅପଲକ ଦୃଷ୍ଟିରେ ଦେଖି ନମସ୍କାର କଲେ ।

୩୪ଶ ପଦ—ଋଷିମାନେ କହିଲେ, "ହେ କରୁଣାକର ଦୟା ସମୁଦ୍ର ! ତୁମ୍ଭେ ପ୍ରକୃତରେ ସମୁଦ୍ର ଅଟ । କାରଣ, ସମୁଦ୍ର ଯେଉଁପରି ଶଙ୍ଖ, ଭଉଁରି ବା ଚକ୍ରବାକ ପକ୍ଷୀ ସମୂହ ଏବଂ ଚନ୍ଦ୍ରଙ୍କୁ ଧାରଣ କରି ଶୋଭା ପାଉଛି, ତୁମ୍ଭେ ସେହିପରି ପାଞ୍ଚଜନ୍ୟ ଶଙ୍ଖ, ସୁଦର୍ଶନ ଚକ୍ର, ଗରୁଡ଼, କୌମୋଦକୀ ଗଦା ଏବଂ ପଦ୍ମ ଧାରଣ କରି ଶୋଭା ପାଉଅଛ ।"

୩୫ଶ ପଦ—"ସମୁଦ୍ର ଯେଉଁପରି ଲକ୍ଷ ଲକ୍ଷ ଜଳଚର ଜୀବମାନଙ୍କୁ ଧାରଣ କରିଅଛି, ତୁମ୍ଭେ ସେହିପରି ନିଜ କରରେ ମୀନ, ମକର ପ୍ରଭୃତି ଚିହ୍ନମାନଙ୍କୁ ଧାରଣ କରିଅଛ । ଲୋକମାନେ ମହତୀ ନାମକ ଯୋଗରେ ସମୁଦ୍ରରେ ନିମଗ୍ନ ହେଲା ପରି ବଡ଼ ବଡ଼ ଭକ୍ତମାନଙ୍କର ନୟନ ତୁମ୍ଭ ହୃଦୟରେ ନିମଗ୍ନ ହେଉଅଛି ।"

ବୋଇତଅଳ ଯେ ଦଶରଥନୃପତ ।
ବାଞ୍ଛିବାରେ କର ତାରେ ତନୁ ପ୍ରାପତ । ୩୬ ।
ବଡ଼ବାନଳେ ପକା ଏ ରାକ୍ଷସଗଣ ।
ବ୍ୟଙ୍ଗକେ ଏଥିରୁ ନାହିଁ ଆନ ମାର୍ଗଣ । ୩୭ ।
ବ୍ୟାକୋଷ କୁସୁମ-ହାସ ମୁଖେ ଧଇଲେ ।
ବୋଲି ଅସ୍ତୁ ଗୃହେ ଚରୁରୂପେ ଦଶିଲେ । ୩୮ ।
ଭ୍ୟାଞ୍ଜଳି କରନ୍ତେ ତର ସେ ଋଷ୍ୟଶୃଙ୍ଗ ।
ବ୍ରହ୍ମରୂପୀ ପରବେଶ ହୋଇଲେ ବେଗ । ୩୯ ।
ବ୍ରାହ୍ମଣଶ୍ରେଷ୍ଠ ତା ରାଜା ହସ୍ତରେ ଦେଲେ ।
ବାଣ୍ଟି ସର୍ବ ମହିଷୀରେ ଦଅ ବୋଇଲେ । ୪୦ ।
ବାତ ମଳୟାଦ୍ରିରୁ ଯେ ବହଇ ଘେନ ।
ବଣଦ୍ରୁମେ ନାହିଁ ଯଥା ହେବା ଚନ୍ଦନ । ୪୧ ।

---

୩୮ଶ ପଦ—ବ୍ୟାକୋଷ କୁସୁମ—ପ୍ରସ୍ଫୁଟିତ ପୁଷ୍ପ । ଚରୁ—ଯଜ୍ଞାନ୍ନ ।

---

୩୬ଶ ଓ ୩୭ଶ ପଦ—"ହେ ପ୍ରଭୋ ! ସମୁଦ୍ରରେ ବୋଇତଅଳମାନେ ଝିଙ୍କାଇକ ବାହି ଯେପରି ଉତ୍ସବ ରହିଲ କରନ୍ତି, ସେହିପରି ଆପଣଙ୍କ ରୂପ ସମୁଦ୍ରରେ ବୋଇତଅଳ ହୋଇଥିବା ଅର୍ଥାତ୍ ଆପଣଙ୍କୁ ପୁତ୍ର ପ୍ରାପ୍ତିର ସ୍ଥାନ ମନେ କରିଥିବା ଦଶରଥଙ୍କୁ ପୁତ୍ରରୂପ ରତ୍ନ ପ୍ରଦାନ କରନ୍ତୁ ଏବଂ ସମୁଦ୍ର ବଡ଼ବାଗ୍ନିରେ ରାକ୍ଷସମାନଙ୍କୁ ପକାଇଲପରି ଆପଣ ନିଜର ବଡ଼ବାଗ୍ନି ତୁଲ୍ୟ କ୍ରୋଧରେ ରାକ୍ଷସମାନଙ୍କୁ ପକାନ୍ତୁ । ଏହା ବ୍ୟତୀତ ଆଉ କିଛି ମାର୍ଗ ନାହିଁ ।"

୩୮ଶ ପଦ—ଏହା ଶୁଣି ଭଗବାନ୍ ପ୍ରସ୍ଫୁଟିତ ପୁଷ୍ପ ତୁଲ୍ୟ ମନୋରମ ହାସ ପ୍ରକାଶ କରି, 'ତାହା ହେଉ' କହି ଗୃହେ ଗୋଟି ଚରୁରୂପରେ ଦେଖା ଦେଲେ ।

୩୯ଶ ପଦ—ଏହା ଦେଖି ଋଷ୍ୟଶୃଙ୍ଗ ହାତ ଅଞ୍ଜଳି କରିବାରୁ, ବ୍ରହ୍ମରୂପୀ ଭଗବାନ ତାହାଙ୍କ ହସ୍ତରେ ଶୀଘ୍ର ପ୍ରବେଶ କଲେ ।

୪୦ଶ ପଦ—ତପସ୍ୱୀ ଋଷ୍ୟଶୃଙ୍ଗ ସେହି ଯଜ୍ଞାନ୍ନ ଦଶରଥଙ୍କୁ ଦେଇ କହିଲେ, "ରାଣୀମାନଙ୍କୁ ବାଣ୍ଟି ଦିଅ ।"

ବ୍ରତୀ ନୋହୁ ସାତଶତ ସତରଜଣି ।
ବାମା ଅଛନ୍ତି କୌଶଲ୍ୟା କୈକେୟୀ ଛପି । ୪ ।
ବିରକ୍ତେ ନୃପତି ଦୁଇଭାଗ ତା କଲେ ।
ବାହ୍ୟଲେ ସେ ଦୁହିଙ୍କର ପାଣିରେ ଦେଲେ । ୪୩ ।
ବିମଳହୃଦୟା ଛପି କଲ ଅହେଳା ।
ଦେଖି ଦେଖି ଭାଗ ଦେଲେ ସନ୍ତୋଷ ରାଜା । ୪୪ ।
ବିଶ୍ୱଗର୍ଭେ ସେ ଅଶନେ ଗର୍ଭରେ ରହି ।
ବରଷେ ଯେ ସ୍ୱାତୀଜଳ ଭକ୍ଷଣ କହି । ୪୫ ।
କହିଲ ଉଦରେ ମୋତି ଶୁକ୍ତି ଯେମନ୍ତ ।
ଝିଣ୍ଣୁ ନୋହୁ ଏ କଥାହିଁ ହେଲା ତେମନ୍ତ । ୪୬ ।

---

୪୫ଶ ପଦ—ବିଶ୍ୱଗର୍ଭ—ବିଷ୍ଣୁ । ଅଶନ—ଭକ୍ଷଣ । ବରଷେ—ମେଘ ବରଷିବା ସମୟରେ ।
୪୬ଶ ପଦ—ଶୁକ୍ତି—ଶାମୁକା ।

---

୪୧—୪୩ଶ ପଦ—କୌଶଲ୍ୟା ଓ କୈକେୟୀ ( ରାଜାଙ୍କୁ ଚରୁ ନେଇ ଆସିବାର ଦେଖି ) କହିଲେ, "ତୁମ୍ଭର ସାତଶହ ସତରଜଣ ରାଣୀ ବ୍ରତ କରି ନାହାନ୍ତି ।" ପବନ ମଳୟ ପର୍ବତକୁ କହିଲେ ଯେଉଁପରି ବାଉଁଶର ଭାଗ୍ୟରେ ଚନ୍ଦନ ହେବାର ସୁଯୋଗ ଘଟେ ନାହିଁ, ସେହିପରି ଏହି କଥା ଶ୍ରବଣରେ ରାଜା ବିରକ୍ତ ହୋଇ ମଳୟର ଗୁଣ ରୂପୀ ସେହି ଚରୁକୁ ସେ ଦୁହିଁଙ୍କର ହାତରେ ଦେଲେ ।

୪୪ଶତ ପଦ—ନିର୍ମଳହୃଦୟା ରାଣୀ ଦୁହେଁ କହିଲେ, "ଆପଣ ଅବିଗ୍ର କଲେ; ( କାରଣ ଆପଣଙ୍କର ସାତଶହ ପଞ୍ଚାଶ ରାଣୀଙ୍କ ମଧ୍ୟରୁ ଉପରୋକ୍ତ ସଂଖ୍ୟକ ରାଣୀ ବ୍ରତ କରି ନାହାନ୍ତି ବାକି ତିନିଜଣ ବ୍ରତ କରିଛନ୍ତି ଆପଣ ସେ ତିନିଜଣଙ୍କୁ ଭାଗ ଦେଲେ ନାହିଁ ) ଏହା କହି ବ୍ରତୀଙ୍କୁ ( ସୁମିତ୍ରାଙ୍କୁ ) ଦୁଇଭାଗ ଦେବାରୁ ରାଜା ସନ୍ତୁଷ୍ଟ ହେଲେ ।

୪୫—୪୬ଶ ପଦ—ସ୍ୱାତୀନକ୍ଷତ୍ରରେ ମେଘ ବରଷିଲେ ସେହି ଜଳକୁ ଭକ୍ଷଣ କରି ଶାମୁକା ମୁକ୍ତାକୁ ଗର୍ଭରେ ଧାରଣ କରେ; ସେହିପରି ରାଣୀମାନେ ଚରୁ ଭକ୍ଷଣ କରି ବ୍ରହ୍ମାଣ୍ଡ ଯାହାଙ୍କ ଗର୍ଭରେ ରହିଅଛି, ସେହି 'ବିଷ୍ଣୁଙ୍କୁ ଗର୍ଭରେ ଧାରଣ କଲେ ।

ବୈଭାଣ୍ଡକ କାନ୍ତା ସେନ ସ୍ୱବନେ ଗତ ।
ବାସରକୁ ବାସର ରାଣୀଏ ଅଶକ୍ତ । ୪୭ ।
ବିଧୃତ ଲତିକା ମେରୁ ଏଥି ଉଚ୍ଚରୁ ।
ବିଚିତ୍ର ନୋହିଲା ଅକ୍ଷତ ହେବାରୁ । ୪୮ ।
ବର୍ଣ୍ଣ ସୁବର୍ଣ୍ଣ ଦୋହଦ ରୂପ୍ୟରେ କିଣି ।
କସ୍ତୋଳ ଦନ୍ତସମ୍ପୁଟେ ରକ୍ଷଣ ମଣି । ୪୯ ।
ବୃଦ୍ଧି ହେବା କଟୀ ପୃଥୁ ଅଧିକ ନୋହୁ ।
ଏଥିପୂର୍ବେ ସିଂହ ଲଙ୍କ ଗ୍ରାସିଛି ଯେହୁ । ୫୦ ।
ସଙ୍କୀର୍ଣ୍ଣ ମଧୁରସରେ ଉଦରପଥ ।
ବମନ ହେବା ଶଙ୍କ କି ଅନ ପଦାର୍ଥ । ୫୧ ।

---

୪୭ଶ ପଦ—ବୈଭାଣ୍ଡକ—ଋଷ୍ୟଶୃଙ୍ଗ । ବାସରକୁ ବାସର—ଦିନକୁ ଦିନ ।

୪୯ ଶତ୍ ପଦ—ଦୋହଦ—ଗର୍ଭ । କସ୍ତୋଳ—ସ୍ତନ । ଦନ୍ତସମ୍ପୁଟ—ହାତୀ ଦନ୍ତ ତିଆରି ଫରୁଆ ।

୫୧ ଶତ୍ ପଦ—ମଧୁରସରେ—ମିଠାରସରେ, ନାରାୟଣଙ୍କ ମାଧୁରୀରେ । ଉଦରପଥ—କଣ୍ଠଦେଶ ।

---

୪୭ଶ ପଦ—ଅନନ୍ତର ଋଷ୍ୟଶୃଙ୍ଗ ପ୍ରିୟା ଶାନ୍ତାଙ୍କୁ ନେଇ ସ୍ୱୀୟ ତପୋବନକୁ ଗମନ କଲେ ଏବଂ ରାଣୀମାନେ ଗର୍ଭ ଭାରରେ ଦିନକୁ ଦିନ ଅଶକ୍ତ ହେଲେ ।

୪୮ଶତ୍ ପଦ—ଲତା ତୁଲ୍ୟ ସୁକୁମାରୀ ରାଣୀମାନେ ମେରୁ ପର୍ବତ ତୁଲ୍ୟ ଉନ୍ନତଗର୍ଭ ଧାରଣ କରି ଅଶକ୍ତ ହେବା ବିଚିତ୍ର ନୁହେ ।

୪୯ଶତ୍ ପଦ—ଗର୍ଭ ରାଣୀମାନଙ୍କର ସୁବର୍ଣ୍ଣ ତୁଲ୍ୟ ଦେହର କାନ୍ତିକୁ ରୂପା ମୂଲ୍ୟରେ କିଣି ସ୍ତନ ରୂପ ହାତୀ ଦନ୍ତ ଫରୁଆରେ ରଖିଛି କି ? ( ଏହିପରି ଦର୍ଶକର ମନେ ହୁଏ । ଗର୍ଭ ଲକ୍ଷଣ ପ୍ରକାଶ ହେଲେ ଗର୍ଭିଣୀର ଶରୀରର କାନ୍ତି ପାଣ୍ଡୁ ବର୍ଣ୍ଣ ହୁଏ । ସ୍ତନ ଅଧିକ ଶୋଭା ଧାରଣ କରେ, ଏଣୁ ଏପରି ଉତ୍ପ୍ରେକ୍ଷା ହେଲା ) ।

୫୦ଶତ୍ ପଦ—ସେମାନଙ୍କ କଟିଦେଶ ବେଶି ଉନ୍ନତ ହେଲା; ଏହା କହିବା ଅଧିକ ବିଚିତ୍ର ନୁହେ । କାରଣ ଏଥି ପୂର୍ବରୁ ଏହି କଟି ସିଂହକଟିକୁ ଗ୍ରାସ କରିଥିଲା (ଜିଣିଥିଲା) । ଯେ ଯାହାକୁ ଗ୍ରାସ କରେ, ସେ ତାଠାରୁ ନିଶ୍ଚୟ ପୃଥୁଳ ଅଟେ ।

୫୧ଶତ୍ ପଦ—ରାଣୀମାନଙ୍କର କଣ୍ଠ ପ୍ରଦେଶ ମିଠା ରସରେ ଏବଂ 'ମଧୁର ରସ' ନାରାୟଣ ମାଧୁରୀରେ ପୂର୍ଣ୍ଣ ହେବାରୁ ଅନ୍ୟ ବସ୍ତୁ, ଭକ୍ତ ପ୍ରଭୃତ

ବସନ୍ତ ମଧୁ ମାସରେ ନବମୀ ଖ୍ୟାତ ।
ବିହଗଧ୍ୱଜ ବହିଲେ ଚତୁର୍ଦ୍ଧା ମୂର୍ତ୍ତି । ୫୨ ।
ନୃପପ୍ରିୟା ଏ କୌଶଲ୍ୟା କୈକେୟୀ ସୁମିତ୍ରା ।
ବାସବଦିଗଦ୍ରି ଭଳି ଶୃଙ୍ଗ ଶୋଭିତା । ୫୩ ।
ବିଧୁ ଗୁରୁ ଭାର୍ଗବ ଅଙ୍ଗିର ଉଦିତ ।
ବିନାଶ୍ୟତ ଧାତ୍ରୀ ରାତ୍ରି ନିବିଡ଼ ଧ୍ୱାନ୍ତ । ୫୪ ।
ବଧାଇ ଲଭିଲେ ନୃପେ ନାରୀଏ କହି ।
ବାର୍ତ୍ତାବହେ ରାଜ୍ୟାନ୍ତରେ ଗମିଲେ ତହିଁ । ୫୫ ।
ବାରତା କହି ସାମନ୍ତ ପାଶେ ଦ୍ୱାରତ ।
ବେତ୍ରଧରେ କଟକ କୁଣ୍ଡଳରେ ମଣ୍ଡିତ । ୫୬ ।

---

୫୨ଶତ ପଦ—ମାଧୁମାସ—ଚୈତ୍ରମାସ । ବିହଗଧ୍ୱଜ—ଗରୁଡ଼ାସନ (ବିଷ୍ଣୁ) । ଚତୁର୍ଦ୍ଧା ମୂର୍ତ୍ତି—ଚାରିପ୍ରକାର ଦେହ ।

୫୪ଶତ ପଦ,—ବାସବଦିଗଦ୍ରି—ଉଦୟ ପର୍ବତ ।

୫୪ଶତ ପଦ—ବିଧୁ—ଚନ୍ଦ୍ର । ଗୁରୁ—ବୃହସ୍ପତି । ଭାର୍ଗବ—ଶୁକ୍ର । ଅଙ୍ଗିର--ମଙ୍ଗଳ । ଧାତ୍ରୀ ରାତ୍ରି --ପୃଥିବୀରୂପା ରାତ୍ରି । ଧ୍ୱାନ୍ତ—ଅନ୍ଧକାର, ଚିନ୍ତା ।

୫୫—ଶତ ପଦ—ବଧାଇ—ପୁରସ୍କାର । ବାର୍ତ୍ତାବହ—ଦୂତ ।

୫୬ଶତ ପଦ—ବେତ୍ରଧର—କଞ୍ଚୁକୀ । କଟକ—ବାଲା ।

---

ରସ ଭକ୍ଷଣ କରନ୍ତେ ବାନ୍ତି ହେଲା । ଏଥିରେ ଆଶ୍ଚର୍ଯ୍ୟ କଣ ? (ଅଦ୍ଭୁତ ସେମାନଙ୍କୁ ଆକ୍ରମଣ କଲା ଏହାହିଁ ଫଳିତାର୍ଥ ) ।

୫୨ଶତ ପଦ—ବସନ୍ତ ଋତୁରେ ଚୈତ୍ରମାସର ଶୁକ୍ଳ ନବମୀ ପ୍ରସିଦ୍ଧ ଅଟେ । ସେହିଦିନ ବିଷ୍ଣୁ ଚାରିଗୋଟି ଦେହ ଧାରଣ କଲେ ।

୫୩ଶତ ପଦ—ଏହି ସମୟରେ କୌଶଲ୍ୟା ଆଦି ତିନିରାଣୀ ଉଦୟାଚଳର ତିନିଗୋଟି ଶୃଙ୍ଗପରି ଦେଖାଗଲେ ।

୫୪ଶତ ପଦ—ଯେପରି ଚନ୍ଦ୍ର, ବୃହସ୍ପତି, ଶୁକ୍ର, ମଙ୍ଗଳ ଉଦୟ ହୋଇ ରାତ୍ରିର ଗାଢ଼ ଅନ୍ଧକାରକୁ ନାଶ କରନ୍ତି, ସେହିପରି ରାଣୀମାନଙ୍କ ଗର୍ଭରୁ ଚାରିଗୋଟି ପୁତ୍ର ଜନ୍ମ ହୋଇ ପୃଥିବୀର ଗାଢ଼ ଚିନ୍ତାକୁ ନାଶ କଲେ ।

୫୫ଶତ ପଦ—ଅନ୍ତଃପୁରରେ ଥିବା ସ୍ତ୍ରୀମାନେ ରାଜାଙ୍କୁ ଏହି କଥା କହି ପୁରସ୍କାର ପାଇଲେ ଏବଂ ଦୂତମାନେ ଏହି ବାର୍ତ୍ତା ନେଇ ଅନ୍ୟାନ୍ୟ ରାଜ୍ୟକୁ ଗଲେ ।

୫୬ଶତ ପଦ—କଞ୍ଚୁକୀମାନେ ସାମନ୍ତ ଓ ମନ୍ତ୍ରୀମାନଙ୍କୁ ଏହି କଥା ଜଣାଇ ବାଲା ଓ କୁଣ୍ଡଳ ପ୍ରଭୃତି ଅଳଙ୍କାର ପିନ୍ଧିଲେ ।

ବାଟ ହାଟ ତୂର ତୁରି ବାଜେ ଅସଂଖ୍ୟ ।
ଷଡୁପଦ କାତ୍ୟାୟନୀ ହୃଷ୍ଟ ଅଳେଖ । ୫୭ ।
ବୃନ୍ଦ ବୃନ୍ଦ ହୋଇ ତହିଁ ଜନମାନେ ।
ବସୁଧାପତି ଦେଖିଲେ ସୂନୁ ସୁମନେ । ୫୮ ।
ବନଜନାଭ ପଦକୁ ସାର୍ଥ କରଇ ।
ବିଲମ୍ବିତ ନାଡ଼ ନାଭିମଣ୍ଡଳେ ଶୋହି । ୫୯ ।
ବିଚ୍ଛେଦନ କଲେ ନାଭି ହୃଦସୃହୃଦେ ।
ବପୁହ ସୁବାସ ଯେଣୁ କସ୍ତୁରୀ ବଦେ । ୬୦ ।

---

୫୭ ଶତ୍ ପଦ —ଷଡୁପଦ—ହାସ୍ୟକାରୀ । କାତ୍ୟାୟନୀ—ଅର୍ଦ୍ଧବୃଦ୍ଧା ବିଧବା ସ୍ତ୍ରୀ ।

୫୮ ଶତ୍ ପଦ—ସୂନୁ—ପୁତ୍ର ।

୫୯ ଶତ୍ ପଦ —ବନଜନାଭ—ପଦ୍ମନାଭ (ବିଷ୍ଣୁ) ।

୬୦ ତମ ପଦ —ବପୁ—ଦେହ ।

---

୫୭ ଶତ୍ ପଦ—ଏହି ଉତ୍ସବରେ ବାଟ, ହାଟ ସବୁ ଲୋଟି ହେଲା, ତୁରୀ ପ୍ରଭୃତି ଅସଂଖ୍ୟ ବାଦ୍ୟ ବାଜିଲା , ହାସ୍ୟକାରୀ ଓ ବିଧବା ସ୍ତ୍ରୀମାନେ ଆନନ୍ଦିତ ହେଲେ ।

୫୮ ଶତ୍ ପଦ—ଯେତେବେଳେ ଦଳ ଦଳ ହୋଇ ଅନ୍ୟ ସ୍ତ୍ରୀମାନେ ସୂତିକା ଘରେ ରୁଣ୍ଡ ହେଲେ , ସେହି ସମୟରେ ରାଜା ସୂତିକା ଘରେ ଉପସ୍ଥିତ ହୋଇ ଆନନ୍ଦ ମନରେ ପୁତ୍ରଙ୍କୁ ଦେଖିଲେ ।

୫୯ତମ ପଦ —ଦଶରଥ ପୁତ୍ରର ନାଭିରୁ ଲମ୍ବିଥିବା ନାଡ଼କୁ ଦେଖି, ବିଷ୍ଣୁଙ୍କର ପଦ୍ମନାଭ ନାମକୁ ସାର୍ଥକ ମନେ କଲେ । (ଅର୍ଥାତ୍ ରାମଙ୍କର ନାଡ଼ ବିଲମ୍ବିତ ନାଭି ମୃଣାଳଯୁକ୍ତ ପଦ୍ମ ପରି ଦେଖାଯାଉଥିଲା । )

୬୦ତମ ପଦ—ଏହି ସମୟରେ ପୁତ୍ରମାନଙ୍କର ନାଡ଼ ଛେଦନ କରିବାରୁ ସେମାନଙ୍କ ଦେହରୁ କସ୍ତୁରୀର ଗନ୍ଧ ବାହାରିଲା । ତେଣୁ ମନେହେଲା ପୁତ୍ରମାନଙ୍କର ଦେହ ସୌରଭ କସ୍ତୁରୀର ବନ୍ଦନୀୟ (କସ୍ତୁରୀଠାରୁ ଉତ୍କୃଷ୍ଟ) ହୋଇଥିବାରୁ ଦାସୀମାନେ ମୃଗନାଭୀ ଭ୍ରମରେ ଛେଦନ କଲେ କି ?

ବ୍ୟକତ ସୂତିକା ଗୃହ କାରୁଣ୍ୟମୟ ।
ବିସ୍ତୀର୍ଣ୍ଣ ଅନନ୍ତ ଶୋଭା ଶଯ୍ୟା ନିଶ୍ଚୟ । ୭୧ ।
ବୀଚି ଚନ୍ଦ୍ରାତପ କୁମ୍ଭୀବାସ ରଚଇ ।
ବିବେକୀ ସୁଆଇ ସଦା ନିଦ୍ରା ଛଡ଼ାଇ । ୭୨ ।
ବ୍ରୀହି ଆଦି ପଞ୍ଚବୀଜ ପଞ୍ଚୁଆତି ଯେ ।
ବ୍ୟାନ ସହ ପଞ୍ଚବାୟୁ ତୋଷନ୍ତି ସେ ଯେ । ୭୩ ।
ବନଜନୀ ଲକ୍ଷ୍ୟ ନାରୀ ଷଷ୍ଠୀଘରକୁ ।
କରଣ୍ଡକେ ମଣ୍ଡି କଲେ ମଣ୍ଡନ ଘରକୁ । ୭୪
ବିଯୋଗ ନିଦ୍ରାରେ କାମମଧୁରେ ବାଦ ।
ବିରଚି ଏ ପାଞ୍ଚ ଉଠି ଆଦି ସମ୍ପାଦ । ୭୫ ।

---

୭୧ ତମ ପଦ—କାରୁଣ୍ୟମୟ—କ୍ଷୀର ସମୁଦ୍ର । ଅନନ୍ତ—ଶେଷଦେବ ।

୭୨ ତମ ପଦ—ବୀଚି—ଲହରୀ । ଚନ୍ଦ୍ରାତପ—ଚାନ୍ଦୁଆ । ବିବେକୀ—ଚତୁର, ସରସ୍ୱତୀ ।

୭୪ ତମ ପଦ—ବନଜନୀ—ପଦ୍ମିନୀ । କରଣ୍ଡକ—କଉଡ଼ି ।

୭୫ ତମ ପଦ—କାମ—ଇଚ୍ଛା, କନ୍ଦର୍ପ । ମଧୁର—ମଧୁ ରାକ୍ଷସ, ବସନ୍ତକାଳ

---

୭୧ ତମ ପଦ—ସୂତିକାଗୃହ କ୍ଷୀରସମୁଦ୍ର ପରି ଓ ସେହି ଗୃହରେ ବିଛାଇ ଦିଆଯାଇଥିବା ଶଯ୍ୟା ବିଷ୍ଣୁଙ୍କର ଅନନ୍ତ ଶଯ୍ୟା ପରି ଦେଖାଯାଉଥିଲା ।

୭୨ ତମ ପଦ—ସେହି ସୂତିକା ଗୃହରେ ବନ୍ଧା ଯାଇଥିବା ଚାନ୍ଦୁଆର 'କୁମ୍ଭୀବାସ' ଝାଲରସବୁ କ୍ଷୀର ସମୁଦ୍ରର ଲହରୀପରି ଏବଂ କୁମାରଙ୍କର ପ୍ରବୋଧକାରିଣୀ ଚତୁର ଦାସୀ ବିଷ୍ଣୁଙ୍କର ପ୍ରବୋଧକାରିଣୀ ସରସ୍ୱତୀଙ୍କ ପରି ଦେଖା ଯାଉଥିଲେ ।

୭୩ ତମ ପଦ—ପଞ୍ଚୁଆତି ଦିନ ବ୍ରୀହି ପ୍ରଭୃତି ପଞ୍ଚଶସ୍ୟ ମିଶ୍ରିତ ଗୁଆଳ ଭକ୍ଷଣକାରୀମାନଙ୍କର ପଞ୍ଚପ୍ରାଣକୁ ସନ୍ତୋଷ କଲା ।

୭୪ ତମ ପଦ—ଷଷ୍ଠୀଦିନ ଲକ୍ଷେ ପଦ୍ମିନୀ ସ୍ତ୍ରୀ ବହୁସଂଖ୍ୟକ କଉଡ଼ିରେ ଷଷ୍ଠୀଘରକୁ ମଣ୍ଡନ କଲେ ।

୭୫ ତମ ପଦ—ଭଗବାନ ଯୋଗନିଦ୍ରାରେ ଅଭିଭୂତ ଥିବାବେଳେ ଯେପରି ମଧୁକୈଟଭ ଦୈତ୍ୟସହ ବିବାଦ କରିବା ଇଚ୍ଛା ପୋଷଣ କରି ଉଠିଥିଲେ, ସେହିପରି ଏଠି ପୁତ୍ରମାନେ ସୁନ୍ଦରତାରେ କନ୍ଦର୍ପ ଓ ବସନ୍ତକାଳ ସହ ବିବାଦ କରିବା ପାଇଁ ପ୍ରଥମ ଦିବସରେ ଉଠି ଆଦି କାର୍ଯ୍ୟ ସମ୍ପାଦନ କଲେ ।

ବିଂଶ ଏକଦିନେ ଦୋଳପର୍ଯ୍ୟଙ୍କ ଉପର ।
ଷଟପଦ ପୂଟେ ବାଳ ମୁକୁନ୍ଦ ପରି ।୬୬।
ବଢ଼ାନ୍ତେ ଯେ ଦଶରଥ ରାଜନେ ଭର
ବାହୁଉର୍ଦ୍ଧ୍ୱେ ମାର୍କଣ୍ଡେୟ ଥିବା ପ୍ରକାର ।୬୭।
ବ୍ରହ୍ମଋଷି ନାମ ବିହି ଶ୍ରୀରାମ ରାମ ।
ବୋଲେ ଚନ୍ଦ୍ର ଭଦ୍ର ହେଉ ଏ ପଛେ ରମ୍ୟ ।୬୮।
ବଂଶେ ରଘୁ ରାଘବ ଏ ସେ ନାଥ ଭଣି ।
ବୋଲାଇବେ ରାବଣାରି ରାଜେନ୍ଦ୍ର ପୁଣି ।୬୯।
ବପ୍ତା ଦଶରଥ ରାଜା ଯେଣୁ ହୁଅବେ ।
ବହନ୍ତୁ ଏ ଦାଶରଥି ନାମକୁ ଏବେ ।୭୦।
ବିହିଲେ ଭରତ ନାମ କୈକେୟୀ ସୁତେ ।
ବୋଇଲେ ସଦା ବର୍ତ୍ତିବ ଏ ଶୁଭରତେ ।୭୧।
ବେନି ସୁତ ସୁମିତ୍ରାର ଦେଖି ହରଷ ।
ବିଚକ୍ଷଣ ଲକ୍ଷଣମାନଙ୍କେ ପ୍ରକାଶ ।୭୨।

---

୬୬ତମ ପଦ—ଷଷ୍ଠ ଚଟପଦରେ ଶୋଇଲାପରି, ଏମାନେ ଏକୋଇଶ ଦିନ ଦୋଳିରେ ଶୋଇଲେ ।

୬୭ ତମ ପଦ—ଦଶରଥ ସେହି ଦୋଳି ଦୋହଲାଇବା ପାଇଁ ହାତ ବଢ଼ାନ୍ତେ ଊର୍ଦ୍ଧ୍ୱବାହୁ ମାର୍କଣ୍ଡଙ୍କ ପରି ଦେଖାଗଲେ ।

୬୮ ତମ ପଦ—ବ୍ରହ୍ମର୍ଷି ବଶିଷ୍ଠ ଜ୍ୟେଷ୍ଠ ପୁତ୍ରଙ୍କର ନାମ ଶ୍ରୀରାମ ଓ ରାମ ଦେଇ କହିଲେ, "ଏହି ନାମ ପଛରେ ଚନ୍ଦ୍ର ଓ ଭଦ୍ର ଶବ୍ଦ ଯୁକ୍ତ ହୋଇ ରମଣୀୟ ହେଉ ଅର୍ଥାତ୍ ଶ୍ରୀ ରାମଚନ୍ଦ୍ର, ଶ୍ରୀ ରାମଭଦ୍ର, ରାମଚନ୍ଦ୍ର, ରାମଭଦ୍ର ହେଉ ଅଉ ମଧ୍ୟ ରଘୁବଂଶରେ ଜନ୍ମ ହୋଇଥିବାରୁ ଏହାଙ୍କର ନାମ ରଘୁନାଥ, ରାଘବ ହେବ । ପରେ ରାବଣକୁ ମାରି ରାବଣାରି ଏବଂ ରାଜା ହୋଇ ରାଜେନ୍ଦ୍ର ନାମ ଧାରଣ କରିବେ ।"

୭୦ତମ ପଦ—"ଅଉ ମଧ୍ୟ ଦଶରଥ ଏହାଙ୍କର ପିତା ହୋଇଥିବାରୁ ଏ ଦାଶରଥି ନାମକୁ ଧାରଣ କରନ୍ତୁ ।"

୭୧ ତମ ପଦ—କୈକେୟୀପୁତ୍ରଙ୍କୁ ଦେଖି କହିଲେ, "ଏ ସଦା ଶୁଭ କାର୍ଯ୍ୟରେ ରତ ହୋଇ ଜୀବନ ଯାପନ ନିର୍ବାହ କରିବ; ଏଣୁ ଏହାର ନାମ ଭରତ ହେଉ ।"

ବହୁ ଲକ୍ଷଣ ନାମକୁ ଅଗ୍ରଜ ସୁତ ।
ବୋଲିବାର କୁମାର ଏହାକୁ ଉଚିତ । ୭୩ ।
ବର୍ଣ୍ଣ ଶସ୍ତ୍ରମନ୍ତ୍ର ନ ଗଣିବ ଆନରେ ।
ବୃଦ୍ଧି ହେବ ମେଘନାଦ ତୋଷ ଦାନରେ । ୭୪ ।
ବିଘ୍ନେ ଯେଣୁ ଶତ୍ରୁଘ୍ନ ହେବ ସହଜେ ।
ବଦତ ଏଣୁ ଶତ୍ରୁଘ୍ନ ନାମ ଅନୁଜେ । ୭୫ ।
ବିଧାନ ସୁମିତ୍ରାସୁତା ଦୁହେଁ ସୌମିତ୍ରୀ ।
ବୋଲନ୍ତୁ ବୋଲି ବିଗତ ତହୁଁ ସେ ଯତି । ୭୬ ।
ବଢି ସୁତେ ଦିନୁ ଦିନୁ ପ୍ରଭା ଉଦୟେ ।
ବଳକ୍ଷପକ୍ଷରେ କଳାଧର ପରାୟେ । ୭୭ ।

---

୭୪ତମ ପଦ—ମେଘନାଦ—ମୟୂର, ଇନ୍ଦ୍ରଜିତ । ଦାନ—ଦେବା, ଛେଦନ କରିବା ।

୭୭ତମ ପଦ—ବଳକ୍ଷପକ୍ଷ—ଶୁକ୍ଳପକ୍ଷ ।

---

୭୨—୭୪ ତମ ପଦ—ବଶିଷ୍ଠ ସୁମିତ୍ରାଙ୍କର ପୁତ୍ରଦ୍ୱୟଙ୍କୁ ଦେଖି କହିଲେ, "ଏ ଦୁହିଙ୍କ ମଧ୍ୟରୁ ଜ୍ୟେଷ୍ଠଠାରେ ସ୍ପଷ୍ଟ ଭାବରେ ସୁଲକ୍ଷଣମାନ ଦେଖାଯାଉ ଥିବାରୁ ସେ ଲକ୍ଷ୍ମଣ ନାମରେ ଅଭିହିତ ହେଉ, ଅଥଚ ମଧ୍ୟ ତାହାର ନାମ କୁମାର ହେବା ଉଚିତ । କାରଣ କୁମାର ( କାର୍ତ୍ତିକେୟ ) ଯେପରି ଶକ୍ତି ଧାରଣ କରି ଅନ୍ୟ ଶସ୍ତ୍ରଶାଳୀ ତ୍ରିଭୁବନ ବିଜୟୀ ତାରକ ପ୍ରଭୃତିଙ୍କୁ ଗଣନା କରି ନ ଥିଲେ, ଏ ସେହିପରି ଶକ୍ତି ଧାରଣ କରି ଅନ୍ୟ ବୀରମାନଙ୍କୁ ଗଣନା କରିବେ ନାହିଁ ଏବଂ କାର୍ତ୍ତିକେୟ ଯେପରି ମୟୂରକୁ ସନ୍ତୋଷ ଦାନ କରିବାରେ ରତ ଅଟନ୍ତି, ଏ ସେହିପରି 'ମୟୂର' ଇନ୍ଦ୍ରଜିତକୁ ତୋଷ ଦାନ କରିବେ ଅର୍ଥାତ୍ ତାହାର ଶିର ଛେଦନ କରି ଚିରକାଳକୁ ଶାନ୍ତ କରି ଦେବେ ।"

୭୫ତମ ପଦ—ଲକ୍ଷ୍ମଣଙ୍କର ସାନ ଭାଇଙ୍କୁ "ଏ ଅତି ସହଜ ଉପାୟରେ ବହୁ ଶତ୍ରୁଙ୍କୁ ନାଶ କରି ଖ୍ୟାତି ଲାଭ କରିବ"—ଏହା କହି ଶତ୍ରୁଘ୍ନ ନାମ ଦେଲେ ।

୭୬ତମ ପଦ—"ଏ ଦୁହେଁ ସୁମିତ୍ରାଙ୍କଠାରୁ ଜନ୍ମ, ଏଣୁ ସୌମିତ୍ରୀ ନାମ ଧାରଣ କରନ୍ତୁ"—ଏହା କହି ଋଷି ସେଠାରୁ ପ୍ରସ୍ଥାନ କଲେ ।

୭୭ତମ ପଦ—ପୁତ୍ରମାନେ ଶୁକ୍ଳପକ୍ଷ ଚନ୍ଦ୍ର ପରି ଦିନକୁ ଦିନ ତେଜସ୍ୱୀ ହୋଇ ବଢିବାକୁ ଲାଗିଲେ ।

ବାଡ ଧରି ଢଗ୍ଗ ଖୋଗ୍ଗ ହେବା କହିବ ।
ବଡ଼ ବଡ଼ ଯହିଁ ଜଡ ହୋଇ ରହିବ । ୭୮ ।
ବହିର ଭଣିଲେ କ୍ରମେ କ୍ରମେ ଡଭ୍ଭରେ ।
ବ୍ୟସ୍ତଗତ ଶିଶୁ ସଙ୍ଗେ ରଙ୍ଗେ ସଭ୍ଭରେ । ୭୯ ।
ବାଲ୍ୟେ ଜଗତ ହିନାହେ କସୋଇ ।
ବାଲ୍ୟଭାବେ ସର୍ଜନା ଯେ ସେହି ପ୍ରକାର । ୮୦ ।
ବ୍ରତବନ୍ଧନ ସମୟ ଉହିଁ ହୋଇଲା ।
ବନ୍ଧୁଭାବେ ନବନାରାୟଣ ଯେ ଲୀଳା । ୮୧ ।
ବରହି ସ୍ୱତ ସୃଷ୍ଟିରେ ଶିଖଣ୍ଡ ଧରେ ।
ବାହାରିଲେ ନଗର ଭ୍ରମଣ ଇଚ୍ଛାରେ । ୮୨ ।

---

୮୦ତମ ପଦ—ଜଗତ ରଚନା – ସୃଷ୍ଟି ରଚନା ।

୮୨ତମ ପଦ—ବରହି—ମୟୂର । ସ୍ୱତଃ—ନିଜେ ନିଜେ । ସୃଷ୍ଟିରେ—ସଂସାରରେ । ଶିଖଣ୍ଡ—ଚଳ, ଶିଖା (ଚୂଳି) ନଗର—ପର୍ବତର, ବୃକ୍ଷର, ସହର । ଅନ୍ୟାର୍ଥରେ—ବର—ଶ୍ରେଷ୍ଠ । ହି—ନିଶ୍ଚିତ । ସ୍ୱତଃ—ପ୍ରକୃତରେ ।

---

୭୮ତମ ପଦ—ପୁତ୍ରମାନେ ବାନ୍ଧ ବାଡ଼ ଧରି ଠିଆ ହେବା ସମୟର ଶୋଭା କଏ ବର୍ଣ୍ଣନା କରିବ ? ବଡ଼ ବଡ଼ମାନେ ଅଥବା 'ବଡ଼ ବଡ଼' ବ୍ରହ୍ମା ସୁଦ୍ଧା ଏହା ବର୍ଣ୍ଣିନ ପାରି ମୂକ ହୋଇ ରହିବେ ।

୭୯ତମ ପଦ - ପୁତ୍ରମାନେ କ୍ରମେ କ୍ରମେ ଅନ୍ୟ ଶିଶୁମାନଙ୍କସହି 'ଡଭ୍ଭରେ ଅଗଣାରେ ଗୋଡ଼ିଆ ହୋଇ ଖେଳିବାକୁ ଲାଗିଲେ ।

୮୦ତମ ପଦ—ଭଗବାନ କଣ୍ଠିମାନ ରାମରୂପ ଧାରଣ କରି ବାଳକ ହୋଇଥିଲେ ସୁଦ୍ଧା ବହୁ ରୂପରେ ପୂର୍ବେ କରିଥିବା ସୃଷ୍ଟିର ରଚନା କୌଶଳ ଭୁଲି ନ ଥିଲେ । ଯେ ହେତୁ ସେ ସେହିପରି ବାଲ୍ୟରେ ନାନା ପ୍ରକାର ରଚନା କରିବାକୁ ଲାଗିଲେ ।

୮୧ତମ ପଦ—ବନ୍ଧୁଭାବରେ ଯେପରି ନର ନାରାୟଣଙ୍କର ଲୀଳା ହୋଇଥିଲା, ସେହିପରି ଉପନୟନ ସମୟ ଉପସ୍ଥିତ ହେବାରୁ ଅଯୋଧ୍ୟାରେ ଲୀଳା ହେଲା ।

୮୨ତମ ପଦ - ଏହି ସଂସାରସ୍ଥ ପ୍ରାଣୀମାନଙ୍କ ମଧ୍ୟରୁ ମୟୂର ଯେପରି ନିଜେ ନିଜେ ଚୂଳ ଧାରଣ କରି ପର୍ବତ, ବୃକ୍ଷମାନଙ୍କରେ ନିଜ ଇଚ୍ଛାନୁସାରେ ବୁଲେ, ସେହିପରି ଏହି ସଂସାରରେ ଧର୍ମସ୍ତମ୍ଭଙ୍କଠାରୁ ବାସ୍ତବିକ୍ ଉତ୍କୃଷ୍ଟ ଅଟନ୍ତି ସେଇଁ ବନ୍ଧୁ, ସେ ଶଖା (କେଶଗୁଚ୍ଛ) ଧାରଣ କରି ଇଚ୍ଛାନୁସାରେ ନଗରରେ ବୁଲିବାକୁ ଲାଗିଲେ (ଉପନୟନ ପରେ ଶିଖା ଧାରଣ କରିବାର ନିୟମ ଅଛି) ।

ବାଳକିଶୋର ଭାବକୁ ପ୍ରକାଶ ତହିଁ ।
ବାହଗ୍ରୀବ ହୋଇଥିଲେ ପୂର୍ବରେ ଯେହି । ୮୩ ।
ବୃଷ ଧନୁ ଯୁକ୍ତ ରାମଚନ୍ଦ୍ର ସଜ୍ଜନେ ।
ବନ୍ଦ୍ୟାକୁ ସେ ଶ୍ରୁତିରୂପ ବିଦ୍ୟାଧର ଯେ । ୮୪ ।
ବନସ୍ଥି ଦାସ ପ୍ରକାରେ ଶାରଦା ଯାର ।
ବଣା ଲେଉଁ ବିଦ୍ୟାଆଦି ସ୍ମୃତି ସାର । ୮୫ ।
ବିଭ୍ରାଣକୁ ଦୁକୂଳ ମନକୁ ଅଣିଲ ।
ବଡ଼ ସ୍ନେହ ପୀତାମ୍ବର ନାମେ ଜାଣିଲ । ୮୬ ।

---

୮୩ତମ ପଦ—ବାହଗ୍ରୀବ—ହୟଗ୍ରୀବ ।

୮୪ତମ ପଦ—ବୃଷ—ବୃଷଗଣ, ଶ୍ରେଷ୍ଠ । ଧନୁଯୁକ୍ତ—ଧନୁର୍ବାଣ ଯୁକ୍ତ, ଧନୁର୍ଦ୍ଧାରୀ । ରାମଚନ୍ଦ୍ର ମନୋହର ଚନ୍ଦ୍ର । ଶ୍ରୁତି—ବେଦ । ବନ୍ଦ୍ୟାକୁ—ବନ୍ଦନୀୟ ବିଦ୍ୟାଧର—ଦେବତା ବିଶେଷ, ବିଦ୍ୟାଭ୍ୟାସୀ ।

୮୫ତମ ପଦ—ଶାରଦା—ସରସ୍ୱତୀ । ସ୍ମୃତିସାର—ସ୍ମୃତିଶ୍ରେଷ୍ଠ ।

---

୮୩ତମ ପଦ—ଯେଉଁ ବିଷ୍ଣୁ ପୂର୍ବେ ହୟଗ୍ରୀବ ରୂପକୁ ଧାରଣ କରିଥିଲେ, ସେହି ବିଷ୍ଣୁ ତାଳ୍ପରେ କିଶୋର ଅବସ୍ଥାକୁ ପ୍ରକାଶ କଲେ । (ଅର୍ଥାତ୍ ଯେ ଇଚ୍ଛାନୁସାରେ ନାନାରୂପ ଧାରଣ କରି ପାରନ୍ତି, ସେ ରାମ ରୂପ ଧାରଣ କରି ବାଲ୍ୟାବସ୍ଥାରୁ କିଶୋର ଅବସ୍ଥାକୁ ପ୍ରାପ୍ତ ହେଲେ )

୮୪ତମ ପଦ—ମନୋହର ଚନ୍ଦ୍ର ଯେଉଁପରି ବୃଷ ରାଶି କିମ୍ବା ଧନୁରାଶିସହ ଅନାୟାସରେ ଯୁକ୍ତ ହୁଅନ୍ତି, ସେହିପରି ସଜ୍ଜନବନ୍ଦନୀୟ ରାମ ଅନାୟାସରେ ଅତି ଉତ୍କୃଷ୍ଟ ଧନୁ ଧାରଣ କରି, ( ଧନୁର୍ବିଦ୍ୟା ଶେଷ କରି ) ବେଦ ବିଦ୍ୟାକୁ ଧାରଣ କଲେ ଅର୍ଥାତ ବେଦ ପଢ଼ା ଆରମ୍ଭ କଲେ ।

୮୫ତମ ପଦ—ସରସ୍ୱତୀ ବନିତା ଦାସୀ ହୋଇ ସବୁବେଳେ ଯାହାଙ୍କ କଣ୍ଠରେ ବିହରୁଅଛନ୍ତି, ସେ ମନୁ ପ୍ରଭୃତି ଶାସ୍ତ୍ର ବିଦ୍ୟାରେ ତାହାଙ୍କ ବା କିଣା ହେବେ ?

୮୬ତମ ପଦ—ରାମଚନ୍ଦ୍ର ପୀତବସ୍ତ୍ର ପରିଧାନ କରୁଥିବାରୁ ଜଣାଯାଏ, ତାଙ୍କର ପୀତବସ୍ତ୍ରରେ ଅଧିକ ଅଧିକ ସ୍ନେହ ଅଛି । ସୁତରାଂ କୌଣସି ଅବସ୍ଥାରେ ମଧ୍ୟ ତାହାକୁ ତ୍ୟାଗ କରୁ ନାହାନ୍ତି ।

ବିସୋର ନୋହି କୃପଣ ଧନର ଭାବ ।
ବପ୍ତା ମାତାମାନଙ୍କର ମାନସୁଁ ଲବ । ୮୭ ।
ବଡ଼ କି ଏ ନଗର ଜନଙ୍କ ଏ ଭାବ ।
ବଖାଣି ହୋଇଲେ ଏକା ସେହି ପ୍ରସ୍ତାବ । ୮୮ ।
ବର୍ଦ୍ଧିତ ସେ ବାଣିଜ୍ୟ ଧନର ପ୍ରକାର ।
ବିଦେଶେ ହୋଇଲା ଦିନୁଁ ଦିନୁଁ ପ୍ରଚାର । ୮୯ ।
ବଳୀବର୍ଦ୍ଦ ଯହିଁ ଜନମୁଖ ହୋଇଲେ ।
ବିକ୍ରୟ ସ୍ଥାନ ସ୍ଥାନରେ ବହି ସେ କଲେ । ୯୦ ।
ବାତ୍ସଲ୍ୟ ରସବର୍ଣ୍ଣନେ ରାମଭଦ୍ରର ।
ବଚନ ମନ ପବିତ୍ର ହୋଇଲା ମୋର । ୯୧ ।
ବୀରବର ଉପେନ୍ଦ୍ର ଭଞ୍ଜ ମୋ ନାମ ।
ବୟାଣୋଇ ପଦେ କଲି ଏ ଛାନ୍ଦ ରମ୍ୟ । ୯୨ ।

---

୮୭ତମ ପଦ—କୃପଣ ଯେପରି ଧନ ସଞ୍ଚୟ କରିବାକୁ କ୍ଷଣେ ମାତ୍ର ପାଶୋରେ ନାହିଁ, ସେହିପରି ପିତାମାତା ଦଣ୍ଡେ ମାତ୍ର ତାହାଙ୍କୁ ମନରୁ ଅନ୍ତର କରୁ ନ ଥିଲେ ।

୮୮ତମ ପଦ—ଅଯୋଧ୍ୟାର ଲୋକମାନେ 'ଏହି ଜଗତରେ ସବୁଗୁଣରେ ବଡ଼ କିଏ ?' ଏହି ପ୍ରଶ୍ନ ନିଜ ନିଜ ମଧ୍ୟରେ ଉଠାଇ ରାମଙ୍କ ନାମ ପ୍ରସ୍ତାବ କରିବାକୁ ଲାଗିଲେ । (ଅର୍ଥାତ୍ ରାମ ସମସ୍ତଙ୍କଠାରୁ ବଡ଼ ବୋଲି ସ୍ଥିର କଲେ) ।

୮୯ତମ ପଦ ବାଣିଜ୍ୟରେ ଧନ ଲଗାଇଲେ ତାହା ଯେପରି ଦିନକୁ ଦିନ ବଢ଼େ, ସେହିପରି ଏହି ପ୍ରସ୍ତାବ ଦିନୁ ଦିନ ବିଦେଶରେ ବ୍ୟାପିଲା ।

୯୦ତମ ପଦ—ବେପାରୀ ଯେପରି ବିକଣ ପଣ୍ୟ ବଳଦ ଉପରେ ଲଦି ସ୍ଥାନାନ୍ତରକୁ ନେଇ ବିକ୍ରୟ କରେ, ସେହିପରି ଲୋକମାନଙ୍କର ମୁଖ ରୂପ ବଳଦ ଏହି ପ୍ରସ୍ତାବକୁ ବୋହି ନେଇ ନାନା ସ୍ଥାନରେ ବିକ୍ରୟ କଲା । (ଅର୍ଥାତ୍ ଏହି କଥା ଲୋକମାନେ ସବୁ ଅଞ୍ଚଳ କହି ବୁଲିଲେ ) ।

୯୧ ଓ ୯୨ତମ ପଦ—ରାମଚନ୍ଦ୍ରଙ୍କର ବାତ୍ସଲ୍ୟ ରସ ବର୍ଣ୍ଣନା କରି ମୋର ମନ ଓ ବଚନ ପବିତ୍ର ହେଲା । ମୋର ନାମ ଉପେନ୍ଦ୍ର ଭଞ୍ଜ, ଏ ଛାନ୍ଦକୁ ବୟାଣୋଇ ପଦରେ ପୂର୍ଣ୍ଣ କଲି ।

## ଷଷ୍ଠ ଛାନ୍ଦ

### ରାଗ—ମାଳବ ଗୌଡ଼ାବାଣୀ

ବୁଧେ ସାବଧାନେ ଏହୁ ଗୀତର । ବାକଗୃହଶ୍ରୀକି ବିସ୍ତର କର ।
ବସୁଇ ସିଦ୍ଧବନେ ମୁନିପାଶ । ବହିଲ୍ଲ କରଣେ ରାକ୍ଷସବର୍ଗ । ୧ ।
ଉଦ୍ଧତ ହୋଇ ସୁବାହୁ ମାରୀଚେ । ବଚନ ଶୂନ୍ୟରୁ ଶୁଭିଲ ଉଚ୍ଚେ ।
ବିକୁକ୍ଷିବଂଶେ ଜାତ ରାମ ଆଣ । ବୈବସ୍ୱତ ଏ ଗଣେ ତା ମାର୍ଗଣ । ୨ ।
ବିଶ୍ୱାମିତ୍ର ଶୁଣି ଉଠି ଗମିଲେ । ବେଗେ କୋଶଳଦେଶ ସେ ଦେଖିଲେ ।
ଦାରସ୍ୱର୍ଗ ଛବି ଅଯୋଧ୍ୟା ପୁରୀ । ବ୍ରହ୍ମ ଆକାରବନ୍ତ ଯେଣୁ ଧରି । ୩ ।
ବରଣେ ଶୋଭେ ଧନ୍ୟ କନ୍ୟା ପରି । ବର ଖୋଜୁଅଛି ସମାନ କରି ।
ବହୁଅଛି ପୁଣି ସୁମନ ମାଳା । ବିପଞ୍ଚି-ବାଦନୀ ଅଳୀରେ ମେଳା । ୪ ।

---

୧ମ ପଦ—ବହିଲ୍ଲକରଣ—ବିଘ୍ନକରିବାକୁ ।

୨ୟ ପଦ—ବିକୁକ୍ଷି ବଂଶ—ସୂର୍ଯ୍ୟବଂଶ । ବୈବସ୍ୱତ—ଯମ । ମାର୍ଗଣ—ଶର ।

୩ୟ ପଦ—ଦାରସ୍ୱର୍ଗ—ବ୍ରହ୍ମଲୋକ ।

୪ର୍ଥ ପଦ—ବରଣ—ବରଣ କରିବା, ପ୍ରାଚୀର ( ବାଡ଼ ) । ଧନ୍ୟ—ଅପୂର୍ବ । ସୁମନମାଳା—ବରଣ ପୁଷ୍ପମାଳା ( ପଣ୍ଡିତ ସମୂହ ) । ବିପଞ୍ଚିବାଦନୀ—ବୀଣାବାଦନୀ, ବୀଣାଜିତ କଣ୍ଠି । ଅଳୀ—ସଖୀ ।

---

## ଷଷ୍ଠ ଛାନ୍ଦ

୧ମ ଓ ୨ୟ ପଦ—ହେ ପଣ୍ଡିତଗଣ ! ସାବଧାନ ହୋଇ ଏହି ଗୀତରେ ଥିବା ବଚନ ଗୃହଶ୍ରୀକୁ ବିସ୍ତାର କରନ୍ତୁ । ଋଷିମାନେ ପବିତ୍ର ସିଦ୍ଧବନରେ ଯଜ୍ଞ କରୁଥିବା ସମୟରେ ସୁବାହୁ, ମାରୀଚ ପ୍ରଭୃତି ଖ୍ୟାତନାମା ରାକ୍ଷସମାନେ ସେଠାରେ ପହଞ୍ଚି ବିଘ୍ନ କରିବାକୁ ଲାଗିଲେ । ଏହି ସମୟରେ ଦୈବବାଣୀ ହେଲା, 'ସୂର୍ଯ୍ୟବଂଶରେ ଜନ୍ମଗ୍ରହଣ କରିଥିବା ରାମଚନ୍ଦ୍ରଙ୍କୁ ଏଠାକୁ ଆଣ; ତାଙ୍କର ବାଣ ଏମାନଙ୍କର ଯମ ଅଟେ ।' ( ଅର୍ଥାତ୍ ତାଙ୍କର ବାଣର ଆଘାତରେ ଏମାନେ ମରିବେ ) ।

୩ୟ ପଦ - ବିଶ୍ୱାମିତ୍ର ସେହି ବାଣୀ ଶୁଣିବା ସଙ୍ଗେ ସଙ୍ଗେ ଉଠି କୋଶଳ ଦେଶକୁ ଗମନ କଲେ । ସେ କୋଶଳର ରାଜଧାନୀ ଅଯୋଧ୍ୟାରେ ପହଞ୍ଚି ଦେଖିଲେ ଯେ, ସେହି ପୁରୀ ବ୍ରହ୍ମଲୋକର ଶୋଭା ଧାରଣ କରିଅଛି, କାରଣ ନିଜେ ବ୍ରହ୍ମ ସେଠାରେ ଶରୀର ଧାରଣ କରିଅଛନ୍ତି ।

୪ର୍ଥ ଓ ୫ମ ପଦ—ଅଉ ମଧ୍ୟ ବିଶ୍ୱାମିତ୍ର ସେହି ନଗରୀକୁ ଦେଖି ସ୍ୱୟଂବର ସଜ୍ଜିତ ଗୋଟିଏ ସ୍ୱୟମ୍ବର କନ୍ୟା ବୋଲି ଭାବିଲେ । କାରଣ—

| | |
|---|---|
| ବିରଳ ମୂଖର-ଉଣ୍ଡିମ ଶୁଣିବ | । ବିମୋହିତ କରେ ଜଗତ ଶୁରେ । |
| ବହୁମୂଲ୍ୟ ବାସ ଅଙ୍ଗୀକାଗ୍ର ଯେ | । ବିହେ ନୃପର ମୋଦକୁ ବିଶେଷେ । |
| ବିଷ୍ଣୁ ପ୍ରେସେ ଲକ୍ଷ୍ମୀ ଅଲିଙ୍ଗନ | । ବିହାର ଚତୁର କରେ ରଞ୍ଜନ । |
| ବିନାଯ୍ୱକରେ ସଦା ଯୁକ୍ତ ସେହି | । ବିପୁଳ ଭକ୍ତିଭାବ ଖ୍ୟାତ ଯହିଁ ।୭। |
| ବାସ୍ତବ୍ୟ ଅପଣ ପଣ୍ୟ କେ ଅଛି | । ବଇଲେ ପଦାର୍ଥ ନ ଛୁଟେ କିଛି ॥ |
| ବଣିଜାର ହସ୍ତ ସ୍ୱର୍ଗ ପ୍ରତୀତ | । ବିଶ୍ୱାବସୁ ଛନ୍ଦ ସବୁ ଜାଣନ୍ତି ।୮। |

---

୭ମ ପଦ—ଲକ୍ଷ୍ମୀ—ଲକ୍ଷ୍ମୀଦେବୀ, ସମ୍ପତ୍ତି । କର—ହସ୍ତ, ପୁରୁଷ । ବିନାଯ୍ୱକ—ଗରୁଡ଼, ବିଶିଷ୍ଟ ଲୋକ । ଭକ୍ତ—ଭକ୍ତଲୋକ, ଭାତ ।

୮ମ ପଦ—ଅପଣ—ଦୋକାନ । ବଣିଜାର—ବଣିକ । ବିଶ୍ୱାବସୁ—ଗନ୍ଧର୍ବ ; ବିଶ୍ୱା ପ୍ରଭୃତି ପରିମାପକ ଚିହ୍ନ ।

---

ସ୍ୱୟମ୍ବରା କନ୍ୟା ଯେପରି ଅପୂର୍ବ ବେଶ ଧାରଣ କରି ବୀଣା ବୀଣାବାଦିନୀ ସଖୀମାନଙ୍କ ସହ ବରଣ ଫୁଲମାଳ ହାତରେ ଧରି, ନିଜ ସମାନ ବର ଖୋଜି ବୁଲୁଥାଏ ଏବଂ ଶୁଭବାଦ୍ୟ ସେହି ସଭା ସ୍ଥଳରେ ବାଜୁଥାଏ ଅଥବା ହୁଳହୁଳି ପଡୁଥାଏ, ସେହି ସ୍ଥାନସ୍ଥ ଶୁଭ୍ର ସଭାମଣ୍ଡପ ବହୁମୂଲ୍ୟ ବସ୍ତ୍ରରେ ( ଗୁନ୍ଥା ପ୍ରଭୃତିରେ ) ଅଚ୍ଛାଦିତ ହୋଇ ଦର୍ଶକମାନଙ୍କର ମନ ଓ ନିମନ୍ତ୍ରିତ ରାଜାମାନଙ୍କର ମନକୁ ଅନନ୍ଦିତ କରୁଥାଏ ; ସେହିପରି ଏହି ନଗରୀ ପ୍ରାଚୀର ବେଷ୍ଟିତା ହୋଇ ବୀଣା ବାଦ୍ୟନିପୁଣା ସ୍ତ୍ରୀମାନଙ୍କ ସହ ମିଳି, ପଣ୍ଡିତମାନଙ୍କୁ ନିଜ ବକ୍ଷରେ ସ୍ଥାନ ଦେଇ, ନିଜର ଅନୁରୂପ ବର ରାମଚନ୍ଦ୍ରଙ୍କୁ ଖୋଜୁଛି ଅର୍ଥାତ୍ ତାହାଙ୍କର ରାଜତ୍ୱ ସମୟକୁ ଚାହିଁ ରହିଛି ଏବଂ ଏଠାର ମଧ୍ୟଭାଗ ଅନବରତ ମଙ୍ଗଳବାଦ୍ୟ ନାଦରେ ସଂସାରସ୍ଥ ଲୋକମାନଙ୍କୁ ବିମୋହିତ କରି ବହୁମୂଲ୍ୟ ପତାକାଗର ଓ ପଟ୍ଟବସ୍ତ୍ର ପ୍ରଭୃତିରେ ପୂର୍ଣ୍ଣହୋଇ ଅର୍ଥାତ୍ ଅତ୍ୟନ୍ତ ସମୃଦ୍ଧିଶାଳିନୀ ହୋଇ ରାଜା ଦଶରଥଙ୍କର ଅନନ୍ଦ ବର୍ଦ୍ଧନ କରୁଅଛି ।

୭ମ ପଦ—ଆଉ ମଧ୍ୟ ନଗରୀକୁ 'ବିଷ୍ଣୁ କି ?' ବୋଲି ମନେ କଲେ, କାରଣ, ବିଷ୍ଣୁ ଯେପରି ଲକ୍ଷ୍ମୀଙ୍କୁ ଆଲିଙ୍ଗନ କରନ୍ତି, ଚତୁର୍ଭୁଜ ଧାରଣ କରି ଗରୁଡ଼ ଉପରେ ବିହାର କରନ୍ତି ଏବଂ ଭକ୍ତମାନଙ୍କ ନିକଟରେ ନିଜର ମନୋଗତ ଭାବ ପ୍ରକାଶ କରିଥାନ୍ତି; ସେହିପରି ଏହି ନଗରୀ ସମ୍ପତ୍ତିକୁ ଆଲିଙ୍ଗନ କରିଅଛି ( ଅର୍ଥାତ୍ ବହୁ ଧନରେ ପୂର୍ଣ୍ଣ ହୋଇଅଛି ) । ଅନେକ ଚତୁରଲୋକ ଏଠାରେ ବିହାର କରୁଅଛନ୍ତି, ଏହା ବିଶିଷ୍ଟ ଲୋକମାନଙ୍କ ଦ୍ୱାରା ପୂର୍ଣ୍ଣ ହୋଇ ଖ୍ୟାତ ହୋଇଅଛି ଏବଂ ପ୍ରଚୁର ଅନ୍ନଦାନ ଏଠାରେ ହେଉଅଛି ।

୮ମ ପଦ—ବାସ୍ତବିକ୍ ଅଯୋଧ୍ୟାର ଦୋକାନମାନଙ୍କ ପରି ଦୋକାନ ଅନ୍ୟ କୌଣସିଠାରେ ନାହିଁ, କାରଣ, ଦୋକାନମାନେ ଯେତେ ପଦାର୍ଥ

ବନ୍ଧୁକୁମୁଦ୍ୱର କି ତନ୍ତ୍ରବାଦ୍ୟ । ବିଶଦ ନୀଳ ଅମ୍ବର ଉଦୟ ।
ବ୍ରଜନିକର ଜାହ୍ନବୀ ଲକ୍ଷଣେ । ବିଶୁଦ୍ଧ ପୟ ଉଦୟ କରନ୍ତେ ।୮।
ରଣିତ ସପସ୍ୱ କି କଇଳାସ । ବିସ୍ତରେ ଶିବା କପର୍ଦ୍ଦୀ ଅଶ୍ଳେଷ ।
ବଳିସଦ୍ମ ପଣ୍ୟ ନାଗରେ ଶୁଣ୍ଠୁ । ବ୍ୟୋମ କି ଚନ୍ଦ୍ର ତାରଳ ସଙ୍ଗରୁ ।୯।

---

୮ମ ପଦ—କୁମୁଦ୍ୱର ବନ୍ଧୁ—ଚନ୍ଦ୍ର । ତନ୍ତ୍ରୁବାଦ୍ୟ—ତନ୍ତ୍ରୀ । ବିଶଦ= ବିସ୍ତୀର୍ଣ୍ଣ, ଶୁଭ୍ର । ଅମ୍ବର—ଆକାଶ, ବସ୍ତ୍ର । ବ୍ରଜନିକର—ଗଉଡମାନେ । ଜାହ୍ନବୀ ଗଙ୍ଗା । ପୟ—ଜଳ, ଦୁଧ ।

୯ମ ପଦ—ଉମା ହଳଦୀ, ହରିଦ୍ରା । କପର୍ଦ୍ଦୀ—ଶିବ, କଉଡି । ବଳିସଦ୍ମ—ପାତାଳ । ନାଗରେ—ସାପରେ, ଶୁଣ୍ଠୀରେ,—ସାଂସାରେ । ଚନ୍ଦ୍ର-କର୍ପୂର, ସୁବର୍ଣ୍ଣ । ତାରଳ—ତାରାସମୂହ, ଶୁଦ୍ଧ ମୁକ୍ତା ସମୂହ ।

---

ବିକ୍ରୟ କଲେ ମଧ୍ୟ ଦୋକାନରୁ ପଦାର୍ଥ ଶେଷ ହେଉ ନାହିଁ ଏବଂ ଦୋକାନମାନଙ୍କ ହାଟକୁ ଦେଖିଲେ ତାହା ସ୍ୱର୍ଗ ପରି ବୋଧ ହେଉଛି । ଯେହେତୁ ସ୍ୱର୍ଗରେ ବିଶ୍ୱାବସୁ ପ୍ରଭୃତି ଗନ୍ଧର୍ବମାନେ ସବୁବେଳେ ବାସ କଲ ପରି ସେମାନଙ୍କ ହାଟରେ ବିଶ୍ୱା ପ୍ରଭୃତି ( ଧନ ଦ୍ରବ୍ୟ ଓଜନ କରିବା ପାଇଁ ) କଟକର ସର୍ବଦା ରହିଅଛି ।

୯ମ ପଦ—ସେଠାକାର ତନ୍ତ୍ରୀମାନଙ୍କୁ ଦେଖି ଚନ୍ଦ୍ର ବୋଲି ମନେ କଲେ କାରଣ, ଚନ୍ଦ୍ର ଯେପରି ବିସ୍ତୀର୍ଣ୍ଣ ନୀଳ ଆକାଶରେ ଉଦୟ ହୁଅନ୍ତି; ତନ୍ତ୍ରୀମାନେ ସେହିପରି ଶୁକ୍ଳ ଓ ନୀଳ ବସ୍ତ୍ର ବୁଣୁଥିଲେ । ଗୌଡ଼ମାନଙ୍କୁ ମଧ୍ୟ ଗଙ୍ଗାନଦୀ ବୋଲି ମନେ କଲେ, ଗଙ୍ଗା ନଦୀରୁ ଯେପରି ବିଶୁଦ୍ଧ ଜଳ ମିଳେ; ଏମାନଙ୍କଠାରୁ ସେହିପରି ଖାଣ୍ଟି ଦୁଧ ମିଳେ ।

୯ମ ପଦ—ବେପାରିମାନଙ୍କ ପସରାକୁ ଦେଖି କୈଳାସ ପର୍ବତ ବୋଲି ମନେ କଲେ । କାରଣ—ସେହି ପର୍ବତରେ ଶିବ ପାର୍ବତୀଙ୍କୁ ଆଲିଙ୍ଗନ କରି ବିରାଜିତ ହୋଇଥାନ୍ତି । ଏଠାରେ କଉଡ଼ି ଓ ହରିଦ୍ରା ଏକତ୍ର ଜମାହୋଇ ଅଛନ୍ତି ଆଉ ମଧ୍ୟ ପାତାଳ ବୋଲି ଭାବିଲେ, ଯେହେତୁ ସେଠାରେ ବହୁତ ନାଗସାପ ଥାନ୍ତି, ଏଠାରେ ମଧ୍ୟ ବହୁତ ଶୁଣ୍ଠି ଜମା ହୋଇଅଛି ଅଥବା ସୀସା ରଖାଯାଇ ଅଛି । ଆକାଶ ବୋଲି ମଧ୍ୟ ମନେ କଲେ, ଯେହେତୁ ଆକାଶ ତାରକାରେ ମଣ୍ଡିତ ହୋଇ ଥିବ ପସରାରେ ବହୁତ ମୁକ୍ତା ରଖାଯାଇ ଅଛି ।

ବାରିଧିକୁମାରୀ ପରି ମାଳତୀ । ବିସ୍ତାରି ସୁମନା-ଭଦ୍ର ଶ୍ରୀଦାନ୍ତୀ ।
ଦେଖିଲେ ପାତ୍ରଗଣ ସାବଧାନେ । ତପେ ତଂସାରି ସଜନ ଯେସନେ ।୧୦।
ବିଲୋକି ବିଲୋକି ମୁନି ଯେ ଗଲେ । ଚାରଣବପ୍ରଦ୍ୱାରେ ଯାଇଁ ହେଲେ ।
ବେତ୍ରହସ୍ତ ପ୍ରତିହାରୀ ଜଣାଇ । ବଶିଷ୍ଠ ଶ୍ରେଷ୍ଠଙ୍କୁ ଭେଟାଇ ନେଇ ।୧୧।
ବ୍ରହ୍ମାଙ୍କୁ ଇନ୍ଦ୍ର ସ୍ତୁତି କଲାପରି । ବିଜୟୀ ଦଶରଥ ଦଣ୍ଡଧାରୀ ।
ବେଦାନ୍ତଚାରୀ ସାବିତ୍ରୀ ସେବନ । ବିଶେଷ ନେତ୍ର ସୁଖଦ ବିଜନ ।୧୨।

---

୧୦ମ ପଦ—ବାରିଧି କୁମାରୀ—ଲକ୍ଷ୍ମୀ । ସୁମନା—ଇଚ୍ଛାବତୀ ସ୍ତ୍ରୀ, ମାଳତୀ ପୁଷ୍ପ । ଭଦ୍ର—ଚନ୍ଦନ । ସୁମନା ଭଦ୍ର—ଦେବଶ୍ରେଷ୍ଠ । । ଶ୍ରୀଦାନ୍ତୀ—ସୌନ୍ଦର୍ଯ୍ୟ ଦାତ୍ରୀ । ପାତ୍ରଗଣ—କଂସାତାଟିଆ ପ୍ରଭୃତି, ମନ୍ତ୍ରୀସମୂହ ।

୧୧ଶ ପଦ—ଚାରଣ ବପ୍ରଦ୍ୱାର—ସିଂହଦ୍ୱାର । ବଶିଷ୍ଠଶ୍ରେଷ୍ଠ—ଋଷିଙ୍କ ଶ୍ରେଷ୍ଠ ।

୧୨ଶ ପଦ—ବିଶେଷ ନେତ୍ର—ବହୁ ନେତ୍ର । ସୁଖଦ—ସୁଖଦାତା । ଅନ୍ୟତ୍ର—ବିଶେଷ ନେତ୍ର ସୁଖଦ—ନୟନାଭିରାମ ( ସର୍ବଜନ ଦର୍ଶନୀୟ ) । ବିଜନ—ଏକାନ୍ତ ।

---

୧୦ମ ପଦ—ପୁଷ୍ପ, ଚନ୍ଦନ ଓ କର୍ପୂର ପ୍ରଭୃତି ଦେଉଥିବା ମାଲୁଣୀମାନଙ୍କୁ ଦେବ ଶ୍ରେଷ୍ଠ ବିଷ୍ଣୁଙ୍କର ଶୋଭା ବୃଦ୍ଧିକାରିଣୀ ଲକ୍ଷ୍ମୀ ଓ କଂସା ଲୋଟା ପ୍ରଭୃତି ବାସନ ପରିବେଷ୍ଟିତ କଂସାରୀମାନଙ୍କୁ ମନ୍ତ୍ରୀଗଣ ପରିବେଷ୍ଟିତ ରାଜାପରି ମନେକଲେ ।

୧୧ଶ ପଦ—ବିଶ୍ୱାମିତ୍ର ଏହିପରି ଦେଖି ଯାଉଁ ଯାଉଁ ରାଜାଙ୍କର ସିଂହଦ୍ୱାରରେ ପ୍ରବେଶ ହେଲେ । ବେତ୍ରହସ୍ତ ପ୍ରତିହାରୀ ରାଜାଙ୍କୁ ଜଣାଇ ତାଙ୍କ ନିକଟରେ ଋଷିଙ୍କୁ ଉପସ୍ଥିତ କରାଇଲା ।

୧୨ଶ ପଦ—ସହସ୍ରଲୋଚନାଧିପତି ସମସ୍ତଙ୍କର ସୁଖଦାତା ଇନ୍ଦ୍ର ଏକାନ୍ତରେ ବିଜୟୀ ହୋଇ ବେଦର ଉଦ୍ଭବକର୍ତ୍ତା ସାବିତ୍ରୀଦେବୀଙ୍କ ଦ୍ୱାରା ସେବିତ ବ୍ରହ୍ମାଙ୍କୁ ସ୍ତୁତି କଲା ପରି, ସର୍ବଜନ ଦର୍ଶନୀୟ ( ରାଜା ଓ ସୁନ୍ଦର ହେତୁ ) ଶାସନକର୍ତ୍ତା ଦଶରଥ ଏକାନ୍ତରେ ବିଜୟୀ ହୋଇ ବେଦାନ୍ତଶାସ୍ତ୍ରବର୍ତ୍ତୀ ସାବିତ୍ରୀ ମନ୍ତ୍ରୋପାସକ ବିଶ୍ୱାମିତ୍ରଙ୍କୁ ସ୍ତୁତି କରୁଥିଲେ ।

ବନବାସୀ ବରସଙ୍ଗ ଲେଖିତ । ବିରାଟ୍‌ମୂର୍ତ୍ତି କି ଜାବାଲି ଯୁକ୍ତ ।
ବାମଦେବ ଯେଣୁ କୈଳାସ ସ୍ଥାନ । ବେଦ କି ସୁମନ୍ତ୍ରରେ ବିଦ୍ୟମାନ ।୧୩।
ବଶିଷ୍ଠ ପୁଚ୍ଛନ୍ତେ କମର୍ଥେ ଆଗତ । ବ୍ୟକ୍ତ କଲେ ଗାଧିରାଜସୁତ ।
ବିବୁଧରିପୁ ସେ ହୋଇ ଏକତ୍ରିତେ । ବିଧ୍ୱଂସି ସୁନ୍ଦ ଉପସୁନ୍ଦ ସୁତେ ।୧୪।
ବିହାୟସୁଁ ସମବାଣୀ ଶ୍ରବଣ । ବଧି ରକ୍ଷଗଣ ହେବ ରକ୍ଷଣ ।
ବଦାନ୍ୟ ଏ ରାଜା ଧର୍ମ ଉଦ୍‌ବେଶୀ । ବିଶେ ଏ ଆସିଛୁଁ ରାମକୁ ମାଗି ॥
ବଜ୍ରୀ ହେଉଛ ମୁନି ! ରାଜା କହୁ । ବସୁଧାଭୃତ ତ ସ୍ୱଭାବେ ମୁହିଁ ।
ବର-ଦମ୍ଭୋଳି ମାରି ଦନ୍ତ-ଶୃଙ୍ଗ । ବିନା ଅପରାଧେ କରୁଛ ଭଙ୍ଗ ।୧୫।

---

୧୩ଶ ପଦ—ବନବାସୀ—ଋଷି (ବିଶ୍ୱାମିତ୍ର) ଜାବାଳି—ପୃଥ୍ୱୀଦେବ, ଦଶରଥଙ୍କର ମନ୍ତ୍ରୀ । ବାମଦେବ—ଶିବ, ଅନ୍ୟମନ୍ତ୍ରୀ । ସୁମନ୍ତ୍ର—ଉତ୍ତମ ମନ୍ତ୍ର, ଅପର ମନ୍ତ୍ରୀ ।

୧୫ଶ ପଦ—ବଜ୍ରୀ—ଇନ୍ଦ୍ର । ବସୁଧାଭୃତ—ରାଜା, ପର୍ବତ । ଦମ୍ଭୋଳି—ବଜ୍ର ।

---

୧୩ଶ ପଦ—ବିଶ୍ୱାମିତ୍ର ରାଜାଙ୍କର ବିରାଟ ସଭାକୁ ଦେଖି, ଏହା ବିରାଟ୍ ମୂର୍ତ୍ତି, କୈଳାସ ପର୍ବତ ଓ ବେଦର ସମକକ୍ଷ ବୋଲି ମନେ କରିଥିଲେ । କାରଣ—ବିରାଟ୍ ମୂର୍ତ୍ତିରେ ପୃଥିବୀ, କୈଳାସରେ ଶିବ ଏବଂ ବେଦରେ ଉତ୍ତମ ମନ୍ତ୍ରମାନେ ଥାଆନ୍ତି, ଏହି ସଭାରେ ଜାବାଳି, ବାମଦେବ ଓ ସୁମନ୍ତ୍ର ପ୍ରଭୃତି ମନ୍ତ୍ରୀମାନେ ଉପସ୍ଥିତ ହୋଇ ଅଛନ୍ତି ।

୧୪—୧୫ଶ ପଦ—ବଶିଷ୍ଠ ବିଶ୍ୱାମିତ୍ରଙ୍କୁ ଆଗମନର କାରଣ ପଚାରିବାରୁ ସେ କହିଲେ, "ସୁନ୍ଦ ଉପସୁନ୍ଦ ଏହି ଦୁଇ ରାକ୍ଷସଙ୍କର ପୁତ୍ର ସୁବାହୁ ଓ ମାରୀଚ ଅନ୍ୟାନ୍ୟ ରାକ୍ଷସମାନଙ୍କ ସହିତ ଆସି, ମୋର ଯାଗ ଧ୍ୱଂସ କରିବା ସମୟରେ ଆକାଶରୁ ଶୁଣାଗଲା ରାମଙ୍କୁ ଆଣ, ସେ ଏହି ରାକ୍ଷସମାନଙ୍କୁ ମାରି ଯାଗରକ୍ଷା କରିବେ । ଏହି ରାଜା ଅତିଶୟ ଧାର୍ମିକ ଓ ଦାତା ଅଟନ୍ତି, ଏଣୁ ରାମଙ୍କୁ ମାଗିବାକୁ ଆସିଅଛୁ ।"

୧୬ଶ ପଦ—ଏହା ଶୁଣି ଦଶରଥ କହିଲେ, "ହେ ମୁନି ! ମୁଁ ପ୍ରକୃତରେ ରାଜା ଅଟେ; ଇନ୍ଦ୍ରଙ୍କପରି ଆପଣ ମୋତେ ପର୍ବତ ବୋଲି ଭାବି ବିନା ଅପରାଧରେ ବଚନ ରୂପ ବଜ୍ର ମାରି ମୋର ଧୈର୍ଯ୍ୟରୂପ ଶୃଙ୍ଗକୁ ଚୂନା କରୁଛନ୍ତି । ( ଇନ୍ଦ୍ର ବଜ୍ର ମାରି ପର୍ବତମାନଙ୍କର ପକ୍ଷ ଛେଦନ କରିଥିଲେ ) ।

ବାଟୀ କ୍ରୀଡ଼ାକୁ ଛାଡ଼ି ନାହିଁ ଯେହୁ । ବାଣ ଧନୁ ଯେ ବାଂଟିବାରେ ବହୁ ।
ବେଶ୍ମନ୍ତେ ରହିବାକୁ ଏଚ୍ଛା କରଇ । କାଣ୍ଡମନେ ଦୈତ୍ୟ ନାଶିବ କେହୁ ॥
ବୋଇଲ ମୁଁ ସୈନ୍ୟ ସଜ କରି ଯିବି । ବାଦ କରି ତୁମ୍ଭ ଯାଗ ରକ୍ଷିବି ।
ତୁମ୍ଭଙ୍କୁ ଯେ ଜାଣେ ମୁନି ମଣି । ବାମା କବଚ କି କହିବୁ ପୁଣି ।୮।
ବାଳକ ନ ବୋଲ ରାମଙ୍କୁ ତୁହି । ବହ୍ନି କ୍ଷୁଦ୍ର ଭସ୍ମ ଅଛନ୍ତେ ଥାଇ ।
ବଢ଼ାଏ ପ୍ରଜ୍ୱ ସେ ପାଇ ଇନ୍ଧନ । ବଧିବେ ଦୈତ୍ୟ ଶଲଭ ଯେସନ ।୯।
ବାମନ ଦେବେ ବଳୀ ଅଧୋଗତ । ବିଗ୍ଭରଛନ୍ତି ବିଚାର ତୋ ମତ ।
ବିଷ୍ଣୁ ସେ ବୋଇଲେ ଅଜନନ୍ଦନ । ବୋଲେ ଋଷି ଏବେ ମନରେ ସେନ ॥

---

୧୭ଶ ପଦ—ବାଟୀକ୍ରୀଡ଼ା—ଗୋଲି ଖେଳ । ବାଂଟିବା—ବାଣ୍ଟିବା । ବେଶ୍ମ—ଘର । କାଣ୍ଡ—ବିଗ୍ଭର ।
୧୮ଶ ପଦ—ବାମା କବଚ—ସ୍ତ୍ରୀ ରକ୍ଷିତ ।
୧୯ ପଦ—ବହ୍ନି କ୍ଷୁଦ୍ର—ଅଗ୍ନି କଣା । ଭସ୍ମ—ପାଉଁଶ । ଇନ୍ଧନ—କାଷ୍ଠ । ଶଲଭ—ପତଙ୍ଗ ।

---

୧୭ଶ ପଦ—ପୁନର୍ବାର ରାଜା କହିଲେ, "ଯେ ଏ ପର୍ଯ୍ୟନ୍ତ ବାଟୀ ଖେଳ ଛାଡ଼ି ନାହିଁ, ବାଉଁଶର ଧନୁଶର ଧରି ବୁଲୁଛି ଏବଂ ଏକାକୀ ଘରେ ରହିବାକୁ ଭାବୁଛି; ସେ କିପରି ଅସୁରଙ୍କୁ ମାରିବ ? ଏହା ବିଗ୍ଭର କର ।"

୧୮ଶ ପଦ—ପୁଣି କହିଲେ, "ଆପଣ କହିଲେ ମୁଁ ସୈନ୍ୟସହ ଯାଇ ରାକ୍ଷସମାନଙ୍କ ସଙ୍ଗରେ ଯୁଦ୍ଧ କରି ଯାଗ ରକ୍ଷା କରିବି ।" ଏହା ଶୁଣି ଋଷି କହିଲେ, "ମୁଁ ତୁମ୍ଭର ଯୋଦ୍ଧାପଣ ଭଲ କରି ଜାଣେ । ତୁମ୍ଭେ ବାମା-କବଚ ଅଟ । ଅର୍ଥାତ୍ ତୁମ୍ଭ ସ୍ତ୍ରୀ ତୁମ୍ଭଙ୍କୁ ପରଶୁରାମଙ୍କ ଭୟରୁ ରକ୍ଷା କରିଥିଲେ । (ଅତଏବ ତୁମ୍ଭେ ଯାଇ କଣ କରିବ ? )

୧୯ଶ ପଦ—"ହେ ରାଜା ! ତୁମ୍ଭେ ରାମଙ୍କୁ ବାଳକ ମନେ କର ନାହିଁ । ଅଗ୍ନି କଣା ଯେପରି ପାଉଁଶ ଭିତରେ ରହିଥାଏ, ମାତ୍ର କାଠ ପାଇଲେ ନିଜର ତେଜରେ ବଢ଼ି ପତଙ୍ଗମାନଙ୍କୁ ନାଶ କରେ, ସେହିପରି ରାମ ରାକ୍ଷସ-ମାନଙ୍କୁ ନାଶ କରିବେ ।"

୨୦ଶ ପଦ—"ହେ ରାଜା ! ତୁମ୍ଭେ ବିଚାରକର । ବାମନ ଦେବେ ଛୋଟ, ସେ ପୁଣି ବଳିକି ପାତାଳରେ ଚାପିଲେ ।" ଏହା ଶୁଣି ଦଶରଥ କହିଲେ, "ସେ ବିଷ୍ଣୁ ।" ଋଷୀ କହିଲେ, "ତାଙ୍କୁ ଓ ଏହାଙ୍କୁ ଏକ ବୋଲି ଜାଣ ଅର୍ଥାତ ଏ ସେହି ବିଷ୍ଣୁ ।"

ଭୃଗୁପୃଷ୍ଠ କର ଯେ ଜ୍ୟେଷ୍ଠ ହୋଇ । ବନପଶୁ ଶିଶୁ ଗଜ ମାରଇ ।
ତାରକାରଣର ଷଢ଼ିସ୍ଥ ସୁତ । ବ୍ୟାଜ ନ କର ରାମ ଦେ ତ୍ୱରିତ ।୨୧।
ବୋଲନ୍ତି କଉଶିକ ରାଘବ ଅସି । ବେଢ଼ଭରଣ ସିନ୍ଧୁରେ ଯାଏ ଦିଶି ।
ଜାତର ଲୀଳାରେ ମହାରଞ୍ଜନ । ବ୍ୟଥିତ ତମିରେ ଗ୍ରସ୍ତ ସଜ୍ଜନ ।୨୨।
ବଚେବେ ସ୍ୱୟମ୍ଭୁ ଅସ୍ୱଭୂ ଶଚେ । ବିଧାନ ମୁନି ରାମର ଉଚିତେ ।
ତପେ ମାନ୍ୟ କରି ଆଶିଷ ପାଇ । ବୋଲି ରାମ ଯାନ୍ତି କୌଶିକ କହି ।୨୩।

---

୨୧ଶ ପଦ—ଭୃଗୁପୃଷ୍ଠ କର—ଜନ କର (ହେଉ) । ବନପଶୁ ଶିଶୁ—ସିଂହ ଛୁଆ । ବ୍ୟାଜ—କପଟ ।

୨୨ଶ ପଦ—କଉଶିକ—ବିଶ୍ୱାମିତ୍ର । ରାଘବ—ରାମ; ରାଘବ ମାଛ । ସିନ୍ଧୁ—ସମୁଦ୍ର । ଜାତର—ଲକ୍ଷ୍ମୀ; ଅଲକ୍ଷଣ । ତମିର—ଅନ୍ଧକାର; ତମି ମାଛର ।

୨୩ଶ ପଦ—ବଚେବେ—ବିଚାରିଲେ ( ମନେ କଲେ ) । ସ୍ୱୟଂଭୂ—ବ୍ରହ୍ମା । ଅସ୍ୱଭୂ—କନ୍ଦର୍ପ ।

---

୨୧ଶ ପଦ—'ସିଂହ ଛୁଆ ଜନ୍ମ ହେବାର ଅଳ୍ପଦିନ ପରେ ହାତୀକୁ ମାରେ, ଏହି କଥା ମନରେ ହେଉ । ଅତଏବ ତାରକାରଣର ଷଢ଼ୀସ୍ଥ ସୁତ ରାମଙ୍କୁ ସାଧାରଣ ବାଳକ ତୁଲ୍ୟ ନ ଭାବି କପଟ ତେଜି, ଶୀଘ୍ର ଦିଅ ।

୨୨ଶ ପଦ—ବିଶ୍ୱାମିତ୍ର ଏହିପରି କହୁ କହୁ ରାଘବ ମାଛ ସମୁଦ୍ରରେ ଦେଖା ଦେଲା ପରି ସମୁଦ୍ର ତୁଲ୍ୟ ଅତି ବିସ୍ତୀର୍ଣ୍ଣ ବେଢ଼ଭରଣ ମଣ୍ଡପ ଉପରେ ରାମଚନ୍ଦ୍ର ଦେଖା ଦେଲେ । ରାଘବ ଲକ୍ଷ୍ମୀରେ ଖେଳି ବୁଲିଗଲେ ତମି ମାଛ ( ତାହାର ଖାଦ୍ୟ ) ଯେପରି ଦୁଃଖଗ୍ରସ୍ତ ହୁଏ; ସେହିପରି ଦଶରଥ ବେଢ଼ଭରଣ ମଣ୍ଡପ ଉପରେ କ୍ରୀଡ଼ା କରୁଥିବା ରାମଙ୍କୁ ଦେଖି 'ତମିର ଗ୍ରସ୍ତ' ଘୋର ଅନ୍ଧକାର କବଳିତ ଲୋକ ପରି ଦୁଃଖ ଅନୁଭବ କଲେ ।

୨୩ଶ ପଦ—ରାମଚନ୍ଦ୍ର ମୁନିଙ୍କୁ ବ୍ରହ୍ମା ଓ ମୁନି ରାମଙ୍କୁ କନ୍ଦର୍ପ ବୋଲି ମନେ କଲେ । ରାମ ମୁନିଙ୍କୁ ଯଥୋଚିତ ମାନ୍ୟ କରି ଆଶୀର୍ବାଦ ପାଇ ବସିଲେ ଏବଂ ବିଶ୍ୱାମିତ୍ର ରାମଙ୍କୁ ସଙ୍ଗରେ ନେଇ ଯିବାପାଇଁ ଅନୁମତି ମାଗିଲେ ।

ବାଚଂଯମଭୂତ ନୃପ ପାଇଲେ । ବାତୁଳ ପ୍ରାୟେ ତପସ୍ୱୀ ଜାଣିଲେ ।
ବିବେଚନ ଏ ବଶିଷ୍ଠ ମନକୁ । ବୋଇଲେ ଏ ଋଷି ନେଉ ରାମକୁ ॥
ବଲ୍ଗୁବକ୍ତ୍ରକୁ ନୃପର ଯେଣି । ବାହାରିଲେ ରାମ ଲକ୍ଷ୍ମଣ ବେନି ।
ବିଳମ୍ବ ନ କରି ସରଯୂ ପାରି । ବିଗମ୍ୟ ଅରଣ୍ୟ ମଧ୍ୟେ ବିହରି ।୧୫।
ବୋଲଇ ତାମସୀ ଯେ ସେ ବାହାର । ବଢ଼ାଇ ଦେଇ ସନ୍ଧ୍ୟାଛଳେ କର ।
ବାରୁଣୀ କୁଣ୍ଡେ ବୁଡ଼ାଇ ଇନକୁ । ବିନାଶ କରିବା ଇଚ୍ଛି ଦିନକୁ ।୧୬।
ବାଉ ଧରି କିବା ନେଇ ଆକର୍ଷି । ବାୟସଚୟ ଯିବା ତଥା ଦିଶି ।
ବୋଲିଦେଲା ପକ୍ଷିନାଦ ଛଳରେ । ବଦନେ କାଳି ପଡ଼ିଲା ଦିଗରେ ।୧୭।

---

୧୪ଶ ପଦ—ବାଚଂଯମଭୂତ—ମୌନୀ, ଚୁପ । ବାତୁଳ—ଅଗ୍ନି । ବିବେଚନ—ଅବୁଝାକର ।

୧୫ ପଦ—ବକ୍ତ୍ର, ବଲ୍ଗୁ—ମୁଖ ଭଙ୍ଗୀ । ବିଗମ୍ୟ—ଅଗମ୍ୟ

୧୬ଶ ପଦ—ତାମସୀ—ରାତ୍ରି । ବାରୁଣୀକୁଣ୍ଡ—ପଶ୍ଚିମଦିଗ ରୂପ କୁଣ୍ଡ । ଇନ—ସୂର୍ଯ୍ୟ ।

୧୭ଶ ପଦ—ବାୟସଚୟ—କାକସମୂହ ।

---

୧୪ଶ ପଦ—ବିଶ୍ୱାମିତ୍ରଙ୍କ କଥା ଶୁଣି ରାଜା ତୁନି ହୋଇ ରହିଲେ । ଋଷି କ୍ରୋଧରେ ଅଗ୍ନି ପରି ଜଳି ଉଠିଲେ । ରାଜାଙ୍କର ଏପରି ଆଚରଣ ବଶିଷ୍ଠଙ୍କୁ ଭଲ ନ ଲାଗିବାରୁ, 'ରାମଙ୍କୁ ବିଶ୍ୱାମିତ୍ର ନିଅନ୍ତୁ' ବୋଲି ରାଜାଙ୍କୁ କହିଲେ ।

୧୫ଶ ପଦ—ବଶିଷ୍ଠଙ୍କ କଥାରେ ରାଜା ସ୍ୱୀକାର କରିବାରୁ ତାଙ୍କ ମୁଖ ଭଙ୍ଗୀରୁ ଜାଣିପାରି ବିଶ୍ୱାମିତ୍ର ରାମ, ଲକ୍ଷ୍ମଣ ଦୁହିଙ୍କୁ ସଙ୍ଗରେ ନେଇ ବାହାରିଲେ ଏବଂ ଅଳ୍ପ ସମୟ ମଧ୍ୟରେ ସରଯୂ ନଦୀ ପାରି ହୋଇ ଅଗମ୍ୟ ଜଙ୍ଗଲରେ ପ୍ରବେଶ କଲେ ।

୧୬ଶ ପଦ—ଏହି ସମୟରେ ରାତ୍ରି ସନ୍ଧ୍ୟା ଛଳରେ ହାତ ବଢ଼ାଇ ସୂର୍ଯ୍ୟଙ୍କୁ ଧରି ପଶ୍ଚିମ ଦିଗ ରୂପ କୁଣ୍ଡରେ ବୁଡ଼ାଇ ଦିନକୁ ନାଶ କରିବାକୁ ଇଚ୍ଛା କଲା (ଅର୍ଥାତ୍ ସୂର୍ଯ୍ୟ ଅସ୍ତହେବାରୁ ସନ୍ଧ୍ୟାକାଳ ଉପସ୍ଥିତ ହେଲା) ।

୧୭ ପଦ—କାକମାନେ ରାବ ଦେଇ ନିଜ ନିଜର ବସାକୁ ଉଡ଼ିଯିବାକୁ ଲାଗିଲେ । ସେମାନଙ୍କୁ ଦେଖି ମନେ ହେଲା, ରାତ୍ରି ଦିବସର ବାୟସରୂପ କେଶକୁ ଟାଣି ତାକୁ ବାହାର କରି ଦେଉଥିବାରୁ ସେ କାନ୍ଦୁଛି କି ? ତତ୍ପରେ ଅନ୍ଧକାର ଚତୁର୍ଦ୍ଦିଗରେ ବ୍ୟାପିଗଲା । ତାହା ଦେଖି ମନେ ହେଲା, ଦିବସ ଏହିପରି ସଙ୍କଟରେ ନିପତିତ ହେବାରୁ ଦିଗମାନଙ୍କ ମୁଖ କଳା ପଡ଼ିଗଲା କି ?

ବିକଟ କାଳକୁ ଚାହିଁ ଦର୍ଶନ । ମୁଦିଲ ପଦ୍ମିନୀ ପଦ୍ମ ନୟନ ।
ବସା ତେଜି କୀଟାଦି ପ୍ରକଟ । କରି ଚରି ମଲେ ହୁଁ ହୁଁ ହୁଁ ରଟ ।
ବିବର ତେଜି ବାହାର୍ ଭୁଜଙ୍ଗେ । ବିକୃତ ଭୟଙ୍କର ହେଲା ଭୃଙ୍ଗେ ।
ବେଳ ଭ୍ରାତା ମୁନି ସଙ୍ଗତେ ରହି । ବଞ୍ଚିଲେ ପ୍ରଭାତ ପ୍ରବେଶ ହୋଇ ।
ବାସବଦିଗ ଅଭ୍ରମୁ କରଣୀ । ବ୍ୟଞ୍ଜନ କଲା ରକ୍ତ ପିଣ୍ଡ ଜାଣି ।
ବିମ୍ବ ସବିତାର ଦିଶି ଅସିତ । ବିଶେଷ କର୍ଣ୍ଣେ ଶୀତ ବାତ ସେ ହେଲା ।

---

୨୮ ଶ ପଦ—ବିକଟ—ଭୟଙ୍କର । ପଦ୍ମିନୀ—ପଦ୍ମଲତା ।

୨୯ଶ ପଦ—ଭୁଜଙ୍ଗେ—ସାପମାନେ, ଜାରସ୍ତୁବୁଧମାନେ । ଭୃଙ୍ଗ—ଅଜଗର ।

୩୦ଶ ପଦ—ବାସବଦିଗ ଅଭ୍ରମୁ କରଣୀ—ପୂର୍ବଦିଗର ଅଭ୍ରମୁନାମକ ହସ୍ତିନୀ(ଐରାବତର ସ୍ତ୍ରୀ ) । ସବିତା—ସୂର୍ଯ୍ୟ । ବିମ୍ବ—ମଣ୍ଡଳ ।

---

୨୮ଶ ପଦ—ଏହିପରି ଭୟଙ୍କର କାଳକୁ ଦେଖି ପଦ୍ମିନୀ ତାହାର ପଦ୍ମରୂପ ଅଖିକୁ ବୁଜି ଦେଲା (ଅର୍ଥାତ ପଦ୍ମ ଫୁଲ ସବୁ ମୁଦି ହୋଇଗଲେ) ଏବଂ ସେଥି ପ୍ରଭୃତି ଜୀବମାନେ ବସା ତ୍ୟାଗ କରି ଗୁପ୍ତ ସ୍ଥାନରେ ବାହାରି ହୁଁ ହୁଁ ଶବ୍ଦ ପ୍ରକାଶ କଲେ ।

୨୯ଶ ପଦ—ଏହି ସମୟରେ ସାପମାନେ ଅନନ୍ଦରେ ବାହାରିଲେ । ବନସ୍ଥଳୀ ବିକୃତାକାର ଧାରଣ କରି ଅଜଗର ଭୟଙ୍କର ବୋଧ ହେଲା । ରାମ ଓ ଲକ୍ଷ୍ମଣ ଦୁଇ ଭାଇ ବିଶ୍ୱାମିତ୍ରଙ୍କ ସଙ୍ଗ ସେହି ଜଙ୍ଗଲ ମଧ୍ୟରେ ରହି ରାତି ଯାପନ କଲେ । ପରେ ପ୍ରଭାତ ହେଲା ।

୩୦ ଶ ପଦ—ସୂର୍ଯ୍ୟ ମଣ୍ଡଳ ଦେଖା ଦେଲା ଅର୍ଥାତ୍ ସୂର୍ଯ୍ୟ ଉଇଁବାକୁ ଲାଗିଲେ ଓ ଶୀତଳ ପବନ ବହିଲା । ଏହା ଦେଖି ଦର୍ଶକର ମନେ ହେଲା ପୂର୍ବଦିଗର ହସ୍ତିନୀ ଅଭ୍ରମୁ ରକ୍ତ ପିଣ୍ଡ ଜନ୍ମ କରି ବସିଛି କି ? ଏଠାରେ ସୂର୍ଯ୍ୟ, ରକ୍ତ ପିଣ୍ଡ ଓ ପ୍ରଭାତ ବାୟୁ ହସ୍ତିନୀର କର୍ଣ୍ଣ ସଞ୍ଚାଳନ ବାୟୁ ରୂପରେ ଉତ୍ପ୍ରେକ୍ଷିତ ହେଲା । (ହାତୀ ପ୍ରଥମେ ରକ୍ତ ପିଣ୍ଡ ଜନ୍ମକରି ପରେ ତାକୁ କାନରେ ବିଞ୍ଚି ଶାବକ ବାହାର କରେ ।)

ବିଚ୍ଛେଦନ କରୁ ତମକୁ କି ସେ । ବଲୈପିତ ଚକ୍ର ରକତ ବଶେ ।
ବର୍ଣ୍ଣିଲେ ଭୟେ ଲଭିଣ ରାତ୍ରିଚର । ବିନାଶକାଳ ଆରମ୍ଭ ଆମ୍ଭର । ୩୧ ।
ବର୍ଣ୍ଣନା ସେମନ୍ତ ଶୁଣିଲ ସେହି । ବିଶ୍ୱାମିତ୍ର ରାମଚନ୍ଦ୍ରଙ୍କୁ କହି ।
ବାବୁ ଏ ବନେ ତାଡ଼କା ନିବାସ । ବାଟ ଭାଙ୍ଗି ଯିବା ବହୁତ ନ ସ ।୩୨।
ବୋଲେ ରାମ ଏକ ରାକ୍ଷସୀ ଡରେ । ବାଟ ଭାଙ୍ଗି ଗଲେ ବହୁତ ବୀରେ ।
ବାଧା ହେବା କେହି ମଖ ରକ୍ଷଣେ । ବୋଲିଣ ଆଗ ହୋଇଲେ ଆପଣେ ।
ବିଶ୍ୱାମିତ୍ର ମଧ୍ୟେ ପଛେ ଲକ୍ଷ୍ମଣ । ବିପିନ ଦେଖନ୍ତି ଅତି ଭୀଷଣ ।
ବିରୋଚନକର ପଶଇ ନାହିଁ । ବିଭାବରୀ ସ୍ଥାନ ସର୍ବଦା ସେହି ।୩୪।

---

୩୧ଶ ପଦ · ତମ—ଅନ୍ଧକାର, ରାହୁ । ରାତ୍ରିଚର—ପେଚା ପ୍ରଭୃତି, ରାକ୍ଷସ । ବିନାଶକାଳ—ମରଣସମୟ, ଲୁଚିବା ସମୟ । ଚକ୍ର—ମଣ୍ଡଳ, ସୁଦର୍ଶନଚକ୍ର ।

୩୪ଶ ପଦ—ବିରୋଚନକର—ସୂର୍ଯ୍ୟକିରଣ । ବିଭାବରୀ-ରାତ୍ରି ।

---

୩୧ଶ ପଦ—'ସୁଦର୍ଶନ ଚକ୍ର ରାହୁର ଶିରଃଛେଦନ କରି ରକ୍ତ ରଞ୍ଜିତ ହୋଇଅଛି, ଅତଏବ ଆମ୍ଭମାନଙ୍କର ମରଣକାଳ ଉପସ୍ଥିତ ହେଲା" ଏହା ଭାବି ରାକ୍ଷସମାନେ ଭୟରେ ଲୁଚିଲେ । ଅଥବା, ପେଚା ପ୍ରଭୃତି ରାତ୍ରିଚରମାନେ ଭାବିଲେ, ଏହି 'ଚକ୍ର' ସୂର୍ଯ୍ୟମଣ୍ଡଳରୂପ ଚକ୍ର ଅନ୍ଧକାରକୁ ଛେଦନ କରି ରକ୍ତବର୍ଣ୍ଣ ହୋଇଅଛି [ ଅର୍ଥାତ୍ ଅନ୍ଧାର ପରେ ଆଲୋକ ଆସିବାର ସୂଚନା ଦେଉଛି ) ଅତଏବ ଆମ୍ଭମାନଙ୍କର ଲୁଚିବା ସମୟ ହେଲା,—ଏହା ଭାବି ଦିବାଚରମାନଙ୍କୁ ଭୟ କରି ଲୁଚିଲେ ।

୩୨ଶ ପଦ—ଏହିପରି ପ୍ରଭାତ ବର୍ଣ୍ଣନା ଶେଷ ହେଲା । ପ୍ରଭାତ ହେବାରୁ ବିଶ୍ୱାମିତ୍ର ରାମଙ୍କୁ କହିଲେ, "ବାବୁ, ଏହି ବନରେ ତାଡ଼କା ବାସ କରେ, ଚାଲ ବାଟ ଭାଙ୍ଗି ଯିବା । ନ ହେଲେ ସେ ଆମ୍ଭଙ୍କୁ ଭୟ ଦେଖାଇବ ।

୩୩ଶ ପଦ—ଏହା ଶୁଣି ରାମଚନ୍ଦ୍ର କହିଲେ, "ଅନେକ ବୀର ଏହି ରାକ୍ଷସୀ ତାହାକୁ ଭୟ କରି ବାଟ ଭାଙ୍ଗି ଗଲେଣି । ଆମ୍ଭେ ଯଦି ତାହା ଭାଙ୍ଗି ଯିବା, ତେବେ ବହୁତ ରାକ୍ଷସଙ୍କ ସଙ୍ଗେ ବିବାଦ ହୋଇ ଯାଗ ରକ୍ଷା କରିବା କିପରି ? ଏହା କହି ସେ ନିଜେ ଅଗୁଆ ହେଲେ ।

୩୪ଶ ପଦ—ବିଶ୍ୱାମିତ୍ର ମଧ୍ୟରେ ଓ ଲକ୍ଷ୍ମଣ ପଛରେ ରହି ଗଲେ । ସେହି ଜଙ୍ଗଲ ଅତି ଭୟଙ୍କର ଦେଖାଯାଉଥିଲା । କାରଣ—ସେହି ଜଙ୍ଗଲରେ କେବେ ହେଲେ ସୂର୍ଯ୍ୟକିରଣ ପଡ଼େ ନାହିଁ । ଏଣୁ ରାତ୍ରି ସବୁବେଳେ ସେଠାରେ ବାସ କରିଥାଏ । [ଅର୍ଥାତ୍ ବୃକ୍ଷ ଗହଳ ହେତୁ ସର୍ବଦା ଅନ୍ଧାର ଘୋଟି ରହିଥାଏ)

ବାଚକ ଏ ବେନି ପେଚକପନ୍ତି । ବଲୋକନ ନୋହେ ମେଚକକାନ୍ତି ।
ବିନୋଦ ସ୍ୱଚ୍ଛେ କରନ୍ତି ଗଣ୍ଡକ । ବଲ୍ମୀକ ବଢାଉଛନ୍ତି ଭଲ୍ଲୁକ ।୩୪।
ବସିଂହ ପ୍ରତୀତ ସ୍ୱନକୁ ଜାଣି । ବଡ଼ାଲଅନ୍ଧ ଦୀପ୍ରାକ୍ଷକୁ ଆଣି ।
ବାର ହୋଏ ଗଜ ଦଶନ ଯେନି । ବଢ଼ାନ୍ତେ ପାଦ ନ ଦଶେ ଅବନୀ ।୩୫।
ବୃକ୍ଷ ବଲ୍ଲୀ ସଙ୍ଗ ଘଞ୍ଚକୁ କରି । ବାୟୁ ଯେ ମଶକ ମଶାରି ସରି ।
ବଲ୍ଗୁର ସଘନ ଗର୍ଜସୀ ଅସ୍ତୁ । ବିଧାନ ଗୁଣ ଟଙ୍କାର ଏ ବନ୍ଧୁ ।୩୬।
ବଜ୍ର ଉପରେ କି ବଜ୍ର ପଡ଼ିଲା । ବିଶ୍ରାମସ୍ଥାନ ତାଡ଼କା ଛାଡ଼ିଲା ।
ବହିମି ଆସିଲା ମନକୁ ବେଗେ । ବିତମେଘଖଣ୍ଡ କି ବାୟୁ ଯୋଗେ ।

---

୩୪ଶ ପଦ—ବାଚକ—କଥକ । ମେଚକ କାନ୍ତି—କାଳିଆ ରଙ୍ଗସବୁ । ବିନୋଦ—କ୍ରୀଡ଼ା । ବଲ୍ମୀକ—ଉଇହୁଙ୍କା ।

୩୫ଶ ପଦ—ସ୍ୱନକୁ—ଶବ୍ଦକୁ । ଦଶନ—ଦାନ୍ତ । ଦୀପ୍ରାକ୍ଷ—ଉଜ୍ଜ୍ୱଳ ଚକ୍ଷୁ । ଅବନୀ—ପୃଥିବୀ ।

୩୬ଶ ପଦ—ବୃକ୍ଷବଲ୍ଲୀ—ଗଛଲତା ।

---

୩୪ଶ ପଦ—ସେହି ବନ ସର୍ବଦା ଅନ୍ଧକାରଚ୍ଛନ୍ନ ହୋଇ ଥିବାରୁ ବନସ୍ଥ ପେଚକମାନେ କୋକାଉଛନ୍ତି, କାଳିଆ ପଦାର୍ଥ ସବୁ ବାରି ହେଉ ନାହିଁ, ଗଣ୍ଡାମାନେ ସ୍ୱଚ୍ଛନ୍ଦରେ କ୍ରୀଡ଼ା କରୁଛନ୍ତି ଓ ଭାଲୁମାନେ ଉଇହୁଙ୍କା ବଢ଼ାଉଛନ୍ତି ।

୩୫ଶ, ୩୬ ପଦ—ଶବ୍ଦ ଦ୍ୱାରା ସିଂହ, ଅକ୍ଷିର ତେଜଦ୍ୱାରା ବିରାଡ଼ ପ୍ରଭୃତି ହିଂସ୍ରଜନ୍ତୁମାନେ ଓ ଦାନ୍ତକୁ ଦେଖି [ ସେ ଉଜ୍ଜ୍ୱଳ ଦେଖା ଯାଉଥିବାରୁ ହାତୀ ଚାଲି ଯାଉ ଅଛନ୍ତି । ପାଦ ପକାଇବାକୁ ସ୍ଥାନ ଦେଖା ଯାଉ ନାହିଁ । ବୃକ୍ଷଲତାମାନଙ୍କର ପତ୍ର ଦ୍ୱାରା ସେହି ବନ ଏପରି ଆଚ୍ଛାଦିତ ହୋଇଛି ଯେ, ମଶା ଯେପରି ମଶାରିରେ ପଶି ପାରେ ନାହିଁ, ସେହିପରି ବାୟୁ ତାହା ମଧ୍ୟରେ ପ୍ରବେଶ କରି ପାରୁ ନାହିଁ । ତାଡ଼କା ଅସ୍ତୁ, ଏହା ଶୁଣି ରାମ ଧନୁରେ ଗୁଣ ଦେଇ ଟଙ୍କାର କରିବାକୁ ଲାଗିଲେ ।

୩୭ଶ ପଦ—ତାଡ଼କା ସେହି ଶବ୍ଦ ଶୁଣି, ବଜ୍ର ଉପରେ ବଜ୍ର ପଡ଼ିଲା ବୋଲି ଭାବି ନିଜର ରହିବା ସ୍ଥାନ ଛାଡ଼ି ମନଠାରୁ ଅଧିକ ବେଗରେ ଦୌଡ଼ି ଆସିଲା । ସେହି ସମୟରେ ତାକୁ ଦେଖି ମନେ ହେଲା, ଖଣ୍ଡେ କଳା ମେଘ ପବନ ବେଗରେ ଉଡ଼ି ଆସୁଛି କି ?

ବିଳ ସଦୃଶ ନାସା ସର୍ପ ଫୁତ୍କାର । ବାତଶ୍ରୁଁ ବହୁଛି ନିଶ୍ୱାସ ଛାର ।
ବସୁନ୍ଧରାଧର ଶୃଙ୍ଗ କି ହନୁ । ବହେ କି ଝର ଝାଳ ତଥା ତନୁ ।
ବିସ୍ତୃତ ମୁଖ ଗହ୍ୱର ସଦୃଶ । ବ୍ୟାଘ୍ର କଳ୍ପ ପ୍ରାୟ ସେ ମଧ୍ୟେ ଘୋଷ
ବିସ୍ତାରେ ରେରେର ରାବ ଶୁଭୁଅଛି । ବହ୍ନି ଯୋଗ ପ୍ରାୟ ଜିହ୍ୱା ଜଳୁଛି ॥
ବିକଟରୂପା ଆସି ପରବେଶ । ବୃକ୍ଷ ପ୍ରହାରେ ବହି ମହାଦ୍ୱେଷ ।
ବୋଇଲା ମୋ ଦାନ୍ତ ଲଙ୍ଗଳ ଏଣ । ବପ୍ର ତୁମ୍ଭେ ହେବ କରିବି ଚାଷ ।
ବ୍ୟାନ ସହ ପ୍ରାଣ ଉର୍କଣ୍ଠ ବତ । ବାହାର ହୋଇବେ ମଧ ଅଯୁତ
ବୋଲି ସେ ତଳ ଉଠାଇବା ବେଳେ । ରଘୁ ଅର୍ଦ୍ଧଶର ପ୍ରୟୋଗ କଲେ

---

୩୯ଶ ପଦ—ବିଳ—ଗାତ । ଫୁତ୍କାର—ଫୁଁ ଫୁଁ ଶବ୍ଦ । ବାତ—ପବନ । ବସୁନ୍ଧରାଧର—ପର୍ବତ । ହନୁ—ଗାଲ । ତନୁ—ଦେହ ।

୪୦ଶ ପଦ—ଗହ୍ୱର—ଗୁମ୍ଫା । ଘୋଷ—ଶବ୍ଦ । ବହ୍ନିଯୋଗପରି—ନିଆଁ ଜଳିଲା ପରି ।

୪୧ଶ ପଦ—ବିକଟରୂପା—ଭୟଙ୍କର ଦେହା । ବପ୍ର—କ୍ଷେତ ।

୪୨ଶ ପଦ—ଉର୍କଣ୍ଠ—ଉଲ୍କଡ଼ା । ମଧ—ବାଦ । ତଳ—କରତଳ (ମୁଷ୍ଟିକା) । ରଘୁ ଅର୍ଦ୍ଧଶର—ଅର୍ଦ୍ଧଚନ୍ଦ୍ର ବାଣ ।

---

୩୯ଶ ପଦ—ତାର ନାକ ଦୁଇ ଗୋଟା ବଡ଼ ବଡ଼ ଗାତ ପରି ଦେଖାଯାଉଥିଲା ଓ ସେଥିରୁ ସାପ ଫୁଁ ଫୁଁ କଲାପରି ଫୁଁ ଫୁଁ ଶବ୍ଦ ସହ ନିଶ୍ୱାସ ବାୟୁ ବହୁଥିଲା । ତାର ଗାଲ ଦୁଇଟା ପର୍ବତ ଶୃଙ୍ଗ ପରି ଦେଖାଯାଉଥିଲା ଓ ଦେହରୁ ଝରଣା ପରି ଝାଳ ବହୁଥିଲା ।

୪୦ଶ ପଦ—ତାର ମୁଖ ଗୋଟାଏ ଗୁମ୍ଫା ପରି ହୋଇଅଛି ଓ ବାଘ ଗର୍ଜନ କଲାପରି ସେହି ମୁଖ ମଧ୍ୟରୁ ଅତି ସ୍ୱରରେ ରେ ରେ ରାବ ଶବ୍ଦ ଶୁଣାଯାଉଛି । ତାର ଜିଭରେ ନିଆଁ ଜଳୁଥିବା ପରି ଦେଖାଯାଉଛି ।

୪୧ଶ ପଦ—ସେହି ବିକଟାଳ ଦେହା ତାଡ଼କା ରାମଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ଅତି କ୍ରୋଧରେ ଗୋଟାଏ ବୃକ୍ଷ ପ୍ରହାର କରି କହିଲା, "ମୋ ଦାନ୍ତ ଛଗ ଯୁକ୍ତ ଲଙ୍ଗଳ ଅଟେ । ମୁଁ ସେଥିରେ ତୁମର ଶରୀର ଚାଷ କରିବି । (ଅର୍ଥାତ ତୋତେ ଚୋବାଇବି) ।

୪୨ଶ ପଦ—ପୁନର୍ବାର କହିଲା, "ଉଲ୍କଡ଼ାମାନେ ତୁମର ଅଧୀନ ହେଲା ପରି (ତୁମେ ସେମାନଙ୍କୁ ମାରିଲା ପରି) ବ୍ୟାନ ବାୟୁସହ ତୁମର ପ୍ରାଣମାନେ ମୋର ଅଧୀନ ହେବେ (ମୁଁ ତୁମର ପଞ୍ଚପ୍ରାଣ ନେବି) ।" ଏହା କହି ମୁଷ୍ଟିକା ଉଠାଇବା ବେଳେ ରାମ ଅର୍ଦ୍ଧଚନ୍ଦ୍ର ବାଣରେ ମାରିଲେ ।

ବିଶାଳ ତୁଙ୍ଗ ଶାଳ ମହୀରୁହ । ବିଚ୍ଛେଦିଲା ପ୍ରାୟ ପଡ଼ିଲା ଦେହ ।
ବାହାର ତହୁଁ ଦିବ୍ୟ ରୂପ ହେଲା । ବିମାନ ଆରୋହି ସ୍ୱର୍ଗକୁ ଗଲା ।୪୩।
ବୃଷ୍ଟି କଲେ ପୁଷ୍ପ ବାଦ୍ୟ ବଜାଇ । ବିବୁଧ ନିକର ଆକାଶେ ରହି ।
ବନ ଯେ କାଳିକା ଦେବୀ ଆକାର । ବାହୁରୁ ତାଡ଼ କି ଭାଙ୍ଗିଲା ତାର ।
ବେଦ ବଂଶର ବିନାଶ ଉଦ୍‌ବେଗ । ବିଧ୍ୱଂସି ଦୈତ୍ୟ ରକ୍ଷିବ ମୋ ଯାଗ ।
ବିଗଳିତ ତାପ ହୋଇଲା ଆଗ । ବୃଜିନୀ ଗଲା କରି ସ୍ୱର୍ଗ ଭୋଗ ।୪୫।
ବିପକ୍ଷ ପକ୍ଷ ନାହିଁ ମୋକ୍ଷ ଦାୟୀ । ବିଷ୍ଣୁ ଏ ସ୍ୱୟଂ ଅବତୀର୍ଣ୍ଣ ମହୀ ।
ବପୁରେ ଲୀନ ଅବତାର ମାନ । ବସନ୍ତି ପୁରୁଷଲକ୍ଷଣେ ମୀନ ।

---

୪୩ଶ ପଦ—ବିଶାଳ—ସ୍ଥୂଳ । ତୁଙ୍ଗ—ଅତି ଉଚ୍ଚ । ଶାଳ ମହୀରୁହ—ଶାଳୁଆ ଗଛ । ବିଚ୍ଛେଦିଲା—କାଟିଲା ।

୪୪ଶ ପଦ—ବିବୁଧ ନିକର—ଦେବତା ସମୂହ ।

୪୫ଶ ପଦ—ବେଦ ବଂଶର—ବିଶ୍ୱାମିତ୍ରର । ବୃଜିନୀ—ପାପିନୀ ।

୪୬ଷ ପଦ—ବିପକ୍ଷ—ଶତ୍ରୁ । ବପୁ—ଶରୀର ।

---

୪୩ଶ ପଦ—ଅତି ମୋଟା ଏବଂ ଅତି ଉଚ୍ଚା ଶାଳ ଗଛ କାଟିଲେ ଯେପରି ପଡ଼େ, ତାଡ଼କାର ଦେହ ସେହିପରି ପଡ଼ିଲା ଏବଂ ସେହି ଦେହରୁ ·ଗୋଟିଏ ଅତି ସୁନ୍ଦର ରୂପ ବାହାରି ବିମାନ ଆରୋହଣ କରି ସ୍ୱର୍ଗକୁ ଗଲା ।

୪୪ଶ ପଦ—ଦେବତାମାନେ ଆକାଶରେ ରହି ଏହା ଦେଖି ବାଦ୍ୟ ବଜାଇ ପୁଷ୍ପ ବୃଷ୍ଟି କଲେ । ବୋଧହୁଏ, ଏହି ବନ କାଳିକା ଦେବୀ ଅଟେ; ତାଡ଼କା ମରିବାରୁ ମନେ ହୁଏ, ତାର ବାହୁରୁ ତାଡ଼ (ଅଳଙ୍କାର) ଭାଙ୍ଗିଗଲା କି ?

୪୫ଶ ପଦ— ତାଡ଼କା ମରିବାରୁ ବିଶ୍ୱାମିତ୍ରଙ୍କ ମନରୁ ଉଦ୍‌ବେଗ କଟିଗଲା । ସେ ଭାବିଲେ, " ଏହି ରାମ ଅସୁରମାନଙ୍କୁ ମାରି ମୋର ଯାଗ ରକ୍ଷା କରିବେ । ଆଜିଠାରୁ ମୋ ମନରୁ ଭୟ ଗଲା ଏବଂ ଏହି ପାପିନୀ ସ୍ୱର୍ଗ ଭୋଗ କରିବାକୁ ଗଲା ।"

୪୬ଶ ପଦ—"ଏ ସ୍ୱୟଂ ବିଷ୍ଣୁ, ପୃଥିବୀରେ ଅବତୀର୍ଣ୍ଣ ହୋଇ ଅଛନ୍ତି ; ଯେ ହେତୁ ଶତ୍ରୁ, ମିତ୍ର ନ ବିଚାରି ସମସ୍ତଙ୍କୁ ମୁକ୍ତି ଦାନ କରୁଅଛନ୍ତି । ଦଶଅବତାର ଯାକ ଏହାଙ୍କ ଦେହରେ ଗୁପ୍ତ ହୋଇ ରହିଅଛି । ମୀନ ମଧ୍ୟ ପୁରୁଷର ଲକ୍ଷଣ ହୋଇ ଥିବାରୁ ଦେଖା ଯାଉଛି ।"

ବିଖ୍ୟାତ ହେଲେ ମନ୍ଦର ତାଡ଼ନେ । ଦଶନ୍ଧବରେ ଏ ନିପୁଣ ଗୁଣେ ।
ଦଳନ ହିରଣ୍ୟ-ପ୍ରଭା ଗଞ୍ଜନ । ବଳୀ ଶିରେ ପାଦ ଦେଇ ଗମନ ।୪୭
ବିଜିତ ତେଜରେ ସହସ୍ରକର । ବର୍ଣ୍ଣରେ କୃଷ୍ଣ କରି ଅଙ୍ଗୀକାର ।
ବଳ ସାଙ୍ଗ ହୋଇଅଛି ସହଜେ । ବୁଦ୍ଧତ୍ୱ ବୁଦ୍ଧିରେ ପୁଣ ଉପୁଜେ ।୪୮।

---

୪୭ଶ ପଦ—ମନ୍ଦର—ପର୍ବତ ବିଶେଷ, ବିଘ୍ନ, ଦୁଷ୍ଟର ବା ଖଳର । ଦଶନ୍ଧବର–ଦଶନ୍ଧ ଶ୍ରେଷ୍ଠ, ପ୍ରଧାନ ଯୁଦ୍ଧ । ହିରଣ୍ୟ କଶିପୁ, ସୁବର୍ଣ୍ଣ । ବଳୀ—ବଳିରାଜା, ବଳବାନ୍ ।

୪୮ଶ ପଦ—ସହସ୍ରକର—ସୂର୍ଯ୍ୟ ଭାଣ୍ଡିବାର୍ଯ୍ୟ । କୃଷ୍ଣ—ନନ୍ଦନନ୍ଦନ, କଳା । ବର୍ଣ୍ଣରେ—ଶରୀର କାନ୍ତିରେ । ଅଙ୍ଗୀକାର—ସ୍ୱୀକାର । ବଳ—ପରାକ୍ରମ,

---

୪୭ଶ ପଦ—କୂର୍ମ ଅବତାରରେ ବିଷ୍ଣୁ ମନ୍ଦର ପର୍ବତ ଦ୍ୱାରା ତାଡ଼ିତ (ଅଘାତ ପ୍ରାପ୍ତ) ହୋଇ ବିଖ୍ୟାତ ହୋଇଥିଲେ । ବର୍ତ୍ତମାନ ରାମରୂପୀ ବିଷ୍ଣୁ "ମନ୍ଦର ତାଡ଼ନ" ବିଘ୍ନମାନଙ୍କୁ ଦୂର କରି (ଅର୍ଥାତ୍ ରାକ୍ଷସମାନଙ୍କୁ ମାରି) ବିଖ୍ୟାତ ହେବେ, ଅଥବା "ମନ୍ଦର" ଦୁଷ୍ଟା ତାଡ଼କାର ମରଣ ବିଧାନକରି ବିଖ୍ୟାତ ହେଲେ । ବିଷ୍ଣୁ ଦଶନ୍ଧରୂପରେ ଗୁଣରେ । ଶୌନ୍ଦର୍ଯ୍ୟାଦି ଗୁଣରେ) ଶ୍ରେଷ୍ଠ ହୋଇ ଖ୍ୟାତିଲାଭ କରିଥିଲେ । ବର୍ତ୍ତମାନ ରାମ ମହାଯୁଦ୍ଧ କରିବା ପାଇଁ ଯେପରି ବୀରତ୍ୱ ଥିବା ଆବଶ୍ୟକ ସେଥିରେ ନିପୁଣ ବୋଲି ଖ୍ୟାତ ହୋଇ ଅଛନ୍ତି । (ନଚେତ୍ ଦେବବାଣୀ ଏହାଙ୍କ ନାମ ପ୍ରକାଶ କରନ୍ତା କାହିଁକି ?) ବିଷ୍ଣୁ ନୃସିଂହ ରୂପରେ ହିରଣ୍ୟାକ୍ଷର ଦର୍ପ ଗଞ୍ଜନ କରିଥିଲେ, ବର୍ତ୍ତମାନ ଏହି ରାମ ନିଜର ବସ୍ତ୍ର ତେଜ ଦ୍ୱାରା ସୁବର୍ଣ୍ଣର ତେଜକୁ ପରାସ୍ତ କରୁଅଛନ୍ତି । ବିଷ୍ଣୁ ବାମନ ରୂପରେ ବଳିରାଜାର ମସ୍ତକରେ ପାଦ ଦେଇଥିଲେ, ବର୍ତ୍ତମାନ ରାମ ବଳଶାଳୀମାନଙ୍କର ମୁଣ୍ଡରେ ପାଦ ଦେଇ ଗମନ କରୁଛନ୍ତି (ଅର୍ଥାତ୍ ବୀର ଶ୍ରେଷ୍ଠ ହୋଇ ଅଛନ୍ତି)

୪୮ଶ ପଦ—ପରଶୁରାମ ରୂପରେ ନିଜର ବଳଦ୍ୱାରା ସହସ୍ରାର୍ଜ୍ଜୁନକୁ ପରାସ୍ତ କରିଥିଲେ, ବର୍ତ୍ତମାନ ଏହି ରାମ ରୂପରେ ସୂର୍ଯ୍ୟଙ୍କୁ ସ୍ୱୀୟ ତେଜ ଦ୍ୱାରା ପରାସ୍ତ କରିଛନ୍ତି ଏବଂ ନିଜ ଶରୀର କାନ୍ତିରେ କଳା ବର୍ଣ୍ଣକୁ ସ୍ୱୀକାର କରି ଅର୍ଥାତ୍ ନବଦୂର୍ବାଦଳ ଶ୍ୟାମଳ ତନୁ ଧାରଣ କରି, ନନ୍ଦନନ୍ଦନ କୃଷ୍ଣ ବୋଲି ସ୍ୱୀକାର କରୁଅଛନ୍ତି । ସେହି କୃଷ୍ଣାବତାରରେ ବଳରାମ ଭାଇ ଭାବରେ । (ଭାଇ ହୋଇ) ସାଙ୍ଗରେ ଥିଲେ । ବର୍ତ୍ତମାନ ଏହି ବାଳକ ଶରୀରରେ ପରାକ୍ରମ ସାଙ୍ଗ ହୋଇଅଛି ଅର୍ଥାତ୍ ମହାବଳିଷ୍ଠ ଅଟନ୍ତି । ବୁଦ୍ଧରୂପରେ ଯେପରି "ବୁଦ୍ଧତ୍ୱ" ଜ୍ଞାନ

ବିଭ୍ରାଜମାନ ସାୟକରେ ଅତି । ବିଦିତ କରୁଛନ୍ତି ଗନ୍ଧର୍ବଗତି ।
ବର୍ତ୍ତମାନ ଭୂତ ଭବିଷ୍ୟ ଦେଖି । ବିଷ୍ଣୁ ଏ ଅବତାରୀ ଏହି ଚିହ୍ନି ।୪୯।
ବପ୍ତା ଭାଗ୍ୟେ ଦଶରଥ ନୃପତି । ବିଦ୍ୟାଗୁରୁ ହୋଇ ରହୁ ମୋ କୀର୍ତ୍ତି ।
ବିବେକୀ ଋଷି ସ୍ନାନବିଧି ସାରି । ବିଜୟା ଜୟା ମନ୍ତ୍ର ଦାନ କରି ।୫୦।
ବିଶାଳ କଟକ ସୀମାରେ ସ୍ଥିତ । ବିସ୍ମରୁ ଅସ୍ତ୍ର ଶସ୍ତ୍ର ଉପଗତ ।
ବୀରେଶ୍ୱର ରାମ ପଚାରନ୍ତେ ସତ । ବଦନ୍ତି ମୁନି ସେ ଦେଶ ଚରିତ ।୫୧।

---

ବିଳମ୍ବ । ସନ୍ନିଧେ—ସ୍ଥଳରେ, ସନ୍ନିକଟରେ । ବୁଦ୍ଧିତ୍ୱ—ପଣ୍ଡିତତ୍ୱ, ବୁଦ୍ଧିମତାର ଭାବ ।

୪୯ଶ ପଦ—ସାୟକ—ଖଡ୍ଗ, ଶର । ଗନ୍ଧର୍ବ—ଦେବଯୋନି ବିଶେଷ, ଘୋଟକ ।

---

ଲାଭ କରିଥିଲେ, ବର୍ତ୍ତମାନ ମଧ୍ୟ ବୁଦ୍ଧିର ତୀବ୍ରତା ହେତୁ ସେହିପରି ପାଣ୍ଡିତ୍ୟ ଲାଭ କରି ଅଛନ୍ତି ।

୪୯ଶ ପଦ—କଲ୍କି ରୂପରେ ଯେପରି ଅତି ତୀକ୍ଷ୍ଣ ଖଡ୍ଗ ଧରି ଘୋଡା ଉପରେ ଚଢ଼ି ବୁଲିବା ଦ୍ୱାରା ଜଗତରେ ବିଖ୍ୟାତ ହୋଇଥିଲେ, ଏବେ ସେହିପରି ଅତି ତୀକ୍ଷ୍ଣ ଶରମାନଙ୍କୁ ଧରି ( କନ୍ଧର ପଛେ ପଛେ ) ଅଶ୍ୱପରି ଅତି ଶୀଘ୍ର ଦୌଡ଼ିବାରେ ଖ୍ୟାତି ଲାଭ କରିଅଛନ୍ତି, ଅର୍ଥାତ୍ ପ୍ରଧାନ ଧାନୁଷ୍କ ଅଟନ୍ତି । ଋଷି ଏହିପରି ବର୍ତ୍ତମାନ, ଭୂତ, ଭବିଷ୍ୟତର ଚିହ୍ନ ସବୁ ଦେଖି, ରାମଙ୍କୁ ଅବତାରୀ ବିଷ୍ଣୁ ବୋଲି ଚିହ୍ନିଲେ ।

୫୦ଶତ ପଦ—ତତ୍ପରେ ଚତୁର ଋଷି 'ରାଜା ଦଶରଥ ଭାଗ୍ୟବଶରୁ ପିତା ହୋଇ ଯେପରି କୀର୍ତ୍ତି ( ପୃଥିବୀରେ ) ରଖି ଅଛନ୍ତି, ସେହିପରି ବିଦ୍ୟାଗୁରୁ ହେବାଦ୍ୱାରା ମୋର କୀର୍ତ୍ତି ରହିବ'—ଏହି କଥା ନିଶ୍ଚୟ ପୂର୍ବକ ସ୍ନାନବିଧି ସମାପ୍ତ କରି ରାମଙ୍କୁ ଜୟା ଓ ବିଜୟା ନାମକ ଦୁଇଗୋଟି ମନ୍ତ୍ର ପ୍ରଦାନ କରିଥିଲେ ।

୫୧ଶତ ପଦ—ତତ୍ପରେ ରାମ 'ବିଶାଳ କଟକ' ଲଙ୍କା ନାମକ ନଗରୀର ନିକଟରେ ଉପସ୍ଥିତ ହୋଇ ଋଷି ଦେଇଥିବା ମନ୍ତ୍ରକୁ ( ମନେ ମନେ ) ବିସ୍ମରନ୍ତେ ଅର୍ଥାତ୍ ସ୍ମରଣ କରନ୍ତେ; ଅସ୍ତ୍ର, ଶସ୍ତ୍ର ସବୁ ସେଠାରେ ଉପଗତ ହେଲେ ! ଏହା ଉତ୍ତାରୁ ରାମ ମୁନିଙ୍କୁ ଲଙ୍କା ନଗରୀର କଥା ପଚାରିବାରୁ ସେ ସମସ୍ତ କଥା କହିଲେ ।

ବାସର ନାଶିଏ ଚନ୍ଦ୍ରିରେ ରହି । ଚଳିଲେ ପ୍ରଭାତ ହରଷ ହୋଇ ।
ବାନପଦେ ଏ ଛାନ୍ଦ ମନୋହର । ଭଣନ୍ତେ ଉପଇନ୍ଦ୍ର ବୀରବର । ୫୨ ।

## ସପ୍ତମ ଛାନ୍ଦ

### ରାଗ—ପଟ୍ଟମଞ୍ଜରୀ

ବିଡ଼ୌଜା ସୁଧାଂଶୁ ଗୁରୁ ସଙ୍ଗତ ସମାନ ।
ବେନୀଶ୍ରୁତା ମୁନି ସଙ୍ଗେ ଦେଖେ ସିଦ୍ଧବନ । ୧ ।
ବୃକ୍ଷତତି ନପିସନ୍ତ୍ରି ତହିଁ ଏକାକୃତି ।
ବଲ୍କଳ ପିଧାନ କରି ଜଟା ଧରିଛନ୍ତି । ୨ ।
ବେଦ ସାର ମୂଳ ସଦା ସୁମନା ଫଳଦ ।
ବାସ ବୃକ୍ଷ ପୂର୍ଣ୍ଣଚୟ ଅତି ସ୍ଥିର ହୃଦ୍ୟ । ୩ ।

---

୧ମ ପଦ—ବିଡ଼ୌଜା—ଇନ୍ଦ୍ର । ସୁଧାଂଶୁ—ଚନ୍ଦ୍ର । ଗୁରୁ—ବୃହସ୍ପତି ।
୩ୟ ପଦ—ବେଦସାର—ଶ୍ରେଷ୍ଠ ବେଦୀ, ଯାଜ୍ଞିକ । ସୁମନା—ପୁଷ୍ପ, ନିର୍ମଳ ମନା । ଫଳଦ—ଫଳଦାତା, ବରଦାତା ( ବାଞ୍ଛିତ ଫଳ ଦାତା ) ।

---

୫୨ ଛତ୍ ପଦ—"ସେମାନେ ସେହି ନଗରୀରେ ଏକ ଅହୋରାତ୍ର ରହି, ପ୍ରଭାତରୁ ଅନ୍ୟତ୍ର ଗମନ କଲେ । ବୀରବର ଉପେନ୍ଦ୍ର ଏ ଛାନ୍ଦକୁ ଭାଞ୍ଜନ ପଦରେ ଅତି ସୁନ୍ଦରଭାବରେ ରଚନା କଲେ ।

---

## ସପ୍ତମ ଛାନ୍ଦ

୧ମ ଓ ୨ୟ ପଦ—ଚନ୍ଦ୍ର ଓ ବୃହସ୍ପତି ଇନ୍ଦ୍ରଙ୍କସହ ମିଳିତ ହେଲା ପରି ରାମ ଓ ଲକ୍ଷ୍ମଣ ଦୁଇ ଭାଇ ବିଶ୍ୱାମିତ୍ରଙ୍କସହ ମିଶି ସିଦ୍ଧବନ ନାମକ ତପୋବନ ଦେଖିବାକୁ ଗଲେ । ସେମାନେ ଦେଖିଲେ, ସେହି ତପୋବନରେ ଥିବା ବୃକ୍ଷଲତିକା ଓ ଋଷିମାନେ ଏକାକାର ଦେଖା ଯାଉଅଛନ୍ତି । ଯେ ହେତୁ ବୃକ୍ଷମାନେ ଋଷିମାନଙ୍କ ପରି ଜଟା ଓ ବଳକରେ ମଣ୍ଡିତ ହୋଇ ଅଛନ୍ତି ।

୩ୟ ପଦ—ସେହି ସବୁ ବୃକ୍ଷମାନଙ୍କ ମୂଳରେ ବଡ଼ ବଡ଼ ବେଦୀ (ପିଣ୍ଡ) ନିର୍ମିତ ହୋଇଅଛି ଏବଂ ସେମାନେ ସର୍ବଦା ଋଷିମାନଙ୍କୁ ବା ବନବାସୀମାନଙ୍କୁ ଫୁଲ ଓ ଫଳଦାନ କରି କଳ୍ପତରୁ ଧାରଣ ପୂର୍ବକ ଅତି ସ୍ଥିର ଭାବରେ ନିଜ ନିଜ ସ୍ଥାନରେ ରହି କନକ ଶୋଭା ବିସ୍ତାର କରୁଅଛନ୍ତି । ସେହିପରି ଋଷିମାନେ ବେଦର ସାର ତପଃ, ଯଜ୍ଞ, ଧ୍ୟାନ ଏମାନଙ୍କୁ ମୂଳ କରି ସର୍ବଦା ଆନନ୍ଦ ମନରେ ପ୍ରାର୍ଥନାକାରୀଙ୍କୁ ପ୍ରାର୍ଥିତ ଫଳ ( ଇଚ୍ଛାବର ) ପ୍ରଦାନ କରି, ମନୋହର ପର୍ଣ୍ଣ-

ଜଳାଧାର ପ୍ରାୟେ ଲତାତଳ ମନୋହର ।
ବିଶ୍ରାମିଛନ୍ତି କମଳ ହଂସ ତାପ ଦୂର । ୪ ।
ଉଦ୍ଘଟିତ ଘନ ପୁଷ୍ପ ଭ୍ରମରେ ସହିତ ।
ବନୋଢ଼ ଜନମାନଙ୍କ ହରୁଅଛି ଶଙ୍କ । ୫ ।

---

ପର୍ଣ୍ଣଚୟ—ପତ୍ର ସମୂହ । ସ୍ଥିରଛଦ—ଶାନ୍ତବେଦୀ । ବାସ—ରହିବା ସ୍ଥାନ, ବସ୍ତ୍ର ।

୪ର୍ଥ ପଦ—ଜଳାଧାର—ଜଳାଶୟ । କମଳ—ପଦ୍ମ, ମୃଗ । ହଂସ—ସୂର୍ଯ୍ୟ, ରାଜହଂସ ।

୫ମ ପଦ—ଘନ ପୁଷ୍ପ—ଜଳ, ପୁଷ୍ପାଚ୍ଛାଦିତ । ଭ୍ରମରେ—ଆବର୍ତ୍ତ (ଭଉଁର) ରେ, ଭ୍ରମରମାନଙ୍କ ଦ୍ୱାରା ।

---

କୁଟୀରରେ ସ୍ଥିର ଚିତ୍ତରେ ବାସ କରୁ ଅଛନ୍ତି । (କୌଣସି କୌଣସି ଅର୍ଥକାରମାନେ ଏହି ପଦର "ଅତ ସ୍ଥିର ଛଦା" ଏହି ସ୍ଥଳରେ "ସ୍ଥି" ସ୍ଥାନରେ 'ଥି' ଏହି ଅକ୍ଷରକୁ ରଖି ନିମ୍ନଲିଖିତ ପ୍ରକାରେ ଅର୍ଥ କରନ୍ତି) । ଯଥା—ସେହି ବୃକ୍ଷମାନେ ଯେପରି ବେଦୀକୁ ମୂଳରେ ଅର୍ଥାତ୍ ବେଦୀ ଉପରେ ରହି ସବୁବେଳେ ପୁଷ୍ପ ଫଳ ଦାନ କରୁଅଛନ୍ତି ଏବଂ ଅତଥିର ଆମୋଦଦାୟକ 'ବାସ' ସୁଗନ୍ଧଯୁକ୍ତ ପତ୍ର ସମୂହରେ ମଣ୍ଡିତ ହୋଇ ଅଛନ୍ତି, ସେହିପରି ଋଷିମାନେ ବେଦ ଓ 'ସାର' ଯଜ୍ଞ ଏ ଦୁହିଙ୍କୁ 'ମୂଳ' ପ୍ରଧାନ ଭାବରେ ଆଶ୍ରୟ କରି ( ଯଜ୍ଞ ବେଦୀ ଉପରେ ବସି ) ଅଥବା ସର୍ବଦା ସେହି ବୃକ୍ଷ ମୂଳସ୍ଥ 'ବେଦସାର' ଶ୍ରେଷ୍ଠବେଦୀ ଅର୍ଥାତ୍ ପରିଷ୍କୃତ ପିଣ୍ଡି ଉପରେ ବସି ନିର୍ମଳମନା ଭକ୍ତମାନଙ୍କୁ ସେମାନଙ୍କ ଇପ୍ସିତ ( ବାଞ୍ଛିତ ) ଫଳ ଦାନ କରୁ ଅଛନ୍ତି ଏବଂ 'ଅତଥିର' ଅତ ସ୍ଥିର 'ଛଦା' ହୃଦୟରେ ପର୍ଣ୍ଣକୁଟୀରରେ ବାସ କରୁଅଛନ୍ତି ।

୪ର୍ଥ ପଦ—ସେହି ବନରେ ଥିବା ଲତାମାନଙ୍କ 'ତଳ' ମୂଳ ପ୍ରଦେଶ ଅର୍ଥାତ୍ ଜଳପୂର୍ଣ୍ଣ ମନ୍ଦାଗୁଣ୍ଡିକ ପୁଷ୍କରିଣୀ ପରି ମନୋହର ହୋଇଅଛି । କାରଣ ପୁଷ୍କରିଣୀରେ ପଦ୍ମ ଥାଏ ଏବଂ ହଂସମାନେ ତହିଁରେ ସନ୍ତରଣ କରି ନିଜ ନିଜର କଷ୍ଟ ଦୂର କରୁଥାନ୍ତି । ସେହିପରି ଏହି ଲତାମାନଙ୍କର ତଳ ପ୍ରଦେଶରେ ମୃଗମାନେ ବିଶ୍ରାମ କରିଅଛନ୍ତି ଏବଂ ସେହି ସ୍ଥାନଟି ଛାୟା ଓ ଜଳଯୁକ୍ତ ହୋଇ ଥିବାରୁ ସୂର୍ଯ୍ୟ ତାପ ଦୂର କରୁଅଛି ।

୫ମ ପଦ—ଯେପରି ଜଳାଶୟର ଜଳ ତଟପ୍ରଦେଶରେ ବାଲି ଭଉଁର ଜାତ ହେଲେ, ତାହାର ଶୋଭା ସେହି ଜଳାଶୟ କୂଳରେ ବିହାର କରୁଥିବା ଲୋକମାନଙ୍କର ଚିତ୍ତକୁ ହରଣ କରେ, ସେହିପରି ଏହି ତପୋବନ ବୃକ୍ଷ ଓ ଲତାମାନଙ୍କର ଭ୍ରମର ଚୁମ୍ବିତ ସାନ୍ଦ୍ର ପୁଷ୍ପ ରାଶିରେ ବିମଣ୍ଡିତ ହୋଇ ସେହି ବନରେ ବିହାର କରୁଥିବା ଲୋକମାନଙ୍କର ଚିତ୍ତକୁ ହରଣ କରୁଅଛି ।

ବନର ଜେଉଁ ପ୍ରଦେଶ ଅଦିତି ପ୍ରକାଶ ।
ବସ୍ୱତ ଅନୁଭବରେ ଶିଖୀ ଶୋଭାକର । ୬ ।
ବରୁଣ ଦେବବଲ୍ଲଭ ଉଦୟ କରନ୍ତି ।
ବହୁ ସୁମନା ସନ୍ତୋଷକର ହୋଇଅଛନ୍ତି । ୭ ।
ବନର ଜେଉଁ ପ୍ରଦେଶ ଦିତି ଛବି ଧରି ।
ଜନମିତ ଦୈତ୍ୟ ଗଣ-ରୂପ ଅଛି ଧରି । ୮ ।

---

୬ଷ୍ଠ ପଦ—ଅଦିତି—ଦେବମାତା  ବସ୍ୱତ—ସୂର୍ଯ୍ୟ,  ଶିଖିମଣ୍ଡିତା ( ବଣମଲ୍ଲୀ ) ଅନୁଭବ—ତେଜ । ଶିଖୀ—ବୃକ୍ଷ, ମୟୂର, ଅଗ୍ନି ।

୭ମ ପଦ—ବରୁଣ—ଜଳାଧିପତି ଦେବତା, ବରୁଣ ବୃକ୍ଷ । ଦେବବଲ୍ଲଭ—ଇନ୍ଦ୍ର, ପୁନ୍ନାଗ ବୃକ୍ଷ । ସୁମନା—ଦେବତା, ପୁଷ୍ପ ।

୮ମ ପଦ—ଦିତି ରାକ୍ଷସ ମାତା । ଦୈତ୍ୟ—ରାକ୍ଷସ, କଣ୍ଟାଗଛ ।

---

୬ଷ୍ଠ ପଦ—ସେହି ତପୋବନର କୌଣସି ଅଂଶ ଦେବମାତା ଅଦିତିଙ୍କ ପରି ଦେଖା ଯାଉଅଛି । କାରଣ ଦେବମାତା ଯେପରି ସୂର୍ଯ୍ୟ ଅଗ୍ନିଙ୍କର ତେଜରେ ତେଜସ୍ୱିନୀ ( ମନୋହର ) ଦେଖାଯାନ୍ତି, ଏହି ବନ ସେହିପରି ଶିଖିମଣ୍ଡିତାର ସୌନ୍ଦର୍ଯ୍ୟରେ ସୌନ୍ଦର୍ଯ୍ୟାନ୍ୱିତ ବୃକ୍ଷମାନଙ୍କ ଦ୍ୱାରା ସୁଶୋଭିତ ହୋଇଅଛି, ଅର୍ଥାତ୍ ବଣମଲ୍ଲୀ ଲୁଣ୍ଠିତ ବୃକ୍ଷ ଉପରେ ମାଡ଼ି ସଦ୍ୟ ପ୍ରସ୍ଫୁଟିତ କୁସୁମରେ ମଣ୍ଡିତ ହୋଇ ଥିବାରୁ ବନର ଜେଉଁ ଜେଉଁ ଅଂଶ ମନୋହର ଦେଖା ଯାଇଅଛି ।

୭ମ ପଦ—ଅଉ ମଧ୍ୟ ଦେବମାତା ଯେପରି ବରୁଣ ଓ ଇନ୍ଦ୍ରଙ୍କୁ ଜନ୍ମ କରି ଦେବତାମାନଙ୍କର ଅସୀମ ସନ୍ତୋଷ ବିଧାନ କରିଅଛନ୍ତି, ସେହିପରି ଏହି ବନର କୌଣସି କୌଣସି ଅଂଶର ବରୁଣ ଓ ପୁନ୍ନାଗ ବୃକ୍ଷମାନେ ଜନ୍ମି ବହୁ ପୁଷ୍ପରେ ମଣ୍ଡିତ ହୋଇଥିବାରୁ ବନସ୍ଥଳୀ ଦର୍ଶକମାନଙ୍କର ସନ୍ତୋଷ ବିଧାନ କରୁଅଛି ।

୮ମ ଓ ୯ମ ପଦ—ସେହି ବନର ଜେଉଁ ପ୍ରଦେଶ ଦୈତ୍ୟମାତା ( ଦିତି )ଙ୍କର ଛବି ଧାରଣ କରିଅଛି । କାରଣ ଦୈତ୍ୟମାତା ଯେପରି ଦୈତ୍ୟ (ରାକ୍ଷସ)ମାନଙ୍କୁ ଜନ୍ମ କରି ଅଛନ୍ତି, ଏ ସେହିପରି 'ଦୈତ୍ୟଗଣରୂପ' ରାକ୍ଷସମାନଙ୍କ ତୁଲ୍ୟ ଅତି ଭୀଷଣ 'ଦୈତ୍ୟ' ମୁରମାଂସୀ ପ୍ରଭୃତି କଣ୍ଟା ବୃକ୍ଷମାନଙ୍କୁ ଜନ୍ମ କରିଅଛି ଏବଂ ଦିତି ଯେପରି ମନୋହର କଶ୍ୟପ ଋଷିଙ୍କର ପୃଷ୍ଠରେ ସବୁବେଳେ ଅତି ଅଧିକ ଭାବରେ ପୁତ୍ର ପବନକୁ ଖେଳାଉଥିଲେ । ଅର୍ଥାତ୍ ଦିତି

ବିସ୍ତାରିଛି ପବନଲୀଳାକୁ ନିରନ୍ତର ।
ବିଶେଷତ ମୁନି ନଗରେ ସେ ମନୋହର । ୯ ।
ବନର କେଉଁ ପ୍ରଦେଶ ରଞ୍ଜନେ ରଞ୍ଜନ ।
ବିନତା ପ୍ରାୟେ ଅରୁଣ ସୁପର୍ଣ୍ଣ ସୁମନ । ୧୦ ।
ବନର କେଉଁ ପ୍ରଦେଶ କଦ୍ରୂ ଛବି ବହି ।
ବହୁସୁନ୍ଦର ହୋଇଛି ନାଗେଶ୍ୱରହିଁ । ୧୧ ।

---

୯ମ ପଦ—ମୁନି ନଗରେ—କଶ୍ୟପଙ୍କ ନଗରେ, ଅଗସ୍ତି ବୃକ୍ଷରେ ।

୧୦ମ ପଦ—ରଞ୍ଜନେ—ରକ୍ତଚନ୍ଦନ ବୃକ୍ଷରେ । ରଞ୍ଜନ—ଅନୁରାଗଜନକ ଅର୍ଥାତ୍ ଶୋଭିତ । ବିନତା—ଗରୁଡଙ୍କ ମାତା । ଅରୁଣ—ସୂର୍ଯ୍ୟଙ୍କ ସାରଥି, ଈଷତ୍ ରକ୍ତବର୍ଣ୍ଣ । ସୁପର୍ଣ୍ଣ—ଗରୁଡ଼, କୋମଳ ପତ୍ର । ସୁମନ—ଆନନ୍ଦ ମନ, ପୁଷ୍ପ ।

୧୧ଶ ପଦ—କଦ୍ରୂ—ନାଗମାତା । ନାଗେଶ୍ୱର—ନାଗଶ୍ରେଷ୍ଠ, ନାଗେଶ୍ୱର ବୃକ୍ଷ ।

---

କଶ୍ୟପଙ୍କର ଜ୍ୟେଷ୍ଠା ପତ୍ନୀ, ତାଙ୍କର ପୁତ୍ର ଅସୁରମାନେ କନିଷ୍ଠା ଅଦିତିଙ୍କ ପୁତ୍ର ଦେବତାମାନଙ୍କଠାରୁ ଭୟ ପାଇ ପିଲା ଦିନୁ ଘର ଛାଡ଼ି ଚାଲି ଯାଉଥିବାରୁ ଦିତି ପୁତ୍ରମାନଙ୍କୁ ଖେଳାଇ ପାରି ନ ଥିଲେ । ପବନ ଦେବତା ହୋଇ ତାଙ୍କଠାରୁ ଜନ୍ମ ହୋଇଥିବାରୁ, ଦେବତାମାନଙ୍କୁ ଭୟ ନ କରି ପିଲା ଦିନେ ଘରେ ରହିଥିଲେ ଓ ଦିତିଙ୍କ ଦ୍ୱାରା ଅତି ଆଦରରେ ଲାଳିତ ପାଳିତ ହୋଇଥିଲେ ) । ସେହିପରି ପବନ ଏହି ବନର ମନୋହର ଅଗସ୍ତି ବୃକ୍ଷ ସଂକୁଳ କେଉଁ ପ୍ରଦେଶରେ ଅନ୍ୟାନ୍ୟ ପ୍ରଦେଶ ଅପେକ୍ଷା ଅତି ଅଧିକ ଭାବରେ ସବୁବେଳେ କ୍ରୀଡ଼ା କରୁଅଛି । ( ଅର୍ଥାତ୍ ଅଗସ୍ତି ବୃକ୍ଷ ଗୁଡିକ ଅତିଶୟ ଡେଙ୍ଗା ହୋଇ ଥିବାରୁ ଅତି ଧୀର ପବନରେ ମଧ୍ୟ ଦୋହଲି ଅଛନ୍ତି ।

୧୦ମ ପଦ—ସେହି ବନର ଅନ୍ୟ କେଉଁ ପ୍ରଦେଶ ରକ୍ତଚନ୍ଦନ ବୃକ୍ଷମାନଙ୍କ ଦ୍ୱାରା ଶୋଭିତ ହୋଇଥିବାରୁ ଗରୁଡ ମାତା ବିନତାଙ୍କ ପରି ଦେଖା ଯାଉଛି । କାରଣ ବିନତା ଯେପରି ଅରୁଣ ଓ ଗରୁଡ଼ ଦୁଇ ପୁତ୍ରଙ୍କ ଦ୍ୱାରା ଶୋଭିତ ହୋଇଥାନ୍ତି, ଏହି ବନର ରକ୍ତଚନ୍ଦନ ବୃକ୍ଷସଂକୁଳ ପ୍ରଦେଶ ମଧ୍ୟ ଈଷତ୍ ରକ୍ତ ବର୍ଣ୍ଣ କୋମଳ ପତ୍ରମାନଙ୍କୁ ଧାରଣ କରିଅଛି ଓ ପୁଷ୍ପ ବିମଣ୍ଡିତ ହୋଇଅଛି ।

୧୧ଶ ପଦ ସେହିପରି ଅନ୍ୟ କେଉଁ ପ୍ରଦେଶ ନାଗମାତାଙ୍କର ଶୋଭାକୁ ଧାରଣ କରିଅଛି । କାରଣ ନାଗମାତା ଯେପରି ନାଗଶ୍ରେଷ୍ଠମାନଙ୍କ ଦ୍ୱାରା ଶୋଭିତ ହୋଇଥାନ୍ତି, ସେ ପ୍ରଦେଶ ସେହିପରି ନାଗେଶ୍ୱର ବୃକ୍ଷମାନଙ୍କ ଦ୍ୱାରା ଶୋଭିତ ହୋଇଅଛି ।

ବନ ଯେଉଁ ପ୍ରଦେଶ ସଙ୍ଗୀତର ଶାଳା ।
ବ୍ୟୋମଲ୍ଲସିକା ନର୍ତ୍ତିକେ ହୋଇଅଛୁ ମେଳା ।୧୨।
ବିରଳ ଗନ୍ଧର୍ବଗାନେ ଖ୍ୟାତ ସାତସ୍ୱର ।
ବିତାଳ ହୋଇଣ ରାଗ ଜାତ ମନୋହର ।୧୩।
ବସନ୍ତ ବାସ କରନ୍ତୁ କେଦାରହୁଁ ମେଳ ।
ବିଚଳିତ ଯହିଁରେ ସଦା ସୁମରଦଳ ।୧୪।
ବର୍ଣ୍ଣୁଥିଲେ ସରିବାର ନୁହେଁ ଏ ଚରିତ ।
ବିଶ୍ରାମ କଲେ କୌଶିକମଠେ ରଘୁସୁତ ।୧୫।

---

୧୨ଶ ପଦ—ପ୍ରଦେଶ—ଅଂଶ । ବ୍ୟୋମଲ୍ଲସିକା—ନୃତ୍ୟନର୍ତ୍ତକୀ, ଭରଣ୍ଡଅ ପକ୍ଷୀ ।

୧୩ଶ ପଦ—ବିରଳ—ନିର୍ମଳ । ଗନ୍ଧର୍ବ—ଗାୟକ, କୋକିଳ । ରାଗ—ଗୀତର ରାଗ, ସ୍ନେହ ।

୧୪ଶ ପଦ—ବସନ୍ତ—ବସନ୍ତ ରାଗ, କୁଳଦାବସନ୍ତ ପକ୍ଷୀ । କେଦାର—ରାଗ ବିଶେଷ । ଅଳବାଳ—ମନ୍ଦ । ସୁ-ମରଦଳ ଉତ୍ତମ ମର୍ଦ୍ଦଳ, ପୁଷ୍ପ ।

---

୧୨—୧୪ଶ ପଦ—ବନର ଯେଉଁ ଅଂଶ ସଙ୍ଗୀତଶାଳା ପରି ହୋଇଅଛି । ସଙ୍ଗୀତଶାଳା ସ୍ୱର୍ଗ ନର୍ତ୍ତକୀର ନୃତ୍ୟରେ ରଞ୍ଜିତ ହେଲା ପରି ଏହା ଭରଣ୍ଡଅ ପକ୍ଷୀର ନୃତ୍ୟରେ ଶୋଭିତ ହୋଇଅଛି । ଗନ୍ଧର୍ବଙ୍କ ପରି ଗାନ କରୁଥିବା ନିର୍ମଳ ଗାୟକମାନଙ୍କର ସୁନ୍ଦର ରାଗ ଓ ତାଳ ବିଶିଷ୍ଟ ସପ୍ତସ୍ୱର ଗାନରେ ସଙ୍ଗୀତଶାଳା ମୁଖରିତ ହେଲା ପରି ( ବନର ଯେଉଁ ଅଂଶ ) କୋକିଳର ଅନୁରାଗ ଜଡ଼ିତ ସପ୍ତସ୍ୱରରେ ( ସାତ=ସୂକ୍ଷ୍ମ; ସୂକ୍ଷ୍ମ ସ୍ୱର ମଧ୍ୟ ହେବ) ମୁଖରିତ ହେଉଅଛି । ( ସଙ୍ଗୀତଶାଳାରେ ତାଳ ଲୟ ବିଶିଷ୍ଟ ସଙ୍ଗୀତ ଗାନ ହୁଏ ) ବନ ପ୍ରଦେଶରେ ମଧ୍ୟ ତାଳ ଗଛ ବିଶେଷ ଭାବରେ ବିଦ୍ୟମାନ ଥାଏ । ସଙ୍ଗୀତ ଶାଳାରେ ବସନ୍ତ ରାଗ ବାସ କରିଥାଏ, କେଦାର ରାଗ ମଧ୍ୟ ମିଳିତ ହୋଇଥାଏ, ସେଥିରେ ଉତ୍ତମ ମର୍ଦ୍ଦଳମାନ ବାଜୁଥାଏ । ସେହିପରି ବନ ପ୍ରଦେଶରେ ବସନ୍ତପକ୍ଷୀ ( କୁଳଦା ବସନ୍ତ ) ଓ ବୃକ୍ଷମୂଳର ମନ୍ଦା ସବୁ ରହିଅଛି, ଆଉ ମଧ୍ୟ ଫୁଲର ପାଖୁଡ଼ା ସବୁ ( ସୁମ—ଫୁଲ, ଦଳ—ପାଖୁଡ଼ା ) ପବନରେ ବିଚଳିତ ହେଉଅଛନ୍ତି ।

୧୫ଶ ପଦ—ସେହି ବନ କଥା ବର୍ଣ୍ଣନା କରୁଥିଲେ ତାହା ସରିବାର ନୁହେଁ । ସେ ବନରେ ଥିବା ବିଶ୍ୱାମିତ୍ରଙ୍କ ମଠରେ ରାମ ଲକ୍ଷ୍ମଣ ବିଶ୍ରାମ କଲେ ।

ବାନପ୍ରସ୍ଥ ଗୃହୀମାନେ ଭୁବନେ ମିଳଲେ ।
ବ୍ରହ୍ମଚାରୀ ଦଣ୍ଡୀ ଆସି ଆଶିଷ କହିଲେ । ୧୬ ।
ତୋଷି ବିବିଧ ଅଶନେ ମନ ତାହାଙ୍କର ।
ବସିଲେ ସ୍ୱଜନରେ ଚନ୍ଦ୍ର ବରେ ଅଙ୍ଗଣର । ୧୭ ।
ବିଗତ ଭୟ ହୋଇଣ ରାକ୍ଷସଙ୍କ ହେତୁ ।
ବୋଇଲେ ରଘୁନନ୍ଦନ ଆରମ୍ଭ ହେ କ୍ରତୁ । ୧୮ ।
ଏତ ପ୍ରକାଶକୁ ଶୁଣି ଆନନ୍ଦ ହୋଇଲେ ।
ବିବିଧ ବିଧି ସମିଧେ ଯଜ୍ଞ ଆରମ୍ଭିଲେ । ୧୯ ।
ବୀତହୋତ୍ର ପ୍ରିୟା ନାଦ ଶ୍ରବଣେ ଅସୁପେ ।
ବ୍ୟଗ୍ରବନ୍ତେ ପରବେଶ ହୋଇଲେ ସମୀପେ । ୨୦ ।
ଶସ୍ତ୍ରଯୁଧ ଧୃତ କୋପେ ପ୍ରଜ୍ୱଳିତ ମୂର୍ତ୍ତି ।
ବିଶ୍ୱକେତୁ ନାମ ପୁନଃ ପୁନଃ ବୋଲୁଛନ୍ତି ।

---

୧୭ଶ ପଦ—ଅଶନ—ଭୋଜନ । ଅଙ୍ଗଣ—ଅଗଣା ।

୧୮ଶ ପଦ—ବିଗତଭୟ—ନିର୍ଭୟ । କ୍ରତୁ—ଯଜ୍ଞ ।

୧୯ଶ ପଦ—ସମିଧ—ହୋମକାଷ୍ଠ ।

୨୦ଶ ପଦ—ବୀତହୋତ୍ର ପ୍ରିୟା—ସ୍ୱାହା ଦେବୀ । ଅସୁପେ—ରାକ୍ଷସମାନେ ।

୨୧ଶ ପଦ—ବିଶ୍ୱକେତୁ—ମାର ।

---

୧୬ଶ ପଦ—( ରାମଚନ୍ଦ୍ର ଆସିବାର ଖବର ପାଇ ) ଗୃହୀମାନେ ଓ ବାନପ୍ରସ୍ଥାଶ୍ରମୀମାନେ ଆସି ଭୁବନ ମିଳିଲେ । ତାହାପରେ ବ୍ରହ୍ମଚାରୀମାନେ ଓ ଦଣ୍ଡୀମାନେ ଆସି ଆଶୀର୍ବାଦ କଲେ ।

୧୭ଶ ପଦ—ତତ୍ପରେ ବଶିଷ୍ଠ ନାନା ପ୍ରକାର ଭୋଜନରେ ତାହାଙ୍କର ମନକୁ ତୋଷ କରି ସ୍ୱଜନରେ ଚନ୍ଦ୍ର କରଣରେ ଅଗଣା ମଧ୍ୟରେ ବସିଲେ ।

୧୮ଶ ପଦ—ରାମ କହିଲେ, "ହେ ମୁନିଶ୍ରେଷ୍ଠ ! ରାକ୍ଷସମାନଙ୍କଠାରୁ ତୁମ୍ଭେ ନିର୍ଭୟ ହୋଇ ଯାଗ ଆରମ୍ଭ କର ।"

୧୯ ଶ ପଦ—ରାମ ଏହି ବଚନ ପ୍ରକାଶ କରନ୍ତେ, ବଶିଷ୍ଠ ଆନନ୍ଦ ହୋଇ ନାନାପ୍ରକାର ଯଜ୍ଞୋପକରଣ ନିକଟ ଓ ହୋମ କାଷ୍ଠରେ ଯାଗ ଆରମ୍ଭ କଲେ ।

୨୦—ଶ ପଦ—ରାକ୍ଷସମାନେ ଅଗ୍ନିଙ୍କର ପ୍ରିୟା ସ୍ୱାହା ଶବ୍ଦ ଶୁଣି ଖର-ତରରେ ଆସି ଯଜ୍ଞ ସମୀପରେ ପ୍ରବେଶ ହେଲେ ।

୨୧ଶ ପଦ - ସେ ରାକ୍ଷସମାନେ ଖଡ୍ଗ ଧରି ଅଛନ୍ତି ଓ କ୍ରୋଧରେ ପ୍ରଜ୍ୱଳିତ ହୋଇ ମାର ମାର ବୋଲି ଥରକୁ ଥର କହୁଅଛନ୍ତି ।

ବ୍ୟାଘ୍ରଗଣ ଅଘାଣେ ଗୋ ପର ପଳାଇତ ।
ବୋଲି ବେଳାପର୍ଥେ ରକ୍ଷ ରକ୍ଷ ଋଷିବ୍ରାତ । ୨୨ ।
ବାଣ ଧନୁ ଦୁହେଁ ଧରି ଶ୍ରୀରାମ ଲକ୍ଷ୍ମଣ ।
ବୀରୁଁ ଅନ୍ତରୁ ବାହାରି ଏ ରବ ଶ୍ରବଣ । ୨୩ ।
ବୋଲି ଏକାନ୍ତ ସ୍ଥଳର ନାମ ପୁନଃ ପୁନଃ ।
ବାହିନୀ ଦୁହିଙ୍କି ଦେଖି ତୃଣର ସମାନ । ୨୪ ।
ବାତାସ୍ତ୍ରେ ମାରୀଚ ଲକ୍ଷେ ଯୋଜନେ ପକାଇ ।
ବଭ୍ରବସୁ ଅସ୍ତ୍ରେ ଦେଲେ ସୁବାହୁ ଜଳାଇ । ୨୫ ।
ବଲ୍ଲେଦଳେ ଲକ୍ଷ୍ମଣ ସମସ୍ତ ସୈନ୍ୟ-ବର୍ଗ ।
ବଂଶଜରୁଁ ଚାଲୁ ସେ କୁଠାରପାଣି ପରି । ୨୬ ।

---

୨୨ଶ ପଦ—ଋଷିବ୍ରାତ—ମୁନି ସମୂହ ।
୨୩ଶ ପଦ—ବୀରୁ—ଲତା ମଧ୍ୟରୁ ।
୨୪ଶ ପଦ—ଏକାନ୍ତ ସ୍ଥଳର ନାମ—'ରକ୍ଷ' । ବାହିନୀ—ସେନା ।
୨୫ଶ ପଦ—ବାତାସ୍ତ୍ରେ—ପବନାସ୍ତ୍ରରେ । ବଭ୍ରବସୁ ଅସ୍ତ୍ର—ଅଗ୍ନ୍ୟାସ୍ତ୍ର ।
୨୬ଶ ପଦ—କୂଳର ଗୋଟିଏ ପ୍ରତିଶବ୍ଦ 'ବଂଶ' ଶୁଣି ବଂଶର ଅନ୍ୟ ନାମ ବାଉଁଶ, ଅତଏବ 'ବଂଶଜରୁ' ଅର୍ଥାତ୍ ସେମାନଙ୍କର କୂଳକୁ ବାଉଁଶ ମନେ କରି । କୁଠାରପାଣି—ଶବର ।

---

୨୨ଶ ପଦ—ଗୋରୁଙ୍କୁ ବ୍ୟାଘ୍ର ଗନ୍ଧ ଘ୍ରାଣରେ ପଳାୟନ କଲାପରି ମୁନିମାନେ "ରାକ୍ଷସ ରାକ୍ଷସ" କହି ପଳାଇ ଗଲେ ।

୨୩ଶ ପଦ—( ମୁନିଙ୍କର ) ଏପରି ଶବ୍ଦ ( ରକ୍ଷ ରକ୍ଷ ଶବ୍ଦ ) ଶ୍ରବଣ କରି ରାମ ଓ ଲକ୍ଷ୍ମଣ ଦୁହେଁ ବାଣ ଓ ଧନୁକୁ କୁହୁରି ସହିତ ଧରି ଲତା ଅନ୍ତରାଳରୁ ବାହାରି ଦେଲେ ।

୨୪ଶ ଓ ୨୫ ପଦ—ସେ ଦୁହେଁ 'ରକ୍ଷ ରକ୍ଷ' ବୋଲି କହି ଆସିଲେ । ମାରୀଚ ଓ ସୁବାହୁ—ଏ ଦୁଇ ସେନାପତିଙ୍କୁ ତୃଣ ସମାନ ମନେ କରି ପବନାସ୍ତ୍ରରେ ମାରୀଚ ଦୈତ୍ୟକୁ ଲକ୍ଷ ଯୋଜନ ପର୍ଯ୍ୟନ୍ତ ଉଡାଇ ଦେଲେ ଓ ଅଗ୍ନି ଅସ୍ତ୍ରରେ ସୁବାହୁ ରାକ୍ଷସକୁ ପୋଡ଼ି ଦେଲେ ।

୨୬ଶ ପଦ—ରାକ୍ଷସମାନଙ୍କୁ ବାଉଁଶ ଗଛ ମନେ କରି ଶବର କୁଠାର ଦ୍ୱାରା ବାଉଁଶ ଗଛ ନିର୍ମୂଳ କଲା ନ୍ୟାୟ ଲକ୍ଷ୍ମଣ ରାକ୍ଷସ ବଂଶ ବିଶେଷ ଭାବରେ ବିନାଶ କଲେ । [ କର୍ଣ୍ଣ ବଂଶ ଭାବରୁ—ଗଜାସୁର ବଂଶଧର ବୋଲି ଭାବି ଲକ୍ଷ୍ମଣ ମହାଦେବଙ୍କ ପରି ସମସ୍ତଙ୍କୁ ବିନାଶ କଲେ ) ।

ବହୁତକାଳୁଁ ଅତୃପ୍ତା ପୃଥ୍ୱୀଦେବୀ ଥିଲେ ।
ବହୁ ରଙ୍ଗ ଶୋଣିତେ କି ମନ୍ଦାର ପୂଜିଲେ । ୨୭ ।
ବାସ୍ପ ଖଣ୍ଡା ଖରାଇଲା ନେତ୍ରୁ ଚନ୍ଦ୍ରିକୁଲେ ।
ବସ୍ତି ହେଲା ଅଳୁଁ ମୋ ପୁତ୍ରଙ୍କ ଅନୁକୂଳେ । ୨୮ ।
ବସାଇଲେ ଅଧଃସ୍ୱର୍ଗେ ହଟରେ ଯିଏଙ୍କୁ ।
ବାହୁଡ଼ ସେ ଅରମ୍ଭିଲେ ଯଜ୍ଞକୁ କାଃଣଙ୍କୁ । ୨୯।
ବାସବାଦ ଦେବେ ହବ ଭୁଞ୍ଜି ତୋଷ ହେଲେ ।
ବାହୁଡ଼ୁଁ ପୁରକୁ ରାମଭଦ୍ର ପଚାରିଲେ । ୩୦
ବପୁଳ କାମ୍ୟକ ବନେ ଥରେ ଭ୍ରମିଯିବା ।
ବୋଲି ବାହାରିଲେ ମୁନି ସେନି ବେନି ଯୁବା । ।୩୧ ।
ବାଟେ ସେ ବନରେ ପଡିଥିଲା ଦଦ୍ୟଁଶିଳା ।
ବଶୋଭୁଁ ରାମଚରଣ ଲାଗି ସେ ଅବଳା ।୩୨।

---

୨୮ଶ ପଦ—ବସ୍ତି—ଅଶୁଭ । ବାଷ୍ପ—ଲୋତକ । ଖଣ୍ଡା—ରାକ୍ଷସମାତା ବଡ ।

୩୨ଶ ପଦ—ବଶୋଭୁଁ—ବିଶ୍ରାମ କରୁଁ ।

---

୨୭ଶ ପଦ—ପୃଥ୍ୱୀଦେବୀ ବହୁ କାଳରୁ ଅତୃପ୍ତା ଥିଲେ [ ରାକ୍ଷସମାନେ ଯାଗ ନଷ୍ଟ କରି ଦେଉଥିବାରୁ ଯଜ୍ଞାଦିକର୍ମ ହୋଇ ପାରୁ ନ ଥିଲା । ରାମ ଲକ୍ଷ୍ମଣ ପୃଥ୍ୱୀକୁ ରାକ୍ଷସଙ୍କ ରକ୍ତରେ ରଙ୍ଗ କରିଦେଲେ । ଏହା ଦେଖି ମନେ ହେଲା, ସେ ମନ୍ଦାର ପୁଷ୍ପରେ ପୃଥ୍ୱୀ ଦେବୀଙ୍କୁ ପୂଜା କଲେ କି ?

୨୮ଶ ପଦ—ରାକ୍ଷସ ମାତା ଚନ୍ଦ୍ରାରେ ଅକୁଳ ହୋଇ ନେତ୍ରରୁ ଲୋତକ ବୁହାଇଲା । ( ସେ ଭାବିଲା ) ଆଜିଠାରୁ ମୋ ପୁତ୍ରଙ୍କର ଅନୁକୂଳରେ ଅଶୁଭ ହେଲା ।

୨୯ଶ ପଦ—କୌତୁକରେ ଯିଏଙ୍କୁ ରାଜାଙ୍କୁ ଅଧଃସ୍ୱର୍ଗରେ ଯେଉଁ ବିଶ୍ୱାମିତ୍ର ବସାଇଥିଲେ, ସେ ନିର୍ଭୟରେ ବାହୁଡ଼ି ପୁଣି ଯଜ୍ଞ ଆରମ୍ଭ କଲେ ।

୩୦ଶ ପଦ—[ ଯାଗ ହେବାରୁ ] ଇନ୍ଦ୍ରାଦି ଦେବତାମାନେ ଯଜ୍ଞଭାଗ ପାଇ ତୋଷ ହେଲେ ଅର୍ଥାତ୍ ଯଜ୍ଞ ଶେଷ ହେଲା । ତାହା ପରେ ରାମଚନ୍ଦ୍ର ବିଶ୍ୱାମିତ୍ରଙ୍କୁ ପଚାରିଲେ, "ଆମେ ଅଯୋଧ୍ୟାକୁ ବାହୁଡ଼ି ଯାଉଛୁଁ ।"

୩୧ଶ ପଦ—ଏହା ଶୁଣି ବିଶ୍ୱାମିତ୍ର 'କିଛି କାମ୍ୟକ ବନକୁ ଥରେ ବୁଲିଯିବା' ଏହା କହି ରାମ ଲକ୍ଷ୍ମଣଙ୍କୁ ସଙ୍ଗରେ ନେଇ ବାହାରିଲେ ।

୩୨ଶ ପଦ—ସେ କାମ୍ୟକ ବନକୁ ଯିବା ବାଟରେ ଗୋଟିଏ ସୁନ୍ଦର ପଥର ପଡିଥିଲା । ବିଶ୍ରାମ କରିବା ବେଳେ ରାମଙ୍କ ଚରଣ ଲାଗି ସେ ପଥର ସ୍ତ୍ରୀ ହୋଇଗଲା ।

ବିସ୍ମୟ ହୋଇ ଅନାଇଁ ଭାବି ରଘୁପତି ।
ବନୀତାର ବନିତାର ପ୍ରଭା ଏକାକୃତି । ୩୩ ।
ବନପ୍ରିୟ ତୋଷଦାନୀ ରମଣୀ ଏ ଲୋକେ ।
ବନପ୍ରିୟ ତୋଷଦାନୀ ରମଣୀଏ ଲୋକେ ।୩୪।
ବିସଙ୍ଗ ବର-କନକ-କଦମ୍ବ ରୁଚିରେ ।
ବିସଙ୍ଗବର କନକ କଦମ୍ବ ରୁଚିରେ । ୩୫ ।
ବାସରେ ଅଚ୍ଛିନ୍ନ ଶୋଭା ତୁଙ୍ଗ ପୟୋଧରେ ।
ବାସରେ ଅଚ୍ଛିନ୍ନ ଶୋଭା ତୁଙ୍ଗ ପୟୋଧରେ ।୩୬।

---

୩୩ଶ ପଦ—ବନୀତାର—ପୁଷ୍ପବାଟିକାର । ବନିତା—ରମଣୀ । ପ୍ରଭା—ଦୀପ୍ତି ବା କାନ୍ତି ।

୩୪ଶ ପଦ—ବନପ୍ରିୟ—ଗୌତମ ମହର୍ଷି ( ଜନ ପ୍ରିୟ ଯାହାଙ୍କର ) ଲୋକେ—ଅବଲୋକନ ଦ୍ୱାରା । ବନପ୍ରିୟ—କୋକିଳ । ରମଣୀ—ସ୍ତ୍ରୀ, କମନୀୟା ।

୩୫ଶ ପଦ—ବର-କନକ କାଦମ୍ବ—ଉତ୍ତମ ବର୍ଣ୍ଣ ବିଶିଷ୍ଟସୁବର୍ଣ୍ଣ ସଦୃଶ । ରୁଚିରେ—ମନୋହର ଭାବରେ । ବି-ସଙ୍ଗ—ପକ୍ଷିସମୂହ ।

୩୬ଶ ପଦ—ବାସରେ—ବସ୍ତ୍ରଦ୍ୱାରା, ସୁଗନ୍ଧଦ୍ୱାରା । ଅଚ୍ଛିନ୍ନ—ଆବୃତ, ପରିପୂର୍ଣ୍ଣ । ତୁଙ୍ଗ—ସମୁନ୍ନତ, ଉଚ୍ଚ । ପୟୋଧର—ସ୍ତନ, ନାରିକେଳ ବୃକ୍ଷ ।

---

୩୩ଶ ପଦ—ରାମ ବିସ୍ମୟ ହୋଇ ତାକୁ ଅନାଇ ଭାବିଲେ, 'ଏ ଉଦ୍ୟାନ ବନର ଦୀପ୍ତି ଓ ଏ ବାମାର ଶୋଭା ଏକାଭଳି ହୋଇଅଛି ।'

୩୪ଶ ପଦ—'ଏ ବନ କୋକିଳଙ୍କର ଆନନ୍ଦଦାୟକ ଓ ପୃଥିବୀରେ ମନୋରମ ଅଟେ । ଏ ବନିତା ମଧ୍ୟ ମୁନିଙ୍କର ଆନନ୍ଦଦାୟିକା ଓ ଲୋକଙ୍କ ମଧ୍ୟରେ କମନୀୟା ଅଟେ ।'

୩୫ଶ ପଦ—'ଏ ବନ ପକ୍ଷୀମାନଙ୍କ ଦ୍ୱାରା ମଣ୍ଡିତ, ବଉଳ, ପଳାଶ, କଦମ୍ବ ବୃକ୍ଷରେ ଶୋଭିତ ହୋଇଅଛି; ସେହିପରି ଏ ବନିତାଶ୍ରେଷ୍ଠ ଶୁଭ୍ର ସୁବର୍ଣ୍ଣର ଦୀପ୍ତିରେ ଦେଦୀପ୍ୟମାନ ।'

୩୬ଶ ପଦ—'ଏ ବନ ପୁଷ୍ପ ସୌରଭରେ ଆମୋଦିତ ଓ ଅତି ଉଚ୍ଚ ନାରିକେଳ ବୃକ୍ଷମାନଙ୍କ ଦ୍ୱାରା ଆଚ୍ଛାଦିତ ହୋଇଅଛି । ଏ ବନିତା ମଧ୍ୟ ତଦ୍ରୂପ ଉନ୍ନତ ସ୍ତନ ଦ୍ୱୟକୁ ଲୁଗାରେ ଆଚ୍ଛାଦନ କରି ଶୋଭା ପାଉଅଛି ।'

ବେଣୀ କେଶରେ ରଞ୍ଜନ ସିନ୍ଦୂର ଛଟାରେ ।
ବେଣୀ କେଶରେ ରଞ୍ଜନ ସିନ୍ଦୂର ଛଟାରେ । ୩୭ ।
ବଳା, ମଲ୍ଲିକଢ଼ି, ଫୁଲ ମଣ୍ଡନ ଅତୁଲ ।
ବଳା, ମଲ୍ଲିକଢ଼ି, ଫୁଲ ମଣ୍ଡନ ଅତୁଲ । ୩୮ ।
ବିବେକ ବିଲୋକ ପୁଚ୍ଛା କଲେ ଦଶରଥି ।
ବରାଙ୍ଗନା ହେଲା ଶିଳା କି ବିଷୟ ଏଥି ?
ବିଶ୍ୱାମିତ୍ର ବୋଲେ ଅହେ ମିତ୍ରବଂଶୀ ଶୁଣ ।
ବିଧାତା ଭଗ୍ନ ଉର୍ବଶୀ ସୁନ୍ଦରିମା ଠାଣ । ୪୦ ।
ବିଧାତା ସର୍ବଲାବଣ୍ୟଧାମ କରି କରୁଁ
ବୃନ୍ଦାର ଭାନୁ ମାଗିଲେ ଦେଖି ଏହା ଗୁରୁ । ୪୧ ।

---

୩୭ଶ ପଦ—ବେଣୀ—ଦେବଦାରୁ ବୃକ୍ଷ । କେଶର—ନାଗେଶ୍ୱର ବୃକ୍ଷ । ରଞ୍ଜନ—ରକ୍ତଚନ୍ଦନ ବୃକ୍ଷ । ସିନ୍ଦୂରଛଟା—ରକ୍ତବର୍ଣ୍ଣ ବୃକ୍ଷ ବିଶେଷ ।

୩୮ଶ ପଦ—ଅତୁଲ—ଉପମାହୀନ ।

୪୦ଶ ପଦ—ମିତ୍ରବଂଶୀ—ସୂର୍ଯ୍ୟବଂଶୀୟ । ସୁନ୍ଦରିମାଠାଣ—ସୌନ୍ଦର୍ଯ୍ୟର ଗର୍ବ ।

୪୧ଶ ପଦ—ବୃନ୍ଦାର—ଇନ୍ଦ୍ର । ଭାନୁ—ସୂର୍ଯ୍ୟ ।

---

୩୭ଶ ପଦ—'ଏ ବନ ଦେବଦାରୁ, ନାଗେଶ୍ୱର, ସିନ୍ଦୂର, ରକ୍ତଚନ୍ଦନ ବୃକ୍ଷରେ ରଞ୍ଜିତ ହୋଇଅଛି । ଏ ବନିତା କେଶରେ ପଡିଥିବା ବେଣୀ, ସିନ୍ଦୂର ଓ ତିଳକ ଛଟାରେ ଶୋଭିତ ହୋଇଅଛି ।'

୩୮ଶ ପଦ—'ଏ ବନ କାଣ୍ଡିଆଁ ଲାଗିଛି ଏବଂ ଅତୁଳନୀୟ ବଳ ଓ ଫୁଲରେ ଶୋଭିତ ମଲ୍ଲୀ ଗଛରେ ମଣ୍ଡିତ ହୋଇଅଛି । ଏ ବନିତା ବଳା, ମଲ୍ଲିକଢ଼ୀ କାନଫୁଲ, ଅତୁଳ ପ୍ରଭୃତି ଅଳଙ୍କାର ଦ୍ୱାରା ଭୂଷିତ ହୋଇଅଛି ।'

୩୯ଶ ପଦ—ରାମ ସେ ବନିତାକୁ ଚାହିଁ ଗୁରୁଙ୍କୁ ( ମୁନିଙ୍କୁ ) ପଚାରିଲେ, 'ପାଷାଣ କିପାଁ ସ୍ତ୍ରୀ ହେଲା; ଏଥିର କାରଣ କଣ ?''

୪୦ ଶ ଓ ୪୧ଶ ପଦ—ବିଶ୍ୱାମିତ୍ର କହିଲେ, 'ହେ ସୂର୍ଯ୍ୟବଂଶି ରାମଚନ୍ଦ୍ର ! ଶୁଣ । ବିଧାତା ଉର୍ବଶୀର ସୌନ୍ଦର୍ଯ୍ୟଗର୍ବ ଭଗ୍ନ କରିବା ନିମିତ୍ତ ସର୍ବଲାବଣ୍ୟ ନିଧାନ ସ୍ତ୍ରୀ ( ଏହି ଅହଲ୍ୟା ) ନିର୍ମାଣ କଲେ । ତାହାର ଶୋଭା ଦେଖି ଇନ୍ଦ୍ର ଓ ସୂର୍ଯ୍ୟ ଦୁହେଁ ( ତାହାକୁ ନେବା ନିମିତ୍ତ ) ମାଗିଲେ ।''

ବୁଲି ଧରଣୀ ଯେ ଅଗେ ଆସିବ ଚପଳେ ।
ବାମଲୋଚନା ତାହାକୁ ପ୍ରାପତ ହୋଇଲେ ।୪୨।
ବଚ ସ୍ଫୁରନ୍ତେ ଭ୍ରମିଗଲେ ଦୁଇ ଦେବୋତ୍ତମ ।
ବ୍ୟଜନ ସ୍ୱଚଳନ କରୁଥିଲେ ଗଉତମ । ୪୩ ।
ବୋଇଲେ ତୁମ୍ଭେ ନ ଗଲ କିମ୍ପା ଏ ଭୂମିରେ ।
ବ୍ରହ୍ମ ପ୍ରଦକ୍ଷିଣ କରି ସେ କର ଯୋଡ଼ନ୍ତେ । ୪୪ ।
ବିଭା କରୁଛନ୍ତି ତାଙ୍କୁ ହୋଇ ପୁରୋହିତ ।
ବଡ଼ ଅଭିମାନ ପାଇ ରବି ପୁରୁହୂତ । ୪୫ ।
ବ୍ରାହ୍ମଣ ଭାର୍ଯ୍ୟା ହେବାରୁ ତପନ ନିବର୍ତ୍ତି ।
ବିରହେ ସେହି ବିଷୟେ ମହେନ୍ଦ୍ର ପ୍ରବର୍ତ୍ତି । ୪୬ ।
ବଶୀକରଣ ମନ୍ତ୍ରକୁ ସେଦିନୁ ଜପିଲେ ।
ବାଞ୍ଛାବଟ ତଳେ ରମା ସଙ୍ଗ ମନାସିଲେ । ୪୭ ।

---

୪୬ଶ ପଦ :—ତପନ—ସୂର୍ଯ୍ୟ । ମହେନ୍ଦ୍ର—ଇନ୍ଦ୍ର ।
୪୭ଶ ପଦ :—ବାଞ୍ଛାବଟ—ପ୍ରୟାଗସ୍ଥିତ ସ୍ୱନାମ ପ୍ରସିଦ୍ଧ ବଟବୃକ୍ଷ ।

---

୪୨ଶ ପଦ—ବିଧାତା କହିଲେ,—ଯେ ଧରଣୀକୁ ଶୀଘ୍ର ବୁଲି ଅଗ ଆସିବ, ତାହାକୁ ଏ ବାମଲୋଚନା ପ୍ରାପ୍ତ ହେବ ।”

୪୩ଶ ପଦ—“ବ୍ରହ୍ମାଙ୍କ ମୁଖରୁ ଏହି ବାଣୀ ସ୍ଫୁରିବାରୁ ଇନ୍ଦ୍ର ଓ ସୂର୍ଯ୍ୟ ଧରଣୀ ବୁଲିବାକୁ ଗଲେ । [ ସେତେବେଳେ ] ଗୌତମ ଋଷି ( ବିଧାତାଙ୍କ ପାଖରେ ) ପଙ୍ଖା ପକାଉଥିଲେ ।”

୪୪ଶ ଓ ୪୫ଶ ପଦ—“ବ୍ରହ୍ମା ଗୌତମକୁ କହିଲେ,—ଏ କନ୍ୟାପାଇଁ” ତୁମ୍ଭେ ନ ଗଲ କିଆଁ”? ଏହା ଶୁଣି ଗୌତମ ବ୍ରହ୍ମାଙ୍କ ଗୃହ ପାଶ ବୁଲି ଆସି କରଯୋଡ଼ି ଠିଆ ହୁଅନ୍ତେ (ବ୍ରହ୍ମାଙ୍କ ଗୃହପାଖ ବୁଲିବା ଅର୍ଥ ବ୍ରହ୍ମ ଗର୍ଭରେ ସ୍ଥିତ ଭୂମଣ୍ଡଳକୁ ବୁଲିବା) ବ୍ରହ୍ମା ନିଜେ ପୁରୋହିତ ହୋଇ ତାଙ୍କୁ ( ଗୌତମ ଓ ସେ କନ୍ୟା ଅହଲ୍ୟାଙ୍କୁ ) ବିବାହ କରୁଅଛନ୍ତି, ସେତିକିବେଳେ ସୂର୍ଯ୍ୟ ଓ ଇନ୍ଦ୍ର (ପୃଥିବୀ ପର୍ଯ୍ୟଟନରୁ ଫେରି ବିବାହ କାର୍ଯ୍ୟ ଦେଖି) ବଡ଼ ଅପମାନିତ ହେଲେ ।”

୪୬ଶ ପଦ—“ସେହି ସ୍ତ୍ରୀ ବ୍ରାହ୍ମଣର ସ୍ତ୍ରୀ ହେବାରୁ ସୂର୍ଯ୍ୟ ନିବୃତ୍ତ ରହିଲେ, ମାତ୍ର ଇନ୍ଦ୍ର ତାଙ୍କ ବିଷୟରେ ପ୍ରବଳ ବିରହୀ ହୋଇଥିଲେ ।”

୪୭ଶ ପଦ—“ସେହିଦିନ ଇନ୍ଦ୍ର ବଶୀକରଣ ମନ୍ତ୍ର ଜପିଲେ, ପୁଣି ବାଞ୍ଛାବଟ ତଳରେ ରମା ସଙ୍ଗ ମାନସ କଲେ ।”

ବସନ୍ତ, କୋକିଳ, ଅନଙ୍ଗଙ୍କୁ ଉଚ୍ଚାଟନେ ।
ବରଗିଲେ ଅତି ଯତ୍ନ କରି ଏହୁ ବନେ । ୪୮ ।
ବାଡ଼ବେୟଠାରୁ ପାଲଟାଇ ମନୋହର ।
ବକ୍ତ୍ର ବିକାରକୁ ମାନ କରିଣ ଅନ୍ତର । ୪୯ ।
ବିନତି ଏକାନ୍ତେ ଦେଖି ଯେତେ ଭାବେ କହେଲେ ।
ବିସମ୍ମତ ସମ୍ମତଙ୍କ କିଛି ନ ଜାଣିଲେ । ୫୦ ।
ବରବେଶ ବହି ରସେ ମାନସ ଉଲ୍ଲାସୁଁ ।
ବୃଷଦଂଶ ରୂପେ ପଳାୟିତ ଋଷି ଆସୁଁ । ୫୧ ।
ବଳପର ବିନୟୀ ଗୌତମ ପଚ୍ଛାରନ୍ତେ ।
ବିଗ୍ରହେ ସହସ୍ରଭଗ ବହ ଲିଙ୍ଗ ହତେ । ୫୨ ।

---

୪୮ଶ ପଦ—ବାଡ଼ବେୟ—ଅଶ୍ୱିନୀକୁମାର ।
୪୯ଶତ୍ ପଦ—ବକ୍ତ୍ରବିକାର—ମୁଖବିକୃତ ।
୫୧—ଶତ୍ ପଦ—ବୃଷଦଂଶ—ବିରାଡ଼ି ।
୫୨ଶତ୍ ପଦ—ବଳପର—ଇନ୍ଦ୍ର । ବିଗ୍ରହ—ଦେହ ।

---

୪୮ଶ ପଦ—"ଅହଲ୍ୟାଙ୍କୁ ଉଚ୍ଚାଟନ କରିବାପାଇଁ ଇନ୍ଦ୍ର ବସନ୍ତ ଋତୁ, କୋକିଳ ଓ କନ୍ଦର୍ପଙ୍କୁ ଅତି ଯତ୍ନକରି ଏହି କାମ୍ୟକ ବନକୁ ପେଷିଲେ ।"

୪୯ଶତ୍ ପଦ—"ଇନ୍ଦ୍ର ବିକୃତ ମୁଖକୁ ଛାଡ଼ି (ଘୋଡ଼ାପରି ମୁହଁ ହୋଇଥିବାରୁ) ଅନ୍ୟ ସମସ୍ତ ସୁନ୍ଦର ରୂପକୁ ଅଶ୍ୱିନୀକୁମାରଙ୍କଠାରୁ ବଦଳ କରିଇଲେ ।"

୫୦—ଶତ୍ ପଦ—"ଅହଲ୍ୟାଙ୍କୁ ଏକାକୀ ଦେଖି ଇନ୍ଦ୍ର ଯେତେ ଭାବରେ ବିନୟ କରି କହିଲେ ସୁଦ୍ଧା ତାହାଙ୍କର ସମ୍ମତ ବା ଅସମ୍ମତ କିଛି ଜାଣିପାରିଲେ ନାହିଁ ।"

୫୧ଶତ୍ ପଦ—"ଗୌତମଙ୍କ ବେଶ ପରି ବେଶ ଧରି ଶୃଙ୍ଗାର ରସରେ ଅହଲ୍ୟାଙ୍କ ମନକୁ ଉଲ୍ଲାସ କରିବା ସମୟରେ ଋଷି ତପସ୍ୟାରୁ ଫେରିଲେ । ତାଙ୍କୁ ଦେଖି ଇନ୍ଦ୍ର ମାର୍ଜାର ରୂପ ଧରି ପଳାଇଗଲେ ।"

୫୨ଶତ୍ ପଦ—"ଗୌତମ ( ଧ୍ୟାନ ବଳରେ ଜାଣି ପାରି ) ଇନ୍ଦ୍ରଙ୍କୁ ପଚ୍ଛାରନ୍ତେ, ସେ ବିନୟ ପ୍ରକାଶ କଲେ । ମୁନି କ୍ରୋଧରେ ଶାପ ଦେଲେ,—ତୁମ୍ଭର ଲିଙ୍ଗ ଭଗ୍ନ ହେଉ, ଦେହରେ ସହସ୍ର ଯୋନି ଜନ୍ମ କର ।"

ବୋଲି ଉପାଣ ହେମାଙ୍ଗୀ ପାଷାଣ କରାଇ ।
ବିଶ୍ୱମ୍ଭର-ଧର ରଜେ-ବାସ କଲେ ଯାଇ ।୫୩।
ବାଜି ତବ ପଦ-ରଜ ଲଭିଲା ସୁଗତି ।
ବନ୍ଦିଲା ଶ୍ରୀରାମେ ଶୁଣି ସେ ମୁନି ଭାରତୀ ।୫୪।
ବନ୍ଦନ ସତରେ ହୋଇ ଉଦିତ ସେନେହୀ ।
ବିଶ୍ୱାମିତ୍ର ପୁଣି ହସ ହସ ହୋଇ କହି ।୫୫।
ବିଶ୍ୱମୋହ୍ନ-କନ୍ୟା ଏ ଦେଖିଲେ ଯେତେ ରମ୍ୟ ।
ବିଦେହ ଦେଶେ ଧରାରୁ ସୁନ୍ଦରୀ ଏ ଜନ୍ମ ।୫୬।
ବିଜ୍ଞ ବହୁ ଥିଲ ଶିଳା ଏହାକୁ କରାଇ ।
ବିତର୍କି ଏ ସୀତାର ଚରଣଘଷା ଏହି ।୫୭।
ବର ସମେ ସ୍ୱରୂପେ ଜଗତେ ନାହିଁ ଯେଣୁ ।
ବ୍ୟୋମକେଶ ଧନୁଭଙ୍ଗ ସ୍ୱୟମ୍ବର ତେଣୁ ।୫୮।

---

୫୩ଶତ୍ ପଦ—ବିଶ୍ୱମ୍ଭର ଧର-ରଜେ—ହିମାଳୟ ପର୍ବତରେ ।
୫୮ ଶତ୍ ପଦ - ସ୍ୱରୂପେ—ଶୋଭାରେ । ବ୍ୟୋମକେଶ—ମହାଦେବ ।

---

୫୩ଶତ ପଦ—"ଇନ୍ଦ୍ରଙ୍କୁ ଏହା କହି ବିଶୁଦ୍ଧ ସ୍ୱର୍ଣ୍ଣବର୍ଣ୍ଣା ଅହଲ୍ୟାଙ୍କ ପାଷାଣ କରି ଋଷି ଯାଇ ହିମାଳୟ ପର୍ବତରେ ବାସ କଲେ ।"

୫୪ଶତ୍ ପଦ—" ଅହଲ୍ୟା ତୁମ୍ଭ ପାଦ ବାଜିବାରୁ ଉତ୍ତମଗତି ଅର୍ଥାତ୍ ପାଷାଣତ୍ୱରୁ ମୁକ୍ତି ପାଇଲେ ।" ବିଶ୍ୱାମିତ୍ରଙ୍କର ଏ କଥା ଶୁଣି ଅହଲ୍ୟା ଶ୍ରୀରାମଙ୍କ ( ଏ ସାକ୍ଷାତରେ ବିଷ୍ଣୁ ଜାଣି ) ବନ୍ଦାପନା କଲେ ।

୫୫ଶତ ପଦ—ସେ ଅହଲ୍ୟା ଗୌତମଙ୍କ ପାଖକୁ ଯିବାପାଇଁ ଅତ୍ୟନ୍ତ ପ୍ରକାଶ କଲେ ଓ ଯାଇ ପତିଙ୍କର ସ୍ନେହପାତ୍ରୀ ହେଲେ । ପୁଣି ବିଶ୍ୱାମିତ୍ର ହସ ହସ ହୋଇ ରାମଙ୍କୁ କହିଲେ—

୫୬ଶତ୍ ଓ ୫୭ଶତ୍ ପଦ—" ଏହି ଜଗତ୍‌ମୋହିନୀ କନ୍ୟାକୁ ଯେତେ ସୁନ୍ଦର ଦେଖିଲ, ମିଥିଳାରେ (ଏହାଠାରୁ ବଳି) ଏକ ସୁନ୍ଦରୀ କନ୍ୟା ପୃଥ୍ୱୀ ମଧ୍ୟରୁ ଜନ୍ମ ହୋଇଛି । ବିଶେଷରେ ଶୁଣ ବିଧାତା ସେ ସୀତାଙ୍କର ଚରଣ ଘଷା ପଥର କରିବ—ଏହି ଯୁକ୍ତିରେ ଏହାକୁ ( ଏ ଅହଲ୍ୟାକୁ ) ପଥର କରାଇଥିଲା ।"

୫୮ଶତ୍ ପଦ—ଯେ ହେତୁରୁ ବ୍ରହ୍ମାଣ୍ଡରେ ତାହାର ଶୋଭା ସମାନରେ ବର ନାହିଁ, ତେଣୁ ମହାଦେବଙ୍କ ଧନୁଭଙ୍ଗ ପଣରେ ସ୍ୱୟମ୍ବର ହେଲା । (ଅର୍ଥାତ୍ ଶିବଧନୁ ଯେ ଭାଙ୍ଗିବ, ସେ କନ୍ୟାକୁ ବିବାହ କରିବ—ଏହି ପଣ ରଖି ସ୍ୱୟମ୍ବର କରାଗଲା )।

ବୀରଧୂ ପ୍ରକାଶ ତବ ହେଉ ଅତିଶୟେ ।
ବନ୍ଧିଲ ତୁମ୍ଭେ ତା ରକ୍ଷା ଫଳୋଦୟେ । ୫୯ ।
ଭାସ୍କରବଂଶୀ ବୋଲେ ଅଛି ପରମ୍ଭସା ।
ବ୍ରହ୍ମାଣ୍ଡ ସାର-ସୁନ୍ଦରୀ ରମ୍ଭା ଅପସରା । ୬୦ ।
ଭାତି ଜ୍ୟୋତିରିଙ୍ଗଣ ରାତ୍ରରେ ଦେଖାଇ ।
ବିଲୁପ୍ତ ପ୍ରଭାତ ପ୍ରଭା ଯେମନ୍ତ କରଇ । ୬୧ ।
ବୈଦେହୀ ଜାତରୁ ରମ୍ଭା ତଥା କହେ ଋଷି ।
ବାଷଠି ପଦେ ଏ ଛାନ୍ଦ ଉପେନ୍ଦ୍ର ଭାଷି । ୬୨ ।

---

୫୯ତମ ପଦ—ବୀରଧୂ—ବୀରତ୍ୱ ।
୬୦ତମ ପଦ—ଭାସ୍କର ବଂଶୀ—ସୂର୍ଯ୍ୟ ବଂଶୀୟ ( ରାମଚନ୍ଦ୍ର ) ।
୬୧ତମ ପଦ—ଭାତି—ପ୍ରଭା । ଜ୍ୟୋତିରିଙ୍ଗଣ—ଜୁଳୁଜୁଳିକା ପୋକ ।

---

୫୯ଶତ ପଦ—"ତୁମ୍ଭର ବୀରତ୍ୱ ବେଶ ଭଲ ଭାବରେ ପ୍ରକାଶିତ ହେଉ । ( ସୁବାହୁ, ମାରୀଚ ଇତ୍ୟାଦି ରାକ୍ଷସଙ୍କୁ ମାରିବାରୁ ଯେ ବୀରତ୍ୱ ଜଣା ଯାଇଛି, ତା ଧନୁର୍ଭଙ୍ଗରେ ଅତିଶୟ ପ୍ରକାଶିତ ହେବ ) । ଆମ୍ଭ ଯାଗ ରକ୍ଷା କରିବାର ଫଳ ସ୍ୱରୂପ ତୁମ୍ଭେ ସେ ସୀତାଙ୍କର ସ୍ୱାମୀ ହୁଅ ।"

୬୦ତମ ପଦ—( ବିଶ୍ୱାମିତ୍ରଙ୍କ ବାଣୀ ଶୁଣି ) ରାମ କହିଲେ, "ପୂର୍ବରୁ ପ୍ରସିଦ୍ଧି ଅଛି ପର—ରମ୍ଭା, ଅପସରା ବ୍ରହ୍ମାଣ୍ଡରେ ସାର ସୁନ୍ଦରୀ । ( ସୀତା କ'ଣ ତାଙ୍କଠାରୁ ବଳି ସୁନ୍ଦରୀ ? )"

୬୧ ଓ ୬୨ତମ ପଦ—ଋଷି କହିଲେ, "ଜୁଳୁଜୁଳା ପୋକ ରାତ୍ରରେ ତେଜ ଦେଖାଇ ଯେପରି ପ୍ରଭାତରେ ନିଜ ନିଜ ଜ୍ୟୋତି ଗୁପ୍ତ କରନ୍ତି, ସୀତା ଜାତ ହେବାରୁ ରମ୍ଭା ସେହିପରି ହେଉଛି ।" ଉପେନ୍ଦ୍ର ଭଞ୍ଜ ଏ ଛାନ୍ଦକୁ ବାଷଠି ପଦରେ ରଚନା କଲେ ।

---

# ଅଷ୍ଟମ ଛାନ୍ଦ

ରାଗ—କାଳୀ

ବିଜୟୀ-ବୀର । ବିଜୟ କର ଯିବା ମିଥିଳାପୁର ।
ବାହାର ହୋଇ ବିହାର ଚିହ୍ନ କରନ୍ତି ମୁନିବର ।
ବଇଦେହୀ ଯେ ସୁନ୍ଦରୀବ୍ରଜେ ଅମୂଲ୍ୟ ଚୂଡ଼ାମଣି ।
ବର୍ତ୍ତମାନ ସେ ଭୂତ ଭବିଷ୍ୟେ ନାହିଁ ନୋହିବ ପୁଣି । ୧
ବଶୀକରଣ ମୂର୍ତ୍ତି ଧାରଣ ଉଚ୍ଚାଟନ ତା ଗୁରୁ ।
ତ୍ରିପୁରସୁନ୍ଦରୀ ସେ ପୁରନ୍ଦରୀ ତାହାକୁ ବୋଲିବାରୁ ।
ବିହ୍ୱଳ ବିହି ପ୍ରଶ୍ନ ଏ କାହିଁ ଶୋଭାସଂଗ୍ରହ ପାଇ ।
ବଣା ବିବେକ ପଣ୍ଡିତ ଲୋକମାନଙ୍କୁ କରି ଦେଇ । ୨ ।

---

୧ମ ପଦ—ସୁନ୍ଦରୀ ବ୍ରଜେ—ସୁନ୍ଦରୀ ସମୂହରେ । ଚୂଡ଼ାମଣି—ଶିରୋମଣି ।

୨ୟ ପଦ—ବଶୀକରଣ ମନ୍ତ୍ର—ଯେଉଁ ମନ୍ତ୍ର ଜପ କଲେ ସମସ୍ତେ ବଶ ହୁଅନ୍ତି । ସୁନ୍ଦରୀପୁରନ୍ଦରୀ—ସୁନ୍ଦରୀ ଶିରୋମଣି । ବଣା—ବାଉ ।

---

# ଅଷ୍ଟମ ଛାନ୍ଦ

୧ମ ପଦ—"ହେ ବିଜୟୀ ବୀର । ଚାଲ ମିଥିଳା ପୁରକୁ ଯିବା ।" ବିଶ୍ୱାମିତ୍ର ଏହା କହିବାରୁ ତିନିହେଁ ବାହାର ହୋଇ ଗଲେ । ବାଟରେ ମୁନିବର କହିଲେ, "ସୀତା ସୁନ୍ଦରୀମାନଙ୍କ ମଧ୍ୟରେ ଶିରୋମଣି ଅଟନ୍ତି । ତାଙ୍କପରି ସୁନ୍ଦରୀ ବର୍ତ୍ତମାନ କାଳରେ ଆଉ କେହି ନାହାନ୍ତି, ଅତୀତ କାଳରେ ନ ଥିଲେ ବା ଭବିଷ୍ୟତରେ ହେବେ ନାହିଁ ।"

୨ୟ ପଦ—"ସେ ସୀତା ବଶୀକରଣ ମନ୍ତ୍ରର ମୂର୍ତ୍ତି ଧାରଣ କରିଅଛନ୍ତି [ତାଙ୍କୁ ଦେଖିଲେ ଯେ କୌଣସି ଲୋକ ବଶୀଭୂତ ହେବ] । ପୁଣି ତାଙ୍କର ମନୋହର ରୂପ ଦେଖି ସମସ୍ତେ ଉଚ୍ଚାଟ ହେବେ । ବିଧାତା ନିର୍ମିତ ସୁନ୍ଦରୀମାନଙ୍କ ମଧ୍ୟରେ ସେ ସର୍ବଶ୍ରେଷ୍ଠା; ଏହା କହିଲେ ମଧ୍ୟ ଯଥେଷ୍ଟ ହେବ ନାହିଁ । ବିଧି କାହିଁ ଏତେ ଶୋଭାମାନ ସଂଗ୍ରହ କରି ସେ ରୂପ ଗଢ଼ିଲା ? ଏହି ପ୍ରଶ୍ନ ପଣ୍ଡିତମାନଙ୍କର ବିବେକକୁ ବଣା କରିଦେଉଅଛି । ( ପଣ୍ଡିତମାନେ କିଛି ବିଚାର କରି ନ ପାରି ବଣା ହେଉଅଛନ୍ତି ) ।

ବିଗ୍ରହକାନ୍ତି କି ଝଟକନ୍ତି କନକ ପଜାଇଲା ।
ବାନ ବଢ଼ାଇ ଅଗ୍ନିରେ ଦହି ଶିଳେ କଷାଇ ହେଲା ।
ବଣିକଶ୍ରେଣୀ ଅସମ ଜାଣି ହେଲେ ପ୍ରହାରକାମୀ ।
ବସାଇ ତୁଳେ ରତିଏ ବୋଲେ କେତକ ଲକ୍ଷ ଯେନ । ୩ ।
ବିଜୁର ଜ୍ୟୋତି ଲଭି ସେ ସ୍ଥିତି ବିଦ୍ୟୁ ଲକ୍ଷଣ ଏବେ ।
ବୁଜି ଈକ୍ଷଣ ହୋଏ ତକ୍ଷଣ ଯାହା ଦର୍ଶନ ମାତେ ।
ବଢ଼ାଇ ହୀନ କଣ୍ଟକପର୍ଣ୍ଣ ମଧ୍ୟର ଦରେ ଲୁଚି ।
ବାସସ ମେଳ କେତକୀ ଫୁଲ କେତେ ମନକୁ ରୁଚି । ୪ ।
ବାହ୍ଲୀକ ଚୂର୍ଣ୍ଣ କରି ସେବନ ମନକୁ ମନାଇଲା ।
ବରବର୍ଣ୍ଣିନୀ ଜଗଦ୍ବନ୍ଦନା ଏଣୁ କି ବୋଲାଇଲା ?

---

୩ୟ ପଦ—ବିଗ୍ରହକାନ୍ତି—ଦେହଶୋଭା । କନକ—ସୁନା । ବାନ—କାନ୍ତି ବା ଶୋଭା ।

୫ମ ପଦ—ବାହ୍ଲୀକ ଚୂର୍ଣ୍ଣ—କୁଙ୍କୁମ ଚୂର୍ଣ୍ଣ । ସୁରପ୍ରିୟା—ରମ୍ଭା । ସ୍ମର—ସ୍ମରଣ କର ।

---

୩ୟ ପଦ—"ତାହାଙ୍କ ଶରୀରର ଅନିର୍ବଚନୀୟ ଶୋଭାକୁ ଦେଖି ସୁବର୍ଣ୍ଣ (ମୁଁ ଏହିପରି ହେବି ମନେ କରି) ଅଗ୍ନିରେ ନିଜ ଅଙ୍ଗକୁ ଦଗ୍ଧ କଲା, କଷଟି ପଥରରେ ନିଜକୁ ଘସାଇଲା । ତେବେ ସୁଦ୍ଧା ବଣିଅମାନେ ସୀତାଙ୍କ କାନ୍ତିକୁ ସମାନ ନ ହେବାର ଜାଣି ତାକୁ ପ୍ରହାର କଲେ । ତୁଳ ପାତ୍ରରେ ବସାଇ ତାକୁ ରତିଏ ପ୍ରମାଣ ହେବାର ଲକ୍ଷ୍ୟ କଲେ । (ସୀତାଙ୍କ କାନ୍ତି ତୁଳନାରେ ଏ ରତିଏ ମାତ୍ର ଅଟେ ) ।"

୪ର୍ଥ ପଦ—"ବିଜୁଳିର ଜ୍ୟୋତିକୁ ଗୃହସ୍ଥମାନଙ୍କେ ଚକ୍ଷୁ ବୁଜି ହୋଇଯାଏ । ସେ ବିଜୁଳି (ସୀତାଙ୍କ ରୂପ ଦେଖି) । ଭୟ ପାଇ ଦେଖାଦେବା ମାତ୍ରେ ଲୁଚି ଯାଉଅଛି । (ବିଜୁଳିର ଶୋଭା କ୍ଷଣସ୍ଥାୟୀ, ମାତ୍ର ସୀତାଙ୍କ ଶୋଭା ଚିରସ୍ଥାୟୀ; ବିଜୁଳିକୁ ଦେଖିଲେ ଆଖି ବୁଜି ହୋଇଯାଏ, ସୀତାଙ୍କ କାନ୍ତିକୁ ଗୃହିଲେ ଅଉ ବେଶିବେଳ ଦେଖିବାକୁ ମନ ହୁଏ । ତେଣୁ ସୀତାଙ୍କ କାନ୍ତିଠାରୁ ଉତ୍କୃଷ୍ଟତର ) । କେତକୀ ଫୁଲ ନିଜ ଦେହ ଶୋଭା ଓ ସୁବାସକୁ ସୀତାଙ୍କ ଶୋଭା ଓ ବାସନାଠାରୁ ହୀନ ଦେଖି ଭୟରେ କଣ୍ଟାପତ୍ର ମଧ୍ୟରେ ଲୁଚି ରହିଲା ।"

୫ମ ପଦ — "ସୀତାଙ୍କ କାନ୍ତିକୁ ସମାନ ହେବ ବୋଲି କୁଙ୍କୁମ ଚୂର୍ଣ୍ଣହୋଇ ତାଙ୍କୁ ସେବା କରି ମନ ମନାଇଲା । ତେଣୁ ଜଗଦ୍ବନ୍ଦନୀୟା ସୀତା କୁଙ୍କୁମବର୍ଣ୍ଣା

ବରବର୍ଣ୍ଣନା ଗୋରୋଚନା ବୋଲାଇ ତର୍କ ହୋଏ ।
ଅଲକ୍ଷ ସ୍ମର ପ୍ରିୟାଷ୍ଟି ସ୍ତ୍ରୀ ରତି ନାମକୁ ପାଏ । ୫ ।
ଯହୁଁ ସମୁଦ୍ର ମନ୍ଥନୁ ଚନ୍ଦ୍ର ଜନମ ଯେଉଁକାଳେ ।
ବିହୀନ କ୍ଷୀଣ କଳଙ୍କେ ଜାଣ ନିର୍ମଳ ହୋଇଥିଲେ ।
ବଦନେ ଜାନକୀର ସମାନ ମନ ଜାଣିଣି ବିଧି ।
ବିମ୍ବଦେଖନ ନୋହିଲା ବର୍ଣ୍ଣ ଲିବେଟି କାଟିଦେଲ । ୬ ।
ବନଜ ଆଦରଶ କି ବାଦ ରଚି ତୁଳନ୍ତେ ଯୋଗ ।
ଭିନ୍ନାର ଆହା କି ଫୁଲ ଅହ୍ଲାଦ ସୁବାସ ମୁଖ ।
ହିଲ୍ଲୋଳ ଚଳ ସୁଧା କଲ୍ଲୋଳ ଲାବଣ୍ୟ ସରିତରେ ।
ବିଭାଗ ହାସ କରଇ ହାସ-ହୀରକୁ ନିରନ୍ତର । ୭ ।

---

୭ମ ପଦ—ବନଜ—ପଦ୍ମ । ଆଦରଶ—ଦର୍ପଣ । ହିଲ୍ଲୋଳ—ଚଞ୍ଚଳ ।

---

ଆଖ୍ୟା ପାଇଲେ । ଶ୍ରେଷ୍ଠ ବର୍ଣ୍ଣବିଶିଷ୍ଟ ଗୋରଚନା (ତାଙ୍କ କାନ୍ତିକୁ ସମାନ ନ ହୋଇ ) ସୀତାଙ୍କର ସ୍ତୁତି ବ୍ୟାଜରେ ରତ ହେଲା । ସୀତାଙ୍କ ଶୋଭାକୁ ଲକ୍ଷ୍ୟ ନ ହେବାରୁ କାମଦେବଙ୍କର ସ୍ତ୍ରୀ ରତି ନାମକୁ ଧାରଣ କଲା । (ଅର୍ଥାତ ସୀତାଙ୍କ ଶୋଭା ସହିତ କାମଦେବ ପତ୍ନୀର ଶୋଭା ତୁଳନା କଲେ ରତିଏ ପ୍ରମାଣ ହେବ ।)

୬ଷ୍ଠ ପଦ—"ଦେବତା ଅସୁର ମିଶି ସମୁଦ୍ର ମନ୍ଥନ କରିବାରୁ ଯେତେବେଳେ ଚନ୍ଦ୍ର ଜନ୍ମ ହେଲେ, ସେତେବେଳେ ସେ ପୂର୍ଣ୍ଣ ଓ କଳଙ୍କ ବିହୀନ ( ନିଷ୍କଳଙ୍କ ) ହୋଇଥିଲେ । (ମୁଁ ଜାନକୀର ବଦନ ସହିତ ସମାନ ହେଲି ) ଏହା ମନେ କରିବାରୁ ବିଧାତା ମଣ୍ଡଳାକାଟି ଚନ୍ଦ୍ରକୁ ଭୁଲ ବୋଲି ଜଣାଇଦେଲେ । ( ନିଷ୍କଳଙ୍କ ପୂର୍ଣ୍ଣଚନ୍ଦ୍ର ମଧ୍ୟ ସୀତାଙ୍କ ବଦନକୁ ସମାନ ହେଇ ନାହିଁ, ବର୍ତ୍ତମାନ ଚନ୍ଦ୍ରରେ ତ କଳଙ୍କ ଓ କ୍ଷୀଣତା ପ୍ରକାଶ ପାଇଛି; ସେ ବା କିପରି ସମାନ ହେବ ? ମୁଁ ସୀତାଙ୍କ ବଦନ ସହିତ ସମାନ ହେଲି,— ଚନ୍ଦ୍ର ବୃଥାରେ ଏହି ଗର୍ବ କରିବାରୁ ତାର ଗର୍ବ ଭଙ୍ଗ କରିବାପାଇଁ ବିଧାତା ତାକୁ ମଣ୍ଡଳା ମଧ୍ୟରେ ଅର୍ଥାତ୍ ଚନ୍ଦ୍ର ମଣ୍ଡଳ ଭିତରେ ରଖିଲେ ) ।"

୭ମ ପଦ—"ପଦ୍ମ ଓ ଦର୍ପଣ ଏ ଦୁହେଁ ବାଦ କରି ସୀତାଙ୍କ ମୁଖ ସହିତ ସମାନ ହୁଅନ୍ତେ କି ? ( ସମାନ ହେଲେ ନାହିଁ ) । ଲାବଣ୍ୟ ତରଙ୍ଗିଣୀରେ ଚଞ୍ଚଳ ଓ ଢଳ ଢଳ ଅମୃତମୟ ତରଙ୍ଗପରି ହୀରକୁ ଦାସ କରି ରଖିଥିବା ଯେଉଁ ହାସ ବିଶିଷ୍ଟ ମୁଖ,— ସେଥିରେ ସୌରଭ ଓ ଅହ୍ଲାଦ ଉଭୟ ବିଦ୍ୟମାନ । (ପଦ୍ମରେ କେବଳ ସୌରଭ ଓ ଦର୍ପଣରେ କେବଳ ଅହ୍ଲାଦ ଗୁଣ ଅଛି, ମାତ୍ର ସୀତାଙ୍କ ବଦନରେ ଉଭୟ ଥିବାରୁ, ସେମାନେ ତୁଳନୀୟ ନୁହନ୍ତି ) ।"

ବଧୂ ବଧୂର ଗନ୍ଧକୁ ଚୂର ପବିତ୍ର ଦ୍ରବ୍ୟ ଦର୍ଭ ।
ବଢଣିତରେ ସେ ବହିତରେ ନ ଲଭନ୍ତ ସନ୍ଦର୍ଭ ।
ବଢଣିତ ଯେ କୁମୁଦପୁଞ୍ଜେ ଦନେ ସଙ୍କୋଚ ବହୁ ।
ବୁଡ଼ନ୍ତୋଣୀରେ ପଣ୍ଡ ଲଜ୍ଜରେ ବୃଦ୍ଧ ଅୟୁଷ୍ଟୁଁ ଜୀଇ । ୮ ।
ବସ୍ତ୍ରାବୃତ ତା ଲୋଚନ ଗତାଗତ କରଇ ଡୋଳା ।
ବଲକ୍ଷଭୃଙ୍ଗ ସରୋଜେ ସଙ୍ଗ ହୋଇ ଶିଖେ ସେ ଲୀଳା ।
ବାତେ ଚଳଇ ନୀଳୋତ୍ପଳହୁଁ ସେ ଛବି ଲକ୍ଷ ହେଙ୍କ ।
ବାଳକ କରେ ସାରେଣୀ କରେ ଖେଳା ତରୁଣ ତେଜ୍ଜି ।୯।

---

୮ମ ପଦ—ବଧୂ—କର୍ପୂର । ବଧୂର—କାତର । ଦର୍ଭ—କୁଶ
ସନ୍ଦର୍ଭ—ଶ୍ରେଷ୍ଠତା, ଏଠାରେ ପୂର୍ଣ୍ଣତା ।

୯ମ ପଦ—ବସ୍ତ୍ରାବୃତ—ବସ୍ତ୍ରାବୃତ । ବଲକ୍ଷଭୃଙ୍ଗ—ଶୁକ୍ଳ ଭ୍ରମର । ସରୋଜ—ପଦ୍ମ । ତରୁଣ—ଯୁବକ । ଶୀଳିତ—ଅର୍ପିତ । ସାରେଣୀ—ନେତ୍ର ବା ନେତ୍ର ଛାଟିଯୁ ଖେଳନା ।

---

୮ମ ପଦ—"ସୀତାଙ୍କ ହାସକୁ ସମ ବୋଲି ଗର୍ବ କରିବାରୁ କର୍ପୂର ବିଶେଷ ଭାବରେ ଚୂର୍ଣ୍ଣ ହେଲା ! ପବିତ୍ରଦ୍ରବ୍ୟ କୁଶ ପ୍ରସ୍ଫୁଟିତ କୁସୁମରେ ସୀତାଙ୍କ ହାସ ପଦ୍ଧତିକୁ ଲେଶମାତ୍ର ସବୁ ହେଉ ନାହିଁ । କୁମୁଦମାନେ ସୀତାଙ୍କ ହାସଛଟାକୁ ଦିନେ ହେଲେ ସମାନ ନ ହେବାରୁ ଲଜ୍ଜିତ ହୋଇ ମରିବା ଇଚ୍ଛାରେ ପାଣିରେ ବୁଡିଲେ, ମାତ୍ର ଆୟୁଃବଳ ଥିବାରୁ ନ ମରି ବଞ୍ଚି ରହିଲେ । (ସୀତାଙ୍କ ହାସଛଟାକୁ କର୍ପୂର, କୁଶ ଫୁଲ ଓ କୁମୁଦ ମଧ୍ୟ ସମାନ ନୁହନ୍ତି ) ।"

୯ମ ପଦ—ସୀତାଙ୍କ ବସ୍ତ୍ରାବୃତ ଲୋଚନରେ ଗତାଗତ କରୁଥିବା ଡୋଳାକୁ ଶୁକ୍ଳବର୍ଣ୍ଣ ଭ୍ରମର ପଦ୍ମର ସଙ୍ଗ ହୋଇ ସେ ଡୋଳା ଲୀଳାକୁ ଶିଖୁଅଛି । ତାହା ସେ କାହିଁ ପାଇବ ? ନୀଳୋତ୍ପଳ ପବନଦ୍ୱାରା ଚାଳିତ ହେବା ଛବି ସେ ନେତ୍ର ଡୋଳାର ଗତାଗତ ଛବିକୁ ମଧ୍ୟ ଲକ୍ଷ ନୁହେ । ସେ ନେତ୍ର ଡୋଳାର ଚଞ୍ଚଳତାକୁ ନ ପାଇ ସାରେଣୀ ଯୁବକଙ୍କ ଦ୍ୱାରା ତ୍ୟକ୍ତ ହୋଇ ବାଳକ ମାନଙ୍କ ହସ୍ତରେ ଖେଳା କରୁଅଛି । (ଡୋଳାର ଚଞ୍ଚଳତାକୁ ସମାନ ନ ହେବାରୁ ଯୁବକ ମାନେ ସାରେଣୀକୁ ତ୍ୟାଗକଲେ; ମାତ୍ର ଅଜ୍ଞାନ ବାଳକମାନେ କିଛି ଜାଣି ପାରୁ ନ ଥିବାରୁ ସାରେଣୀ ତାଙ୍କ ହସ୍ତର କ୍ରୀଡ଼ନକ ହେଲା ) ।"

ବକ୍ର ଭ୍ରୂଲତା ନିକଟେ ସ୍ଥିତା ଶ୍ରୁତି କମାଣେ ରହି ।
ଦଣ୍ଡି ଶରଗତ କରୁଅଛନ୍ତି ପକ୍ଷପକ୍ଷକୁ ବହି ।
ବର୍ଣ୍ଣ ନିବଧୁଁ ଶାଳିତ ସାଧି ହିଙ୍ଗୁଳ କଲା ଶରେ ।
ବହୁରୂପ ଏ ଅକ ସବ୍ୟେ ଯଥା ଅପଣ ସୁଖେ । ୧୦ ।
ନୟନ ସନେ ପଣି ବନ୍ଧନେ ଚଞ୍ଚଳେ ହର ମୃଗ ।
ବଂଶରେ କେହି ସେ ସମ ଧ୍ୟାୟୀ ମର ଇନ୍ଦୁରେ ଯୋଗ ।
ବାଞ୍ଛିତ କର୍ମହୀନର ଶ୍ରମ କଲେ ପ୍ରାପତ କାହିଁ ?
ନିର୍ମଳ ପଦାର୍ଥକୁ ସର୍ବଦା ସମଳ କଲ ଯହିଁ । ୧୧ ।
ବସିଲେ ଭୁଲେ ଦଇବ ବଳେ ଗୁଞ୍ଜା କି ରତ୍ନ ପ୍ରାୟେ ?
ଅନିମିଷେ ଯେ ମୀନସମାଜେ , ଖଞ୍ଜନ ବନ୍ଧେ ଭୟେ ।

---

୧୦ମପଦ —କମାଣ —ଧନୁ । ଦଣ୍ଡି —ଶର । ଶାଳିତ—ଶୋଭିତ
୧୨ଶପଦ —ଗୁଞ୍ଜା—କାଇଁଚ । ଅନିମିଷ—ପକ୍ଷ୍ମପାତ ଶୂନ୍ୟ । ବାଳୀ—ସୀତାଦେବୀ ।

---

୧୦ମପଦ —ସୀତାଙ୍କ ନେତ୍ର ଲୋମକୁ ବଙ୍କ ବକ୍ର ଭ୍ରୂଲତା ନିକଟରେ ରହିଅଛି । ତାହାକୁ ଦେଖି ମନେ ହୁଏ , ପକ୍ଷଯୁକ୍ତ ଶର ଧନୁରେ ରହି ନେତ୍ରର ଗତି ଶିକ୍ଷା କରୁଅଛି କି ? ବହୁରୂପୀ ନର୍ତ୍ତକର ମାନେ ନିଜ ଇଚ୍ଛାରେ ଭିନ୍ନରୂପେ ଶୋଭିତ ହେଲା ପ୍ରାୟ ସେ ଲୋଚନଶର ରକ୍ତ , କୃଷ୍ଣ ଓ ଶୁକ୍ଳବର୍ଣ୍ଣ ଧାରଣ କରିଅଛି । (ନେତ୍ରର ଉପରେ ଲୋମ ଥାଏ ଓ ପାଶରେ ବକ୍ର ଭ୍ରୂଲତା ଥାଏ । ଶର ନେତ୍ର ଗତି ସହିତ ସମାନ ହେବା ପାଇଁ ମୂଳରେ ପକ୍ଷ ଧାରଣ କଲା ଓ ବକ୍ର ଧନୁରେ ଅବସ୍ଥାନ କଲା , ନେତ୍ର ତ୍ରିବର୍ଣ୍ଣ ଧାରଣ କଲାପରି ଶର ମଧ୍ୟ ତ୍ରିବର୍ଣ୍ଣ ହେଲା ତଥାପି ସେ ସମାନ ହୋଇ ପାରିଲା ନାହିଁ । କାରଣ ସେ ପର ଦ୍ୱାରା ଚାଳିତ ହୁଏ , ମାତ୍ର ନେତ୍ରଶର ସ୍ୱଇଚ୍ଛାରେ ଚଳେ ) ।

୧୧ଶ ପଦ —ସୀତାଙ୍କ ନେତ୍ରର ଚଞ୍ଚଳତାରେ ମୃଗର ଗତି ହାର ଯିବାରୁ ମୃଗ ଗହନ ବନରେ ପଶି ଲୁଚିଲା । ସେହି ମୃଗ ବଂଶରେ କେହି ସୀତାଙ୍କ ନେତ୍ରର ଚଞ୍ଚଳତା କଥା ଚିନ୍ତା କରି ମଣ୍ଡି ଓ ଚନ୍ଦ୍ରରେ ଯାଇ ଅବସ୍ଥାନ କଲା । ନେତ୍ର ତ ସମାନ ହେଲା ନାହିଁ , ଯାହା ନିର୍ମଳ ଚନ୍ଦ୍ରକୁ କଳଙ୍କିତ କଲା ଏହିମାତ୍ର ଫଳହେଲା । କର୍ମହୀନ ଲୋକ ଯେତେ ଶ୍ରମକଲେ ସୁଦ୍ଧା ମନୋରଥକୁ ପାଇଥାଏ କି ? (କେବେହେଲେ ପାଏ ନାହିଁ ) ।

୧୨ଶ ପଦ—ଦୈବ ବିଧାନରେ କାଇଁଚ ଭୁଲ ପାତ୍ରରେ ବସିଲେ ସୁଦ୍ଧା ସୁବର୍ଣ୍ଣ ସହିତ ସମାନ ହୁଏ କି ? ସେହିପରି ଚନ୍ଦ୍ର ଅଙ୍ଗରେ ଶଶ କଲ ମଧ୍ୟ ସୀତାଙ୍କ

ବୁଡ଼ାଇ ରାଗକୁଣ୍ଡରେ ବେଗ ବେଗ ଅପାଙ୍ଗ ଜାଲ ।
ବଢ଼ିଶ ପରି ନିଏ ଓଟାରି ମନ-ମୀନକୁ ବାଳୀ । ୧୨ ।
ବିଲୋକ କରି ଅଳକ ଫଣୀ ଏଥିକି ସମ ନୋହି ।
ବେତାଳ ବଇଭବକୁ ଧାଇଁ ଖଡ୍‌ଗ ପ୍ରହାର ବହି ।
ବାସ ଲଲାଟ ପଛରେ ଘଟ ଅଳ୍ପ ତା କି ଲକ୍ଷିବା ?
ବିଗଳିତାଙ୍କ ଅର୍ଦ୍ଧଶଶାଙ୍କ ଯୋଖିବା ନ ଯୋଗିବା । ୧୩ ।
ବିଫଳ ହେବ ତୋଷିବା ଶିବ ତପସ୍ୟା ଗଙ୍ଗାକୂଳ ।
ବଚନେ ନାହିଁ ସର୍ବାଙ୍ଗେ ଯହିଁ ଦେବା ଉପମା ତୁଳ ।
ବିସୋରିଥିଲେ ଉରଜ ତୁଳି ନୋହେ ସେ ଶମ୍ଭୁ ଅଙ୍ଗେ ।
ବିଷ୍ଣୁପଦୀ ତ ହୋଇ ଲଜ୍ଜିତ ହାରନ୍ତି ହାର ସଙ୍ଗେ । ୧୪ ।

---

୧୩ ଶ ପଦ —ଅଳକ – କୃଷ୍ଣ କୁନ୍ତଳ । ବିଗଳିତାଙ୍କ—କଳଙ୍କହୀନ ।

---

ନେତ୍ର ଗୃଧିଙ୍କୁ ସମାନ ହେଉଛି ନାହିଁ । ମାଛମାନେ ନେତ୍ରର ସମାନ ନହୋଇ ନିର୍ନିମେଷ ହେଲେ, ଖଞ୍ଜନ ପକ୍ଷୀ ଭୟରେ କମ୍ପିତ ହେଲା । ସୀତାଙ୍କର ଅନୁରାଗ ରଞ୍ଜିତ ଚଞ୍ଚଳ କଟାକ୍ଷ ପାତ ବଡ଼ିଶ କଣ୍ଟାପରି ପୁରୁଷର ମନରୂପ ମୀନକୁ ଓଟାରି ନିଏ ।

୧୩ ଶ ପଦ —ଲଲାଟକୁ ଦେଖି ଫଣୀ ତାହାକୁ ସମାନ ନ ହୋଇ ବେତାଳ ଭୈରବ ଦୁହିଙ୍କୁ ଧାଇ ମଧ୍ୟ ଖଡ୍‌ଗ ପ୍ରହାର ସହ୍ୟକଲା । ଯେଉଁ ଫଣି ଲଲାଟର ପଶ୍ଚାଦ୍ ଭାଗରେ ଅବସ୍ଥାନ କରିଅଛି, ତାହାକୁ ସେହି ଅଳକା ସହିତ ତାହିଁ କି ବା ଲକ୍ଷ ଦେବା ? ନିଷ୍କଳଙ୍କ ଅର୍ଦ୍ଧଚନ୍ଦ୍ରକୁ ଲଲାଟ ସହିତ ତାହି କି ବା ସମ କରିବା ?(ତାହା ସମାନ ହେବାର ଅନୁପଯୁକ୍ତ) ।

୧୪ ଶ ପଦ —(ସୀତାଙ୍କ ଅଳକା ସହିତ ଉପମା ନ ଦେଲେ )ଚନ୍ଦ୍ରର ଗଙ୍ଗା କୂଳରେ ତପସ୍ୟା କରି ଶିବଙ୍କୁ ତୋଷ କରିବାର ପରିଶ୍ରମ ବିଫଳ ହେବ । (କବି ଏହା କହି ସାରି ପୁଣି କହୁଛନ୍ତି) ମୁଁ ପାଶୋରି ଦେଇଥିଲି ଯେ ଶମ୍ଭୁ ତ ନିଜେ ସୀତାଙ୍କ ଅଙ୍ଗରେ ଥିବା ସ୍ତନ ସହିତ ସମାନ ନୁହନ୍ତି । ଗଙ୍ଗା ଲଜ୍ଜିତ ହୋଇ ତାଙ୍କ ହାର ସହିତ ହାର ମାନି ରହିଛନ୍ତି ।(ନିଜେ ଶିବ ସମାନ ନୁହନ୍ତି, ଗଙ୍ଗା ମଧ୍ୟ ସମାନ ନୁହନ୍ତି, ତେବେ ଯେଉଁ ଚନ୍ଦ୍ର ଗଙ୍ଗା କୂଳରେ ଶିବଙ୍କୁ ପୂଜା କରି ବର ଦେବାକୁ ବସିଛନ୍ତି, ସେ ବା କିପରି ସମାନ ହେବେ ?)

ବଙ୍କିମା-ଚୟ ଶୋଭାର ଶ୍ରୁତି ବିଶ୍ରାମ-ଘଟ ହୋଇ ।
ବୋଲି ପାଟଳୀ ପା ବୋଲୁଁ ଟଳିଲାର ଉପମା ଫୁଲ ।
କର୍ତ୍ତିତ ଶିର ଦୀର୍ଘ ଈକାର ହ୍ରସ୍ୱ ତ ସାନ ହେଲା ।
ବୁଦ୍ଧି କି ପାଶ କରନ୍ତେ ପାଶ ଗର୍ଭରେ ବୁଡ଼ିଗଲା । ୧୫ ।
ବ୍ୟତିରିକ୍ତ ଏ ଦୃଷ୍ଟି ତ ନୁହେ ଖଣ୍ଡି ଉପମା ତୁଣ୍ଡ ।
ବିମ୍ବ ନିର୍ମଳ କୃତମଣ୍ଡଳ-ଖଣ୍ଡ ମଣ୍ଡଳ ଗଣ୍ଡ ।
ବୋଲାଉଅଛି ଦର୍ପଣ ଛି ଛି କରି କଳଙ୍କେ ସେହି ।
ବନ୍ଦ୍ୟ କି ଖଡ଼୍‌ଗପାଲି ପଦଗ କରେ କଳଙ୍କ ବହି । ୧୬ ।
ବରାରୋହାର ନାସାଡମ୍ବର ଇଚ୍ଛା କଲାରୁ ଶୁକ ।
ବିନା ଦୋଷରେ ଶିକୁଳି ଛଳେ ଖଟୋଲି ଦଏ ଲୋକ ।

---

୧୭ଶ ପଦ—ବରାରୋହା—ପରମା ସୁନ୍ଦରୀ । ଉନ୍ମନା—ଉଦ୍‌ବିଗ୍ନା ବା ଉତ୍‌କଣ୍ଠିତା । ବିନତାସୁତ—ଗରୁଡ଼ । ଖଗେନ୍ଦ୍ର—ପକ୍ଷିରାଜ ।

---

୧୫ଶ ପଦ—ଶୋଭାସମୂହର ଆଧାର ଯେଉଁ ଶ୍ରବଣ ଯୁଗଳ, ତାକୁ ପାଟଳୀଫୁଲର ଉପମା କିପରି ଦେବା ? ( ଉପମାକୁ ପା, ଏହା କହୁ କହୁ ) ସେ ଟଳିପଡ଼ିଲା । ଦୀର୍ଘ ଈକାରର ଶିର କଟିଗଲେ ହ୍ରସ୍ୱ ହେଲା । ହ୍ରସ୍ୱ ଅର୍ଥ ସାନ—ସେ ତା ଉପରେ ଶ୍ରବଣକୁ ଲକ୍ଷ୍ୟ ହେବ ? ପୁଣି ପାଶକୁ କର୍ଣ୍ଣ ସହିତ ଉପମା ଦେବାପାଇଁ ବୁଦ୍ଧି ଖେଳାନ୍ତେ ତାହା ଗର୍ଭରେ ବୁଡ଼ିଗଲା । (ଅର୍ଥାତ୍ ପାଶ ମଧ୍ୟ ଉପମାଯୋଗ୍ୟ ନୁହେ । )

୧୬ଶ ପଦ—ସୀତାଙ୍କ ନିର୍ମଳ ଗଣ୍ଡମଣ୍ଡଳ ଉପମା ସନ୍ଦୃଷ୍ଟିକୁ ଖଣ୍ଡନ କରି ରହିଅଛି; ଏହା ଅତିଶୟୋକ୍ତି ନୁହେ । ଚନ୍ଦ୍ରମଣ୍ଡଳ ସେହି ଗଣ୍ଡମଣ୍ଡଳକୁ ଦେଖି ପରାଜିତ । ( ଚନ୍ଦ୍ରମଣ୍ଡଳରେ କଳଙ୍କ ବିଦ୍ୟମାନ, ମାତ୍ର ସୀତାଙ୍କ ଗଣ୍ଡମଣ୍ଡଳ ନିଷ୍କଳଙ୍କ ); ଦର୍ପଣ ବି ସେ ଗଣ୍ଡମଣ୍ଡଳକୁ ତୁଲ୍ୟ ହେବ ନାହିଁ—କାରଣ ଦର୍ପଣ ହାତରେ ଥିବା ମଇଳାର ସଂସର୍ଗରେ କଳଙ୍କିତ ହୁଏ । ଖଡ୍‌ଗ ମଧ୍ୟ ସେ ଗଣ୍ଡମଣ୍ଡଳକୁ ଉପମିତ ହୋଇ ନ ପାରେ—କାରଣ ପାଇକର କରରେ ରହି ତାହା କଳଙ୍କିତ ।

୧୭ଶ ପଦ—ସେ ଶ୍ରେଷ୍ଠା ସୁନ୍ଦରୀ ସୀତାଙ୍କ ନାସିକା ସହିତ ଉପମିତ ହେବାପାଇଁ ଶୁକପକ୍ଷୀ ଇଚ୍ଛା କରିବାରୁ ଲୋକେ ବିନା ଦୋଷରେ ତାକୁ ଶିକୁଳିବନ୍ଧ କରୁଛନ୍ତି । ସେ ଛାର ପକ୍ଷୀ ( ବୁଦ୍ଧିହୀନ), ତେଣୁ ହୋଇ ହିତ କଥା ପାଞ୍ଚି ପାରିଲା

ଛତ୍ରଗ ପିନା ହୋଇ ଉନ୍ନତା ପାରିଲା ନାହିଁ ପାଣ୍ଟି ।
ବିନତାସୁତ ପିଙ୍ଗି ଉନ୍ନତ ସ୍ତୁହିଁ ଖଗେନ୍ଦ୍ର ରତ । ୧୭ ।
ଲୁଣ୍ଠାଇ ତିଳ ଅସମେ ତିଳପ୍ରସୂନ ବହି ନାମେ ।
ବଧୂଳି ତୂଣ ଉପମା ପୂର୍ଣ୍ଣ ନିର୍ମାଣ ପଶୁଚର୍ମେ ।
ବେଣୁ ବରୁଣ ସେଜଣ କାଣ୍ଡ ସମୁଦ୍ର ମଧ୍ୟେ ପଶେ ।
ବ୍ୟାଳ ଗ୍ରାସିତ ମଳୟ ବାତ ତୁଳା ହେଲାରୁ ଶ୍ୱାସେ । ୧୮ ।
ବାଳା ଅଧର ଅରୁଣ ସାର ଛବି ବହିବା ଦୂର ।
ବାଳ ଅରୁଣ ଯେଣୁ ଅରୁଣ ପଦାନୁରାଗେ ପୂର ।
ବିରଙ୍ଗ ସେହୁ ଦଣ୍ଡକେ ହୋଇ ସନ୍ତାପ ବହୁପଣ ।
ବନ୍ଦେ ସନ୍ଧ୍ୟାରେ ମାଣିକ୍ୟ ଧାରେ, ଜ୍ୟୋତିକୁ ତରି ତଣ ।୧୯।

---

୧୮ଶ ପଦ— ତୂଣ —ଶର ରଖିବା ତୂଣୀ । ବ୍ୟାଳମାନେ—ସର୍ପମାନେ ।

୧୯ଶ ପଦ—ଅରୁଣ—ରକ୍ତବର୍ଣ୍ଣ, ସୂର୍ଯ୍ୟସାରଥି, ସୂର୍ଯ୍ୟ । ବିରଙ୍ଗ—ବିବର୍ଣ୍ଣ ।

---

ନାହିଁ (ତେଣୁ ଦଣ୍ଡ ପାଉଅଛି) । ଗରୁଡ଼ ଉନ୍ନତ ନାସିକାକୁ ସ୍ତୁହିଁ ସ୍ତବ କରିବାରୁ ଖେଚର ହେଲା । (ଅର୍ଥାତ୍ ନାସିକା ଶୁକ ନାସିକାଠାରୁ ସୁନ୍ଦର ଓ ଗରୁଡ଼ ନାସିକାଠାରୁ ଉନ୍ନତତର ଅଟେ) ।

୧୮ଶ ପଦ—ତିଳ ପୁଷ୍ପ ସୀତାଙ୍କ ନାସିକାକୁ ସମାନ ନ ହେବାରୁ ବିଧାତା ତାକୁ ତିଳ ନାମ ଦେଇଅଛି । ପଶୁ ଚର୍ମରେ ନିର୍ମିତ ତୂଣ (ଶର ରଖିବା ତୂଣୀ) କୁ ତାହା ସହିତ ଉପମା ଦେବା ବିଧିସଙ୍ଗତ ନୁହେଁ । ବଂଶୀ ନାସା ସହିତ ସମାନ ନ ହେବାରୁ, ବରୁଣ ବଂଶୀକୁ ନେଇ ସମୁଦ୍ର ମଧ୍ୟରେ ପଶିଲେ । ମଳୟ ପବନ ତାହାଙ୍କ ନିଶ୍ୱାସ ସହିତ ସମାନ ନ ହେବାରୁ ସର୍ପଦ୍ୱାରା ଭକ୍ଷିତ ହେଲା ।

୧୯ଶ ଓ ୨୦ଶ ପଦ—ସେହି ବାଳାର (ସୀତାଙ୍କର) ରକ୍ତବର୍ଣ୍ଣ ଅଧରକୁ ସ୍ମରଣ କରି ବାଳ ସୂର୍ଯ୍ୟ ରକ୍ତବର୍ଣ୍ଣ ହୋଇ (ସାରଥି) ଅରୁଣକୁ ସଙ୍ଗରେ ନେଇ ପଦ୍ମର ଅନୁରାଗରଞ୍ଜିତ ହେଲେ, ତଥାପି ସେ ସମାନ ନ ହେବାରୁ ଦଣ୍ଡକ ମଧ୍ୟରେ ବିରଙ୍ଗ ହୋଇ ସନ୍ତାପିତ ହେଲେ । ଅର୍ଥାତ୍ ମଧ୍ୟାହ୍ନ ତେଜରେ ଦଗ୍ଧୀଭୂତ ହେଲେ । ପୁଣି ସନ୍ଧ୍ୟା ସମୟରେ ମାଣିକ୍ୟଠାରୁ ଜ୍ୟୋତିକୁ ଧାର ଆଣି ନିଜ ଅଙ୍ଗରେ ବନ୍ଧନ କଲେ, ମାତ୍ର ସମାନ ହୋଇ ନ ପାରିବାରୁ ସମୁଦ୍ରରେ ବୁଡ଼ିଗଲେ । ଯେପରି ବାଳକ ଓ ବୃଦ୍ଧଙ୍କର ଦିନ ଦିନକର କଥା ଆର ଦିନକୁ ମନେ ରହେ ନାହିଁ, ସେହିପରି ତାଙ୍କର ଏ କଥା ମନେ ନ ରହିବାରୁ ସେ ସୂର୍ଯ୍ୟ

ବହୁଳ ତେବେ ମନ୍ଥି ଅର୍ଣ୍ଣବେ ପୂର୍ଣ୍ଣିହ୍ନି ସେ ବ୍ୟବସ୍ଥା ।
ଭାଲ ବୃନ୍ଦର ଯଥା ପାଶୋର ଧନ ଧନବ ତଥା ।
ତୋଳିବା କାହୁଁ ମନ୍ଦାର ଅଭ ଧରିଛି ମନ୍ଦ ନାଳ ।
ବୈରାଗୀ ହେବ ବର୍ତ୍ତୁର ବିମ୍ବ ଭସ୍ମ ହେଲ କି ବୋଲି ।୨୦।
ବିଦ୍ରୁମ ଯହିଁ ଚୁହିଁ ମରଇ ଶୁଣିବା ବ୍ୟାଙ୍ଗେ ହୃଦ ।
ବନ୍ଧୁଜୀବ ଯେ ଅଳ୍ପକେ ଭଜେ ମଳିନ ନ ସମ୍ବାଦ ।
ବୈଭବ ଶୁଭେ ଲଲାଟେ ଶୋଭେ ନାଗର ଯେ ହିନ୍ଦୂର ।
ବହ୍ନାଇ ସେ ତ ପରେ ଦଳିତ ଗୁପତ ସମ୍ପୁଟର ।୨୧।
ବଜ୍ର ଦଶନ କାନ୍ତି ପ୍ରସନ୍ନ ହରଣେ କରୁଁ ଶଙ୍କା ।
ବସାଇ ଶାଣେ ବର୍ଦ୍ଧପ୍ରମାଣେ ଦଣ୍ଡ ଦିଅଇ ଧାତା ।

---

୨୦ଶ ପଦ— ଅର୍ଣ୍ଣବ—ସମୁଦ୍ର । ବିମ୍ବ—କଇଁଆଁକାକୁଡ଼ି ।
୨୧ଶ ପଦ—ବିଦ୍ରୁମ—ପ୍ରବାଳ । ବନ୍ଧୁଜୀବ—ବନ୍ଧୁଲି ପୁଷ୍ପ । ସମ୍ପୁଟ ଫରୁଆ ।

---

ପ୍ରତିପଦ ସେହି ବ୍ୟବସ୍ଥାକୁ ଧଲେ । [ ପ୍ରତିପଦ ଲଙ୍ଘିତ ହୋଇଥିଲେ ମଧ୍ୟ ସେ କଥା ମନେ ନ ରହିବାରୁ ପୁଣି ପ୍ରତିପଦ ଉଦୟ ଓ ଅସ୍ତ ହେଉଅଛନ୍ତି ] । ଯେଉଁ ଅଧରକୁ ବାଳସୂର୍ଯ୍ୟ ସମାନ ହେଲ ନାହିଁ, ତା ସହିତ ମନ୍ଦାର ପୁଷ୍ପକୁ ତୁଳନା କରିବା କାହିଁକି ? ମନ୍ଦାର 'ମନ୍ଦ' ଏହି ନାମକୁ ବହନ କରିଅଛି, [ ତେଣୁ ସେ ଉପମେୟ ହୋଇ ନ ପାରେ ] । କଇଁଆଁକାକୁଡ଼ି ବାଳାର ଅଧର ସହିତ ସମାନ ନ ହେବାରୁ ଅଭିମାନରେ ବୈରାଗୀ ହୋଇଯିବ ବୋଲି ବର୍ତ୍ତୁଳ ଦେହରେ ପାଉଁଶ ବୋଳି ହେଲା କି ?

୨୧ଶ ପଦ—ପୋହଳା ତାଙ୍କ ଅଧରକୁ ସମାନ ହୋଇ ନ ପାରି ଅପମାନ ଅପେକ୍ଷା ମରଣ ଶ୍ରେୟସ୍କର, ଏହି ବିଚାରରେ ହୃଦୟରେ ଚୁହିଁବାକୁ କରୁଅଛି । ବନ୍ଧୁଲି ଫୁଲ ଅଳ୍ପ ସମୟ ମଧ୍ୟରେ ମଳିନ ହୋଇଯାଏ, ତେଣୁ ତାକୁ ଖୋଜିବା ଦରକାର ନାହିଁ, [ ତାକୁ ତୁଳନା କରିବା ଧୃଷ୍ଟତା ମାତ୍ର ] । ନାଗର ଲଲାଟପଟରେ ମଙ୍ଗଳ କାର୍ଯ୍ୟରେ ଶୋଭିତ ହେଉଥିବା ହିନ୍ଦୁର ସେ ଅଧରକୁ ସମାନ ହେବାକୁ ଯାଇ ଅନ୍ୟଦ୍ୱାରା ଦଳିତ ହେଲା, ମାତ୍ର [ ସମାନ ନ ହେବାରୁ ] ଫରୁଆ ମଧ୍ୟରେ ଲୁଚି ରହିଲା ।

୨୧ଶ ପଦ— ହୀରା ତାଙ୍କ ଦନ୍ତର ସାମାନ୍ୟ ତେଜକୁ ହରଣ କରିବାକୁ ଶଙ୍କା କରିବାରୁ ବିଧାତା ଜାଣି କରତ ସମାନ ଶାଣରେ ତାକୁ ବସାଇ

ବୋଧାଇ ଶୁକ୍ତିଭବ ଉତ୍ପତ୍ତି ନୋହୁ ମୁଁ ଦନ୍ତଦାସ ।
ଅମୁକ୍ତ ହୋଇ ମୁକ୍ତା ବୋଲାଇ ତାର କି ହେଲା ନାଶ ୧୨ ।
ବାଳିକା ରଦ ଖେଦଦ କୁନ୍ଦକଳିକା ହୃଦ ଫୁଟି ।
ବୀଜ ଦେଖାଇ ସମାନ ନୋହି ଦାଡ଼ିମ୍ବଫଳ ଫାଟି ।
ବୃକ୍ଷରେ ଲମ୍ବେ ଲପନ ନମ୍ରେ ଏତିକି ଲଭି ଲଭି ।
ବ୍ୟର୍ଥ ହେଲା ତଣ୍ଡୁଳମାଳା ନାହିଁ ଉଜ୍ଜ୍ୱଳପ୍ରଭ । ୧୩ ।
ବଜାଇ ମିତ ଶାରଦା ଜିତ ହୋଇ ବଚନ ଭୁଲେ ।
ବାଣୀ ଭାରତୀ ସେ ସରସ୍ୱତୀ ଦୁହିଙ୍କି ଲୋକେ ବୋଲେ ।

---

୧୨ଶ ପଦ—ବଜ୍ର—ହୀରା । ପ୍ରସନ୍ନ—ନିର୍ମଳକାନ୍ତି । ଶୁକ୍ତିଭବ—ମୁକ୍ତା ।

୧୩ଶ ପଦ—ରଦ—ଦନ୍ତ । ଖେଦଦ—ଦୁଃଖଦାୟକ । ଦାଡ଼ିମ୍ବଫଳ—ଡାଳିମ୍ବ ।

୧୪ଶ ପଦ—ଶାରଦା—ସରସ୍ୱତୀ । ବଲ୍ଲକୀ—ବୀଣା । ବନପ୍ରିୟ—କୋକିଳ ।

---

ଦଣ୍ଡ ଦେଉଅଛି । ମୁକ୍ତା ଜନ୍ମ ହେବା ପୂର୍ବରୁ 'ମୁଁ ଦନ୍ତର ଦାସ' ଏପରି କହିବାରୁ ( ଶାମୁକା ବନ୍ଧନରୁ ) ବିମୁକ୍ତ ହେଲା; ( ଲୋକେ ତେଣୁ ତାକୁ ମୁକ୍ତା କହିଲେ ) । ଏଥିଦ୍ୱାରା ମୁକ୍ତାର କିଛି କ୍ଷତି ହେଲା କି ? (ହୀରା ଗର୍ବ କରି ଦଣ୍ଡ ପାଇଲା, ମୁକ୍ତା ଦାସତ୍ୱ ସ୍ୱୀକାର କରି ସୁଦ୍ଧା 'ମୁକ୍ତା' ନାମ ବହିଲା, ଅର୍ଥାତ୍ ହୀରା କି ମୁକ୍ତା କେହି ସମାନ ହୋଇ ନ ପାରନ୍ତି )

୧୩ଶ ପଦ—ସୀତାଙ୍କ ଦନ୍ତପଂକ୍ତି କୁନ୍ଦକଢ଼ିର ସନ୍ତାପପ୍ରଦ ହେଲା (କୁନ୍ଦ କଢ଼ି ଦନ୍ତ ପଂକ୍ତିକୁ ଦେଖି ମନଦୁଃଖ କଲା ) । ତେଣୁ ତାହାର ହୃଦୟ ଫୁଟିଗଲା । ପୁଣି ପାଚିଲା ଡାଳିମ୍ବ ତାଙ୍କ ଦନ୍ତକୁ ସମାନ ହେବା ଆଶାରେ ( ଫାଟିଯାଇ ) ମଞ୍ଜି ସବୁକୁ ପଦାକୁ ଦେଖାଇଲା, ମାତ୍ର ସମାନ ନ ହେବାରୁ ( ଲଜ୍ଜାରେ ) ଅଧୋମୁଖରେ ବୃକ୍ଷରେ ଲମ୍ବି ରହିଲା । ତାହାର ଏତିକି ମାତ୍ର ଲାଭ ହେଲା, ଅଧୋମୁଖରେ ଦୋଳାୟମାନ ହୋଇ ତପସ୍ୟା କଲେ କେବେ ଯଦି ସମାନ ହୋଇ ପାରିବ । ତଣ୍ଡୁଳ ସବୁ ବ୍ୟର୍ଥ ହେଲା, କାରଣ ତହିଁରେ ଦନ୍ତର ପ୍ରାୟ ଉଜ୍ଜ୍ୱଳ ପ୍ରଭା ନାହିଁ, ତେଣୁ ତାହା ଉପମା ଯୋଗ୍ୟ ନୁହେ ।

୧୪ଶ ପଦ—ସରସ୍ୱତୀ ବୀଣାରୁ ପ୍ରକାଶ କରି ସୀତାଙ୍କ ବଚନ ସହିତ ମିତ ହେଲେ, ତେଣୁ ବଚନ ଓ ବାଗ୍‌ଦେବୀ ଉଭୟଙ୍କୁ ଲୋକେ ବାଣୀ ନାମ

ବଲ୍ଲକୀ ତାର୍ ତୁଲ୍ ନ ସ୍ୱର ପରବଶେ ସେ କାତ ।
ବନଃପ୍ତ ସ୍ପୃହ୍ଣ କୁହୁ ଯା ତହ୍ନ ଅନ୍ଧାର ଭଣି ସତ । ୨୪ ।
ବଡ଼ ମଧୁର ଦ୍ରାକ୍ଷାରୁ ଗର ସେହ୍ନ ସ୍ନିଗ୍ଧୁସ୍ପ ସ୍ଥାନ ।
ବର୍ଣ୍ଣୁ ଥିଲେ ତା ଭୁଣ୍ଡକୁ ଚିତା ଅନ ରସତମାନ ।
ଛାତୁଧାଶନ ଅମୃତ ପାନ ହୋଏ କେବଳ ମୁଖେ ।
ବଦେକ । ଯେନ ଶ୍ରବଣେ ପାନ ଯାହା କରନ୍ତି ସୁଖେ । ୨୫ ।
ବଭର୍ଣ୍ଣ ରସସାର ବଶେଷ ଶବ୍ଦର ଧବ୍ୟପାଳ ।
ବଧାତାଙ୍ଗୁଳ ଚହ୍ନରେ ଫଳ ନାରଙ୍ଗ କେତେପାଳ ।
ବହୁ କ୍ଷିରେଖା କ୍ଷିପ୍ତରେ ଦେଖା କଣ୍ଠକୁ ନାହିଁ ଲକ୍ଷେ ।
ବ୍ରତ ବାଞ୍ଛିତ କପୋତବ୍ରାତ ଗହ୍ନ ଶିଳାକୁ ଭକ୍ଷେ । ୨୬ ।

---

ଦେଇଅଛନ୍ତି । ବୀଣାସ୍ୱର ସରସ୍ୱତୀଙ୍କ ବଚନର ସମାନ ହେବ ନାହିଁ । କାରଣ ପର ହସ୍ତରେ ବୀଣାର ସ୍ୱର ପ୍ରକାଶିତ ହୁଏ [ମାତ୍ର ସୀତାଙ୍କ ବଚନ ସ୍ୱତଃ ପ୍ରକାଶିତ ହୁଏ ] ସୀତାଙ୍କ ସ୍ୱର ଶୁଣି କୋକିଳକୁ ଚତୁର୍ଦ୍ଦିଗ । ଅନ୍ଧକାର ଦିଶିବାରୁ ସେ 'କୁହୁ' 'କୁହୁ' ଅନ୍ଧାର ଯାହା କହୁଅଛି ତା ସତ ଅଟେ ।

୨୫ଶ ପଦ—ସୀତାଙ୍କ ବଚନ ଦ୍ରାକ୍ଷାରସଠାରୁ ବଡ଼ ମଧୁର ଓ ସ୍ନିଗ୍ଧୁସ୍ପ ପୂର୍ଣ୍ଣ ଅଟେ । ତାକୁ ବର୍ଣ୍ଣନା କରି ବସିଲେ ଆନ ରସମାନ ଭୁଣ୍ଡକୁ ପିତା ଲାଗେ । । ଦ୍ରାକ୍ଷାରସ ଖାଇଲେ ଅନ୍ୟ କୌଣସି ସ୍ୱାଦ ଯେପରି ଭଲ ଲାଗେ ନାହିଁ, ସେହିପରି ତାଙ୍କ ବଚନ ଶୁଣିଲେ, ଅନ୍ୟର ବଚନ ସୁଖକର ହୁଏ ନାହିଁ । ଯେଉଁ ଅମୃତ ଦେବତାମାନଙ୍କର ଭୋଜନ ଅଟେ, ତାହା କେବଳ ମୁଖରେ ପାନ କରାଯାଏ, ମାତ୍ର ସୀତାଙ୍କ ବଚନାମୃତ ଶ୍ରୁତିମୁଖରେ ଲୋକେ ପାନ କରନ୍ତି । ହେ ବବେକବନ୍ତ ଲୋକ ! ସୀତାଙ୍କ ବଚନ ଯେ ଅମୃତଠାରୁ ଶ୍ରେଷ୍ଠ ଏହା ବଚାର କର ।

୨୬ଶ ପଦ—ବଧାତା ଉତ୍ତମ ପାତ୍ରରେ ଶ୍ରେଷ୍ଠରସମାନ ପକାଇଲାବେଳେ ତାଙ୍କର ଅଙ୍ଗୁଳ ଚହ୍ନ ଧାରଣ କରିଛି କି ?—ଏପରି ଯେଉଁ ଶବ୍ଦ (ଅର୍ଥାତ୍ ଟୁକ୍ କୋମଳ ଶବ୍ଦ ) ତାକୁ ନାରଙ୍ଗ ଉପମାଯୋଗ୍ୟ ହେବାକୁ କେତେମାତ୍ର ! ( ଅର୍ଥାତ୍ କୌଣସି ପ୍ରକାରେ ତାହାର ଯୋଗ୍ୟ ହୋଇ ନ ପାରେ ) । ସେତ ନାରଙ୍ଗ—ଯାହାର ରଙ୍ଗ ନାହିଁ । ସୀତାଙ୍କ କଣ୍ଠକୁ ଉପମା ଦେବାକୁ ତନଲୋକରେ ଆଉ କିଛି ନାହିଁ, ତେଣୁ ତାହା ତ୍ରିରେଖା ଧାରଣ କରିଅଛି [ ଏହାହିଁ କମ୍ବୁଗ୍ରୀବାର ସୂଚନା ମିଳୁଛି ] । କପୋତସବୁ ତାହାଙ୍କ କଣ୍ଠକୁ ସମାନ ହେବେ ବୋଲି ଇଚ୍ଛା କରି ଯୋଡ ଭକ୍ଷଣ କରୁଅଛନ୍ତି । [ କଠୋର ତପସ୍ୟାବାସ୍ତ ଗୋଡ ଭକ୍ଷଣ କରି ତପସ୍ୟା କରିଥାଏ ] ।

ବ୍ୟକ୍ତ ଲକ୍ଷଣାମାନଙ୍କ ଗଣା ମୁଖମଣ୍ଡଳେ ବଳୁଁ ।
ବିଳାପି ଶିଖୀ ଚମରୁ ଦେଖି ବହନ୍ତ କେଶ ସ୍ପୃହୁ ।
ବରହୀ ଏଣୀ ପୁଚ୍ଛକୁ ଆଣି ଉତ୍ପାଟି ଛେଦ ଜନେ ।
ବିକି ଏତେକ ମୂଲ୍ୟ ବୋଲି କି ଦେଖାନ୍ତି ଏ ଭୁବନେ । ୨୭ ।
ବିବେକୀ ଯେହ୍ନୁ ସେ ନିର୍ଜ୍ଜରଙ୍କ ଢ଼ାଳିବା ବ୍ୟାଜେ କେଶେ ।
ବ୍ୟୋମଧୂମକୁ ତାହା ସମକୁ ଲକ୍ଷିବା କି ମାସେ ?
ବିସ୍ୱନ କରି ନୋହେ ମୁଁ ସରି ବୋଲି ଉଦୟ କାଳେ ।
ବିଷ୍ଣୁ ଯେ ରାହୁ ଉପମା ଯହୁଁ ଚକ୍ରେ ଛେଦଦେଲେ । ୨୮ ।
ବିକର୍ତ୍ତନଜା ସେ ସମେ ମହା ବ୍ରୀଡ଼ କୁଞ୍ଚିତେ ସ୍ପୃହା ।
ବିଷ ଯେ ଭଳା ସଙ୍ଗମେ ମେଳା କାଳେ କାଳୀୟ ବହି ।

---

୨୭ଶ ପଦ—ବିଳାପି—କାନ୍ଦି । ଶିଖୀ—ମୟୂର । ବରହୀ—ମୟୂର ।
୨୮ଶ ପଦ—ବ୍ୟୋମଧୂମ—ମେଘ । ବିସ୍ୱନ—ବିଶେଷ ଶବ୍ଦ ।
୨୯ଶ ପଦ—ବିକର୍ତ୍ତନଜା | ସୂର୍ଯ୍ୟକନ୍ୟା (ଯମୁନା) । ବ୍ରୀଡ଼—ଲଜ୍ଜା ।
ବିଷ—ଜଳ । ଅବଳପ୍ରଦା—ଗୋଲକାସ୍ତି । ତମସ—ଅନ୍ଧକାର ।

---

୨୭ ପଦ—ସୀତାଙ୍କ ମୁଖମଣ୍ଡଳରେ ଥିବା ମନୋହର କେଶ ଉପମାମାନଙ୍କୁ ନ୍ୟୂନ କରେ । (ସମସ୍ତ ଉପମା ମୁଖମଣ୍ଡଳ ନିକଟରେ ହାରି ମାନନ୍ତି । ତେଣୁ ମୟୂର ଓ ଚମରୀମୃଗ ( ଉପମିତ ହୋଇ ନ ପାରି ) ବିଳାପ କରି କହିଲେ, "ଆମ ପୁଚ୍ଛ ସୀତାଙ୍କ କେଶ ସହିତ ତୁଳନୀୟ ହୋଇ ପାରିଲା ନାହିଁ ।" ଲୋକେ ମୟୂର ଓ ଚମରୀ ମୃଗଙ୍କ ପୁଚ୍ଛ ଉପାଡ଼ି ଆଣି ସଂସାରରେ ବିକି 'ଏତେକ ମୂଲ୍ୟ' ବୋଲି ଦେଖାଇ ଦେଉଛନ୍ତି । ଅର୍ଥାତ୍ ମୟୂର ପୁଚ୍ଛ ଓ ଚମରୀ ମୃଗ ପୁଚ୍ଛର ମୂଲ୍ୟ ଅଛି; ମାତ୍ର ସୀତାଙ୍କ କେଶ ଅମୂଲ୍ୟ )

୨୮ଶ ପଦ—ବିବେକବାନ୍ ଲୋକ ମୟୂରପୁଚ୍ଛ ଓ ମୃଗ ପୁଚ୍ଛ ଦୁହିଙ୍କି ( ଚାମର କରି ] ଢ଼ାଳି ସୀତାଙ୍କ କେଶକୁ ବନ୍ଦନା କରୁଅଛନ୍ତି । ମେଘକୁ ସୀତାଙ୍କ କେଶ ସହିତ କେଉଁ ମନରେ ବା ତୁଳନା କରିବା । ସେ ମେଘ ଉଦୟ କାଳରେ 'ମୁଁ ସମାନ ନୁହେଁ' ଏହି କଥା କହି ମହାଶବ୍ଦ କରୁଅଛି । ରାହୁ ସୀତାଙ୍କ କେଶ ସହିତ ତୁଳନୀୟ ନ ହେବାରୁ ବିଷ୍ଣୁ ତାକୁ ଚକ୍ରରେ ଛେଦ ଦେଲେ ।

୨୯ଶ ପଦ—ଯମୁନା ସୀତାଙ୍କ କୁଞ୍ଚିତ ଘନକେଶ ସହିତ ସମାନ ହେବା ଇଚ୍ଛାରେ ଦେହରେ ଲଜ୍ଜା ଖେଳାଇଲା । ସମୟରେ କାଳୀୟ ସର୍ପକୁ ହୃଦୟରେ

ବିନାଶେ ଆଶା ପ୍ରବେଶ ଆଷାଢ଼ ଯେ ଅବଳପ୍ରଦା ।
ବିଶ୍ୱଲୋଚନ-ଶୋଚନ ସେନ ତମସ୍କ ନୋହେ କଦା । ୨୯ ।
ବିବର୍ଣ୍ଣ ତୁଲ ତମାଳଦଳ ବୋଲି କି ପୁରସ୍କାର ।
ବେଣୀରେ ପରିଣତ ସେ ଧରି ଝଡ଼ଇ ବାରମ୍ବାର ।
ବିଷ୍ଣୁପଦହିଁ ନୀଳତା ବହି ଶକୁର ତୁଲ ସ୍ନେହେ ।
ବିହେ ତା ଧୂଳିଧୂସର କର ବାତ କି ପକ୍ଷେ ନୋହେ ।୩୦
ବହିଲେ ନୀଳ ଗଳେ ସେ ତୁଲ ବାଞ୍ଛାରେ ମହାଦେବେ ।
ବିକୁର ଉମା ନୋହେ ସେ ସମା ଦେହାଇ ବାହୁ ଲତେ ।

---

୩୦ଶ ପଦ—ବିବର୍ଣ୍ଣ—ମଳିନ । ପରିଣତ—ପକ୍ୱ । ବିଷ୍ଣୁପଦ—ଆକାଶ । ଚିକୁର—କେଶ ।

---

ଧରି ତାହାର ବିଷ ସହିତ ମିଶିଲା ( ଯମୁନା ପାଣି କଳା, କାଳୀ ସାପର ବିଷମଧ୍ୟ କଳା ) । ମାତ୍ର ଆଷାଢ଼ ମାସ ପ୍ରବେଶ କଲାରୁ ( ବର୍ଷା ହେଲାରୁ ) ସେ ଗୋଳିଆ ହୋଇଗଲା, ତେଣୁ ତାହାର ଆଶା ବିନାଶ ହେଲା । ଅନ୍ଧକାର ତ ସଂସାରରେ ଲୋକଙ୍କ ଚକ୍ଷୁର ବଡ଼ ଅପ୍ରୀତିକର; ତାକୁ କଦାପି କେଶ ସହିତ ତୁଳନା କରାଯାଇ ନ ପାରେ ।

୩୦ଶ ପଦ—( ସୀତାଙ୍କ କେଶ ତୁଳନାରେ ) ମଳିନ ପତ୍ରକୁ କେଶ ସହିତ ଉପମା ଦେବାର କା କି ଲାଭ ? ( ଉପମା ଦିଆ ଯାଇ ନ ପାରେ ) । କାରଣ ତମାଳ ପତ୍ରର ସ୍ୱଭାବ, ସେ ପାଚି ଯାଇ ଥରକୁ ଥର ଝଡ଼ି ପଡ଼େ । ( ସୀତାଙ୍କ କେଶ ନ ଝଡ଼ି ସବୁଦିନେ ରହିଥାଏ, ତେଣୁ କ୍ଷଣସ୍ଥାୟୀ ତମାଳ ପତ୍ରଠାରୁ ସେ ଉତ୍କୃଷ୍ଟତର ) । ସୀତାଙ୍କ କେଶ ସହିତ ତୁଳନା ହେବା ଇଚ୍ଛାରେ ଆକାଶ ନୀଳିମା ଧାରଣ କଲା, ( ମାତ୍ର ତାହା ସମାନ ନ ହେବାରୁ ) ପବନ ଧୂଳି ବୃଷ୍ଟିରେ ତାକୁ ପାଣ୍ଡୁର ବର୍ଣ୍ଣ କରି ଦେଲା ଓ ଗର୍ଜନସହ କହିଲା, "ଏହା କେଶ ସହିତ ସମାନ ନୁହେଁ" ।

୩୧ଶ ପଦ—ମହାଦେବ ସେହି କେଶ ସହିତ ତୁଳନ ହେବା ଇଚ୍ଛାରେ କଣ୍ଠରେ ନୀଳବର୍ଣ୍ଣ ଧାରଣ କଲେ, ମାତ୍ର ସମାନ ହେଲା ନାହିଁ ବୋଲି ପାର୍ବତୀ ନିଜ ବାହୁଦ୍ୱୟ ତାଙ୍କ ଗଳାରେ ଗୁଡ଼ାଇ ଦେଲେ ( କଣ୍ଠର ନୀଳିମା ସମାନ ନ ହେବାରୁ ତାକୁ ଲୁଚାଇ ଦେଲେ ) । 'ସୀତାଙ୍କ ସହିତ ସୌନ୍ଦର୍ଯ୍ୟରେ ମୁଁ ପରାଜିତ

ଉଚିତ ସେ ଯେ ସୀତା ସୌନ୍ଦର୍ଯ୍ୟେ ଏମନ୍ତ ଯେଣୁ ଗଉ ।
ବନ୍ଦେ ଗଉରୀପଦରେ କରି ସୁନ୍ଦରୀମଣି ମିତ । ୩୧ ।
ବାରତ ସୀମା ବାଡ଼ ଉପମା ଅଳକା ମୁଖ କେଶେ ।
ବେଳାରେ ବ୍ୟାପୀ ଗଙ୍ଗାର ତଟୀ ମୂଳ ତରିବା ଆଶେ ।
ବୋଧ ସ୍ୱଧରେ ଏ ଦେଖି ଥିବେ ଏତକି ବାତାୟନେ ।
ବର୍ଣ୍ଣ ପଦେ ଏ ଛନ୍ଦ ଉପେନ୍ଦ୍ର ତୋଷମନେ ।୩୨ ।

———

---

୩୨ଶ ପଦ—ଅଳକା—ଚୂର୍ଣ୍ଣକୁନ୍ତଳ । ବେଳାରେ—କୂଳରେ । ବାତାୟନ—ଗବାକ୍ଷ ବା ଝରକା ।

---

ହେବ'—ପାର୍ବତୀ ଏହି କଥା ଚିତ୍ତରେ ଭାବି ଗୌରୀ ନାମ ବହି ସେହି ସୁନ୍ଦରୀ ଶିରୋମଣି ସୀତାଙ୍କର ମିତ ହୋଇ ବନ୍ଦିତ ହୋଇଅଛନ୍ତି । ( ସୀତା ପିଲାଦିନେ ଗୌରୀ—ଅଷ୍ଟବର୍ଷା ଭବେତ୍ ଗୌରୀ—ଥିଲେ, ତେଣୁ ପାର୍ବତୀ ଗୌରୀ ନାମ ଧାରଣ କରି ତାଙ୍କର ମିତ ହେଲେ ) ।

୩୨ଶ ପଦ— ମୁଖ ଓ କେଶ ମଧ୍ୟରେ ଅଳକା ( ମୁଣ୍ଡରେ ପିନ୍ଧାଯିବା ଅଳଙ୍କାର ବିଶେଷ ) ସୀମାବାଡ଼ ସଦୃଶ ଅଟେ ( କେଶ ଓ ମୁଖର ସୀମାକୁ ଚିହ୍ନାଉଥିବା ବାଡ଼ ପରି ଅଟେ ) । ସୀତାଙ୍କର ସୌନ୍ଦର୍ଯ୍ୟ ବର୍ଣ୍ଣନା କରୁ କରୁ ବିଶ୍ୱାମିତ୍ର ଗଙ୍ଗାତଟରେ ସ୍ରୋତବତୀ ଗଙ୍ଗା ପାରି ହେବା ଆଶାରେ ତୁନି ହେଲେ । (ଅନ୍ୟାନ୍ୟ ଅଙ୍ଗର ବର୍ଣ୍ଣନା କଲେ ନାହିଁ ) । ରାମଚନ୍ଦ୍ର ଭାବିଲେ, 'ମୁନି କେବଳ ଏତିକି ( ମସ୍ତକ ଭାଗ) ଝରକାରେ ଦେଖିଥିବେ; ( ସର୍ବାଙ୍ଗ ଦେଖି ନାହାନ୍ତି) । ଉପେନ୍ଦ୍ର ତୋଷ ମନରେ ଏ ଛନ୍ଦକୁ ବର୍ଣ୍ଣ ଛନ୍ଦିଲେ ।

———

## ନବମ ଛାନ୍ଦ

### ରାଗ—ଚୋଖି

ବିତଳକୁ ଆଲିଙ୍ଗନ                    କରି ଜାହ୍ନବୀ ଶୋଭନ
ହରେ ସୁର-ବର ତାପ ସୁନ୍ଦରଧାରା ସେ ।
ଏହେ ମକର-କେତନ                    ଉତ୍କଣ୍ଠା ରତି ସମାନ
ପୂରିତ ହୋଇଛି ପୁଣି ଅଶେଷ ରସେ ।
ବନ୍ଦ୍ୟ ହୈମବତୀ ପଦରେ ।
ବୃଷଧ୍ୱଜ ତୋଷଦାୟୀ ଦେଖ ମତରେ । ୧
ବିଷ୍ଣୁପଦୀ ବିଷ୍ଣୁପଦ                    ଈକାର ଭେଦ କେବଳ
ତରଣୀର ଗତାଗତ ତହିଁ ଉଚିତ ।

---

୧ମ ପଦ—ବିତଳ—ସପ୍ତ ପାତାଳର ଦ୍ୱିତୀୟ ପାତାଳ । ସୁନ୍ଦରଧାରା—ଶଚୀ, ମନୋହର ପ୍ରବାହ । ହୈମବତୀ—ପାର୍ବତୀ, ଗଙ୍ଗା । ବୃଷଧ୍ୱଜ—ମହାଦେବ ।

---

## ନବମ ଛାନ୍ଦ

୧ମ ପଦ—( ବିଶ୍ୱାମିତ୍ର ରାମ ଓ ଲକ୍ଷ୍ମଣଙ୍କ ସହିତ ଗଙ୍ଗାକୂଳରେ ପହଞ୍ଚି ଦେଖିଲେ) ବିତଳକୁ ଆଲିଙ୍ଗନ କରି ଗଙ୍ଗା ଶୋଭା ପାଉଅଛି ( ଏହାଦ୍ୱାରା ଗଙ୍ଗାର ଗଭୀରତା ସୂଚିତ ହେଉଅଛି )। ଶଚୀ ଯେପରି ଇନ୍ଦ୍ରଙ୍କର ସ୍ମରତାପ ହରଣ କରନ୍ତି, ସେ ଗଙ୍ଗା ସେହିପରି ମନୋହର ପ୍ରବାହରେ ସ୍ପର୍ଶୀ ତାକୁ ( ସ୍ନାନାଦି ଦ୍ୱାରା ) ହରନ୍ତି । ପୁଣି ସେ ରତି ସମାନ ଅଟନ୍ତି; ରତି ଯେପରି କନ୍ଦର୍ପର ଉତ୍କଣ୍ଠା ବିଧାନ କରେ, ବସ୍ତୁତ [ ଶୃଙ୍ଗାର ରସରେ ପୂର୍ଣ୍ଣ ଅଟେ, ଗଙ୍ଗା ସେହିପରି ମକର ଜଳଚର ଜନ୍ତୁ ବିଶେଷରେ ପୂର୍ଣ୍ଣ ହୋଇଅଛି ଓ ଉଦ୍‌ବେଗ ବର୍ଦ୍ଧନ କରୁଅଛି । ସେ ଅପରିମିତ ଜଳରେ ମଧ୍ୟ ପୂର୍ଣ୍ଣ ଅଟେ । 'ହୈମବତୀ' ପାର୍ବତୀ 'ବୃଷଧ୍ୱଜ' ମହାଦେବଙ୍କର ତୋଷ ବିଧାନ କଲା ପରି ଓ ବିଷତାପ ହରିଲା ପରି 'ହୈମବତୀ' ଗଙ୍ଗା (ଗଙ୍ଗା ହିମାଳୟରୁ ଜାତ, ତେଣୁ ହୈମବତୀ ] ହଂସ ପ୍ରଭୃତି ଜଳ ଚର ପକ୍ଷୀମାନଙ୍କର ଆହାର ବିହାରରେ ତୋଷ ବିଧାନ କରନ୍ତି । ଗଙ୍ଗା କୂଳରେ ଜଳଚର ପକ୍ଷୀମାନେ ବିହାର କରି କ୍ଷୁଧା ତାପ ଓ କନ୍ଦର୍ପ ତାପ ଉଭୟ ହରଣ କରନ୍ତି ।

୨ୟ ପଦ—ବିଷ୍ଣୁପଦୀ ଓ ବିଷ୍ଣୁପଦ ଏ ଦୁଇ ଶବ୍ଦର ଈକାର ମାତ୍ର ପ୍ରଭେଦ ଅଛି, ଆଉ ସବୁ ସମାନ । ତେଣୁ 'ବିଷ୍ଣୁପଦରେ' ଆକାଶରେ ତରଣି

ବିଶାରଦ ସେ ସାମନ୍ତ          ମଣ୍ଡରେ-ଦାସ ସେବନ୍ତି
ତାଙ୍କୁ ନ ଶୁଣନ୍ତେ ରଘୁନାଥ କହନ୍ତି ।
ବିଷଧର ପ୍ରାୟେ କି ତୁହି ।
ବେଳେ ନେତ୍ର ତାଳି ଶୁଣ ଉଦାର ନୋହି । ୨ ।

ବଧିର ନୁହଇ ବୀର          ବୋଇଲା ତହୁଁ ଧୀବର
ଶୁଣିଲଣି ପଟରେ ପଥର ଅବଳା ।
ଦାଇ ପଡି ତୋ ଚରଣୁ          ଅଶଙ୍କା ଉପୁଜେ ଏଣୁ
ନଉକା ନାୟିକା ହେଲେ ବୁଡିବ ଭେଳା ।
ବୃତ୍ତି ଏ ମୋ ପୋଷେ କୁଟୁମ୍ବ ।
ବସାଇ ନ ଦେବି ପାଦ ନ ଧୋଇ ନାବ । ୩ ।

ବଢାଇ ଦେଲେ ପୟର          ଭବଭ୍ରାନ୍ତିହା ରଘୁବୀର
ପୟରେ କ୍ଷାଳିତ କରି ବସନେ ପୋଛି ।

---

୨ୟ ପଦ—ବିଷ୍ଣୁପଦୀ—ଗଙ୍ଗା  ବିଷ୍ଣୁପଦ—ଆକାଶ  ତରଣୀ(ଣି)— ନୌକା, ସୂର୍ଯ୍ୟ । ବିଶାରଦ—ନିପୁଣ ବା ଦକ୍ଷ । ମଣ୍ଡରେ—ଗର୍ବରେ । ଦାସ— ଭୃତ୍ୟ । ବିଷଧର—ସାପ ।

---

ସୂର୍ଯ୍ୟ ଗତାଗତ କରୁଥିବା ପରି 'ବିଷ୍ଣୁପଦୀ' ଗଙ୍ଗାରେ 'ତରଣୀ' ନୌକା ସବୁ ଗତାଗତ କରିବା ଉଚିତ । ସେ ନୌକାସାମନ୍ତ ପଦବାଚ୍ୟ । ସାମନ୍ତମାନେ ଯେପରି 'ଦାସ' ଭୃତ୍ୟଙ୍କର ସେବ୍ୟ, ନୌକା ସେହିପରି 'ଦାସ' କେଉଟମାନଙ୍କର ସେବ୍ୟ । ସେହି ( ଦାସ ) ଧୀବରକୁ ବିଶ୍ୱାମିତ୍ର ଡାକନ୍ତେ ସେ ଶୁଣିଲା ନାହିଁ । ତହୁଁ ରଘୁନାଥ କହିଲେ. "ତୁ ସର୍ପ ପ୍ରାୟ କି ? ( ସର୍ପର କାନ ନାହିଁ । ସେ ତ ନେତ୍ରରେ ଶବ୍ଦସବୁ ଶୁଣେ, ତୁ ସେହିପରି ଉଦାସ ନ ହୋଇ ନେତ୍ର ତାଳି ଥରେ ହେଲେ ଶୁଣ୍ ।"

୩ୟ ପଦ—ସେ ଧୀବର କହିଲା, "ହେ ବୀର । ମୁଁ ବଧିର ନୁହେଁ । ଶୁଣିଲଣି ତୋହର ଚରଣରୁ ଧୂଳି ପଡିବାରୁ ବାଟରେ ପଥର ଅବଳା ହେଲା । ଏଣୁ ଭୟ ଜାତ ହେଉଅଛି, ଏ ନୌକା ସ୍ତ୍ରୀ ହେଲେ ମୋର ଭେଳା ବୁଡିଯିବ ( ସମସ୍ତ ସରିଯିବ ) । ଏ ନୌକା ମୋର ବୃତ୍ତି ( ଜୀବନ ପୋଷିବାର ଉପାୟ) ଏହାଦ୍ୱାରା ମୁଁ କୁଟୁମ୍ବ ପୋଷୁଅଛି । ତେଣୁ ତୁମ୍ଭର ପାଦ ନ ଧୋଇଲେ ନାବରେ ବସାଇ ଦେବି ନାହିଁ । ( କାଷ୍ଠପାଷାଣରେ ପ୍ରଭେଦ କିଛି ନାହିଁ, ପଥର ନାୟିକା ହୋଇଥିବା ସ୍ଥଳେ ନୌକା ନାୟିକା ହେବା ଅସମ୍ଭବ ନୁହେଁ ) ।"

୪ର୍ଥ ପଦ—ଧୀବରର ଏହିପରି ଭକ୍ତିଗର୍ଭକ ବଚନ ଶୁଣି ଭବଭ୍ରାନ୍ତିହା ରାମଚନ୍ଦ୍ର ପାଦ ( ଧୋଇବା ପାଇଁ) ବଢାଇ ଦେଲେ । ତାହା ଦେଖି ଧୀବର ସେ



ନବମ ଛାନ୍ଦ ।

ଦାଣ୍ଡାଇ ଦେଲେ ପଥର ଭାଦଗାହୀ ରଘୁବୀର ପଦ୍ମରେ ଯାଳିତ କଲେ ଦାସନେ ପୋଛି ।
ଦ୍ରୁହ୍ନାରେ ଧୌତ ଯେ ପଦ ନୋହୁଛି ଶିବ ବିଷାଦ ନ ପାଇ ଚରଣାମୃତ ପାନକୁ ଇଚ୍ଛି ।
ବାଞ୍ଛାନ୍ତି କୈବର୍ତ୍ତି ଧୋଇଲା । ବଶେ ପତିତପାବନ ନାମ ରହିଲା ॥

ବ୍ରହ୍ମାରେ ଧୌତ ଯେ ପଦ — ନୋହୁଛନ୍ତି ଶିବ ପ୍ରସାଦ
ନ ପାଇ ଚରଣାମୃତ ପାନକୁ ଇଚ୍ଛି ।
ଅଜ୍ଞାନୀ କୈବର୍ତ୍ତ ଧୋଇଲା ।
ବିଶ୍ୱେ ପତିତପାବନ ନାମ ରହିଲା । ୪ ।
ବସି ପଲ୍ଲବ ନାବରେ — ପଦ ବିକଳ୍ପ ମନରେ
ପ୍ରଭୁହାସ୍ୟ ପରରେ ମଣାଇ ବସାଇ ।
ବିଶ୍ୱାମିତ୍ରଙ୍କୁ ଶ୍ରୀରାମ — ପଚାରିଲେ ଗଙ୍ଗା ନାମ
ଭାଗୀରଥୀ କିମ୍ପା ହେଲା କହ ଗୋସାଇଁ ।
ବିଷ୍ଣୁ ନଖକୋଣେ ଏ ଥିଲା ।
ବାମନାବତାରେ ଭଗୀରଥ ଆଣିଲା । ୫ ।
ବିଧିପୂର୍ବ କରି ଋଷି — ସମସ୍ତ ଚରିତ ଭାଷି
ତରି ତ ତ୍ୱରିତ ଯାଇ ଲଗେ କୂଳର ।

---

୪ର୍ଥ ପଦ—ପୟରେ—ଜଳରେ । ଅଜ୍ଞାନୀ—ମୂଢ଼ ବା ପାପୀ ।
୫ମ ପଦ—ବିକଳ୍ପ—କଳ୍ପନା, ସନ୍ଦେହ ବା ସଂଶୟ ।

---

ପଦକୁ ଜଳଦ୍ୱାରା ଧୌତ କରି ନିଜ ବସନରେ ପୋଛି ଦେଲା ; ଚରଣାମୃତ ପାନ କରିବାକୁ ଇଚ୍ଛା କରିଥିବା ବ୍ରହ୍ମାଙ୍କଦ୍ୱାରା ଯେଉଁ ପାଦ ଧୌତ ହୋଇ ନାହିଁ, ଶିବ ଯେଉଁ ପାଦ ଧୌତ କରିବାକୁ ନ ପାଇ ବିଷାଦିତ ହୋଇଅଛନ୍ତି, ଏପରି ଯେ ବିଷ୍ଣୁଙ୍କ ପାଦ, ତାକୁ ଅଜ୍ଞାନୀ କୈବର୍ତ୍ତ ଧୋଇଲା । ସେହି ହେତୁ ସଂସାରରେ ପତିତପାବନ ନାମ ଖ୍ୟାତ ହେଲା ।

୫ମ ପଦ—(ଧୋଇବା ଦ୍ୱାରା ପଦ ରେଣୁ ପତିତ ନାହିଁ ସତ, ମାତ୍ର ତାଳେ ପାଦ ଲାଗି ନୌକା ସ୍ତ୍ରୀ ହୋଇଯିବ, ଏହିପରି) କଳ୍ପନା କରି ସେ ଧୀବର ନାବରେ କୋମଳ ପତ୍ର ବିଛାଇ ପ୍ରଭୁହାସ୍ୟ ପରି ମଣାଇ ସେ ଜନଙ୍କୁ ନେଇ ନାବରେ ବସାଇଲା । ତାହା ପରେ ରାମଚନ୍ଦ୍ର ବିଶ୍ୱାମିତ୍ରଙ୍କୁ ପଚାରିଲେ, "ହେ ଗୋସାଇଁ, ଗଙ୍ଗାଙ୍କ ନାମ ଭାଗୀରଥୀ କାହିଁକି ହେଲା ?—କହନ୍ତୁ । ( ବିଶ୍ୱାମିତ୍ର ଉତ୍ତର ଦେଲେ) ଏ ଗଙ୍ଗା ବାମନାବତାରରେ ବିଷ୍ଣୁଙ୍କ ନଖ କୋଣରେ ଥିଲେ । ଭଗୀରଥ ତାହାଙ୍କୁ ଆଣିଲେ (ଭଗୀରଥ ଦିଲୀପର ପୁତ୍ର ନୃପ, ସେ ଆଣିଥିବାରୁ ଏହାର ନାମ ଭାଗୀରଥୀ) ।

୬ଷ୍ଠ ପଦ—ଋଷି ବିଧିପୂର୍ବକ ଗଙ୍ଗା ମହିମାକୁ ଆଦି କରି ଚରିତମାନ କହିଲେ । ଏହି ସମୟରେ ନୌକା ଶୀଘ୍ର ଯାଇ କୂଳରେ ଲାଗିଲା । ତାହାଙ୍କ

ବିହାର ହେଲେ ମାର୍ଗର ମାର୍ଗଣ କମାଣଧର
ମାର୍ଗଣ ଶୋଭା ଲୋକଙ୍କୁ କନ୍ଦର୍ପ ଯାର ।
ବିଦେହମଣ୍ଡଳେ ପ୍ରବେଶ ।
ଚାରିବେଦ ପୁର ସାର ମୋହନ ପୁଂସ । ୨ ।
ବିପଣୀରେ ଥିଲା ଜନେ ଭାବନା କଲେ ଦର୍ଶନେ
ଅଗତ କି ଧାତା ହର ମଧ୍ୟରେ ହରି ।
ଅଭଞ୍ଜନ ଶିବଧନୁ ଭରି ମରକତ ତନୁ
ଭର୍ତ୍ତା ହେବେ ସୀତା କର୍ଣ୍ଣେ ଇନ୍ଦିରା ଶିରୀ ।
ବଶ ଏ ରମ୍ୟରେ ମାନସ ।
ବିଜେ ରାମ ଅଦଭୁତେ ଶୁଭେ ଏ ଘୋଷ । ୩ ।
ବିଭ୍ରମ ଏ ଶବ୍ଦ ଶ୍ରୋତେ ରା ମା ହୋଇଗଲା ଶ୍ରୁତେ
ନାରୀଏ ଭାଳିଲେ କେହ୍ନେ ସେ ରୂପବନ୍ତ ।

---

୧ମ ପଦ—ବିଧିପୂର୍ବ—ଯଥାବିଧି । ତରୀ—ନୌକା । ମାର୍ଗ—ପଥ । ମାର୍ଗଣ—ଶର । ମର୍ଦ୍ଦଣ—ମାରିବା କମାଣ—ଧନୁ । ଚାରି ବେଦ ପୁର-ସାର—ଚତୁର୍ଦ୍ଦଶ ଭୁବନରେ ଶ୍ରେଷ୍ଠ ।

---

ଶୋଭାର ସାମାନ୍ୟ ଅଂଶକୁ କନ୍ଦର୍ପ ମାଗିନେବାକୁ ମନ କରୁଅଛି, ସେହି ଚତୁର୍ଦ୍ଦଶ ପୁରର ଶ୍ରେଷ୍ଠ ମୋହନ ପୁରୁଷ ଧନୁଶରଧାରୀ ରାମ [ନୌକାରୁ ଓହ୍ଲାଇ] ପଥରେ ଗମନ କରି ବିଦେହ ମଣ୍ଡଳରେ ପ୍ରବେଶ କଲେ ।

୨ୟ ପଦ—(ବିଦେହର) ଦୋକାନରେ ଥିବା ଲୋକମାନେ ବିଶ୍ୱାମିତ୍ର, ରାମ ଓ ଲକ୍ଷ୍ମଣଙ୍କୁ ଦର୍ଶନ କରି ମନରେ ଭାବନା କଲେ, "(ଆଗରେ) ବିଧାତା, (ପଛରେ) ମହାଦେବ ଓ ମଧ୍ୟରେ ବିଷ୍ଣୁ ଆଗତ କଲେ କି ? ମରକତକାନ୍ତିଧାରୀ ବିଷ୍ଣୁ ଶିବଧନୁ ଭଗ୍ନ କରି ଲକ୍ଷ୍ମୀ ସ୍ୱରୂପା ସୀତାଙ୍କୁ ବିବାହ ହେବେ ।" ରାମଙ୍କ ସୌନ୍ଦର୍ଯ୍ୟରେ ଲୋକମାନଙ୍କ ମାନସ ବଶ ହେଲା । ରାମ ବିଜେ କଲେ ଏ ଶବ୍ଦ ଅଦ୍ଭୁତରେ ଶୁଣାଗଲା ।

୩ୟ ପଦ—'ରାମ ବିଜେ କଲେ' ଏ ଶବ୍ଦ ଶୁଣିବା ଭ୍ରମବଶରେ ସମସ୍ତଙ୍କ ଶ୍ରବଣରେ 'ରା' 'ମା' ହୋଇଗଲା [ ରାମ ନ ଶୁଣି କାମ ଶୁଣିଲେ ] । ନାରୀମାନେ ଭାଳିଲେ, ସେ କାମ ରୂପବନ୍ତ କିପରି ହେଲା ? [ ସେ ତ ଅରୂପ, ଅନଙ୍ଗ ] । ପରେ ମନରେ ଭାବିଲେ, ନାମ ପଛରେ ତ ଚନ୍ଦ୍ର ପ୍ରକାଶ ପାଉଅଛି [ରାମଚନ୍ଦ୍ର], ତେଣୁ ସେହା ହୋଇଗଲା ଅର୍ଥାତ୍ ନିଶ୍ଚୟ ପୂର୍ଣ୍ଣଚନ୍ଦ୍ର ହେଲା ।

ବଳନ୍ତ ବଣ ମାନସ — ନାମ ଯଚ୍ଛେ ତ ପ୍ରକାଶ
ଅଖଣ୍ଡଚନ୍ଦ୍ର ଏ ହୋଇବାର ଜଇତ ।
ବୋଧିବେ ନୟନ ଚକୋରୀ ।
ବଶେଷେ ଶୋଭା ପୀୟୂଷ ପାନ ବିସ୍ତାରି । ୮ ।
ବପଥୁ କରି ଅନ୍ତର — ସେ ପ୍ରାନ୍ତ ହୃତ ପ୍ରକାର
ମଣି ରମଣୀ ବାହ୍ୟାର ଛନ୍ଦ ଦ୍ୱିଗୁଣ ।
ବନାଶି ଗୁରୁ ଗୌରବ — ତାହାଙ୍କର ସେହି ସବ
ଉଦ୍ଧତଙ୍କୁ କରି ନ ପାରିଲେ ବାରଣ ।
ବେଶେ ଥିଲେ ଯେତେକ ନାରୀ ।
ବହେ ବେ ନେନେ କଜ୍ଜ୍ୱଳ ଛଳେ କସ୍ତୁରୀ । ୯ ।
ବକ୍ଷସ୍ଥଳେ କେଉଁ ବାଳା — କିଙ୍କିଣୀକି ଲମ୍ବାଇଲା
ନୂପୁରକୁ ଖଞ୍ଜିଲା ମଧ୍ୟଦେଶରେ ।

---

୮ମ ପଦ—ସ୍ୱ ବା ହୋଇଗଲା ଅର୍ଥାତ୍ 'ସମ' 'ବାମ' ବୋଲି ଶୁଭିଲା । ରାକା—ପୂର୍ଣ୍ଣିମା । ଅଖଣ୍ଡଚନ୍ଦ୍ର—ପୂର୍ଣ୍ଣଚନ୍ଦ୍ର, ପୀୟୂଷ—ଅମୃତ ।

୧୦ମ ପଦ—ଚିକୁର—କେଶ । କଙ୍କତିକା—ପାନିଆ ।

---

ସେହି ପୂର୍ଣ୍ଣଚନ୍ଦ୍ର, ଶୋଭା ରୂପ ପିୟୂଷରଶ୍ମିପାନକୁ ବିସ୍ତାର କରି ଜନମାନଙ୍କ ନୟନ ରୂପ ଚକୋରୀକୁ ବୋଧ କରିବେ । (ଚକୋରୀ ପୂର୍ଣ୍ଣଚନ୍ଦ୍ରର ଜ୍ୟୋତ୍ସ୍ନାକୁ ଦେଖି ତୋଷ ହେବ) ।

୯ମ ପଦ—ରମଣୀମାନେ 'ବେପଥୁ' ନାମଧେୟକୁ ତ୍ୟାଗ କରି, ତାକୁ ଶବ୍ଦର ଶେଷ ଅକ୍ଷର 'ଥୁ'କୁ ନାଶ କରି (ଅର୍ଥାତ ବେପଥୁରୁ ଗଲେ ବେପ ରହିଲା) ତାକୁ ବେପଥ ମଣି ବାହାର ହେଲେ । ସେମାନେ ଦ୍ୱିଗୁଣରେ ବିଚଳିତ ହେଲେ (କାମ ବଳେ ଶୁଣି ବିଚଳିତ ହୋଇଥିଲେ । ବର୍ତ୍ତମାନ ରାମ ବୋଲି ଶୁଣି ଦ୍ୱିଗୁଣ ବିଚଳିତ ହେଲେ) ସେମାନେ ଗୁରୁଜନଙ୍କ ଗୌରବକୁ ବିନାଶକଲେ । ଗୁରୁଜନମାନେ ମଧ୍ୟ ବିଚଳିତ ହୋଇଥିବାରୁ ସେମାନଙ୍କୁ ବାରଣ କରି ପାରିଲେ ନାହିଁ । ଯେଉଁ ନାରୀମାନେ ବେଶ ହେବାରେ ରତ ଥିଲେ, ତାଙ୍କ ମଧ୍ୟରୁ କେହି କଜ୍ଜ୍ୱଳ ଛଳରେ କସ୍ତୁରୀ ନେଇ ଆଖିରେ ଲଗାଇଲା ।

୧୦ମ ପଦ—କେଉଁ ଷୋଡ଼ଶୀ ଭ୍ରମ ହେତୁରୁ ବକ୍ଷରେ କିଙ୍କିଣୀକୁ ଲଗାଇଲା, ନୂପୁରକୁ କଟୀରେ ଖଞ୍ଜିଲା । କେଉଁ ନାୟିକାର କେଶବାଣୀ

ବେଶକାରୀ କେ ତାହାର    ସିନ୍ଦୂର ଦେଲା ପୟର
ଚିତା ଲଲାଟରେ ଲେଖେ ଲାକ୍ଷାରସରେ ।
ଝାବନ୍ଧ କରି କେ ଚିକୁର ।
ବେଗେ ଚଙ୍କଡ଼କାରେ ଖୋସିଲେ ଚାମର । ୧୦ ।
ବସିଥିଲା ପତିକୋଳ    କେ ଯେବନ ପତିତ ମେଳ
ଭୃତ କରି ଯୁବା ଦେଖା ଗତ ସେ କରି ।
ବିପରୀତ ତାହା ସାଇଁ    ମାଗୁଁ ଦେଖିବା ଆଶାୟୀ
ସ୍ୱତ ଦୁଇ ପୁଂସେ ଭାଷେ ପୁଷ୍ପେ ସଅରି ।
ବଳା ଖଞ୍ଜୁ କେ ମାନୀ ଭାଷେ ।
ବନ୍ଧରେ ଭୁଲାଇ କେବେ ନୁହଇ ଦୋଷୀ । ୧୧ ।
ବୟସୀଏ ଗୀତ ଗାଇ    କେ ରାମା ବୀଣା ବଜାଇ
ଥୋଇଅଛନ୍ତି ଭାବ ବୃହିଁ ଭୁଜ ସେମାଳୀ ।

---

୧୨ଶ ପଦ—ବୟସୀଏ——ସଖୀସମୂହ । ରାଗରେ—ଅନୁରାଗରେ, ସ୍ନେହରେ ।

---

ସିନ୍ଦୂରକୁ ଅଳତା ରସ ମନେ କରି ପାଦରେ ଦେଲା । ଅଳତା ନେଇ ଲଲାଟରେ ଚିତା ଲେଖିଲା । କେଉଁ ରମଣୀ କେଶ ମୁକୁଳିତ କରି ବେଗରେ ଚାମରକୁ ବାଳ ବୋଲି ପାଶଅରେ ଚକ୍‌ଣ ଦେଲା ।

୧୧ଶ ପଦ—କେଉଁ ରମଣୀ ପତି କୋଳରେ ବସିଥିଲା, ମାତ୍ର ତାହାକୁ ଭୃତ୍ୟ ମନେ କରି ଯୁବା ରାମଚନ୍ଦ୍ରଙ୍କ ଦର୍ଶନରେ ମୁକ୍ତି ମିଳିବ, ଏହା ଭାବି (ପତିକୁ ତ୍ୟାଗ କରି ରାମ ଦର୍ଶନକୁ) ଗମନ କଲା । ତାହାର ସ୍ୱାମୀ ବିପରୀତ ରତି ମାଗନ୍ତେ ରାମଚନ୍ଦ୍ରଙ୍କ ଦର୍ଶନାକାଂକ୍ଷିଣୀ ରମଣୀ ( ପୁରୁଷ ବିପରୀତ ରତି ମାଗୁଛି ଏ ଲୋଭ ଓ ରାମଚନ୍ଦ୍ର ଦର୍ଶନ ଲୋଭ ଏ ଦୁଇ ଲୋଭରୁ ରାମ ଦର୍ଶନ ଲୋଭ ପ୍ରବଳ ହେବାରୁ) ପୁରୁଷକୁ ଭୁଲାଇ କହିଲା, ମୁଁ ପୁଷ୍ପବତୀ ହୋଇଅଛି ।” ତାହାର ସ୍ୱାମୀ ରମଣୀର ପାଦରେ ବଳା ଖଞ୍ଜିବାରୁ ସେ ସ୍ତ୍ରୀ ସ୍ୱାମୀକୁ ଭୁଲାଇ କହିଲା, “ମୁଁ ତ ଦୋଷୀ ନୁହେଁ । (ସ୍ତ୍ରୀମାନେ ତ ଅଳଙ୍କାର ପ୍ରିୟ, ତଥାପି ରାମଚନ୍ଦ୍ରଙ୍କ ଦର୍ଶନ ଆଶା ଏପରି ବଳବତ୍ତର ହୋଇଥିଲା ଯେ, ସେ କହିଲା, ଦୋଷୀକୁ ସିନା ଗୋଡ଼ ବନ୍ଧା ଦିଆଯାଏ, ମୁଁ ତ ଦୋଷୀ ନୁହେଁ, ମୋତେ କାହିଁକି ଗୋଡ଼ବନ୍ଧା ଦେଉଛ) ।”

୧୨ଶ ପଦ—ସଖୀମାନେ ଗୀତ ଗାଉଥିଲେ, କେଉଁ ରମଣୀ ବୀଣା ବଜାଉଥିଲା । (ରାମଚନ୍ଦ୍ରଙ୍କ ଦର୍ଶନ ପାଇଁ) ସେ ବୀଣା ଥୋଇ ଧାଇଁଗଲା । ରାମଚନ୍ଦ୍ରଙ୍କୁ ଦେଖିବା ପାଇଁ ସଖୀମାନେ ଧାଇଁଲିବା ସମୟରେ ଜଣ ବୃଦ୍ଧକୁ

ବାଜନ୍ତ କଙ୍କିଣୀ ସ୍ୱର ମଣିଲେ ଧାଇଁ ପ୍ରଖର
ଅମୃତାରେ ଦେଲ କାହିଁ ଗମିଣ ଆଳୀ ।
ବିସୋର ସେ ରାଗରେ ରାଗ ।
ବୋଲୁଥିଲେ ରାମକେରୀ ର ଲ ସଂଯୋଗ । ୧୨ ।
ବାନର ବାନରୀ ରଞ୍ଜି ପରସ୍ପରେ ଭୁଞ୍ଜାଭୁଞ୍ଜି
ପାନ ଛୁଞ୍ଚା କର ଦଆଦେଇ ହୋଇଲେ ।
ବାହୁ ବାହୁ ଆଲିଙ୍ଗନ ଲତିକା ତରୁ ସମାନ
ତରୁଣ ତରୁଣୀ ଥିଲେ ତେଜି ଧାଇଁଲେ ।
ବାମା ଦେହ ହରିଦ୍ରା ଘେନେ ।
ବଚ୍ଛିତ ଦେଖାଇ ଗଲେ ନ ପୋଛୁ ସ୍ନାନେ । ୧୩ ।
ବଧୂ ପାତ୍ର ସାମନ୍ତଙ୍କ ଶ୍ରବଣେ ଅତି ଉତ୍ସୁକ
ଜଗତୀ ଗତକ ଦେଖି ସଶୀଏ ଝାମ୍ପେ ।

୧୩ଶ ପଦ :—ବଚ୍ଛିତ—ଭଙ୍ଗୀ ।

୧୪ଶ ପଦ :—ପାତ୍ର—ମନ୍ତ୍ରୀ । ଜଗତ—ଅଟ୍ଟାଳିକା । ଗତକ—ଅଟ୍ଟାଳିକା । ଗତକ—ଅତିଶୟ ଭୟ । ଉଶୀର—ବେଣା । ଶିଶିରକର—ଚନ୍ଦ୍ରକିରଣ, କର୍ପୂର ।

ଦେଖି ବୀଣା, ରୋମସବୁକୁ ବୀଣାତାର ବୋଲି ଭାବିଲେ, ଯିବା ସମୟରେ କଙ୍କିଣୀ ସ୍ୱରକୁ ବୀଣାସ୍ୱର ଭାବି ମନେ କଲେ; 'ସଖି ଆମ ହାତରେ ବୀଣା ଦେଇ ଗଲ କି ?' ରାମଚନ୍ଦ୍ରଙ୍କୁ ଦର୍ଶନ କରିବାପାଇଁ ଯେ ଅନୁରାଗ ଜାତ ହେଲା, ତଦ୍ୱାରା ପୂର୍ବେ ବୋଲୁଥିବା ଗୀତର ରାଗ ବିସ୍ମରଣ ହୋଇଗଲା । ରାମକେରୀ ରାଗ ବୋଲୁଥିଲେ, ତହିଁରେ 'ର' ସ୍ଥାନରେ 'ଲ' ସଂଯୋଗ ହେଲା ( ରାମକେରୀ ହୋଇ ରାମକେଲୀ ହେଲା )।

୧୩ଶ ପଦ :—ଯେଉଁ ନାୟକ ନାୟିକା ପରସ୍ପରରେ ଅନୁରାଗର ସହିତ ପାନ ଭୁଞ୍ଜାଭୁଞ୍ଜି ହେଉଥିଲେ; ରାମ ଦର୍ଶନ ଆଶାରେ ବିଚଳିତ ହୋଇ ଖାଲି ହାତ ଦଆ ଦେଇ ହେଲେ । ତେଣୁ ତରୁଣ ତରୁଣୀ ବୃକ୍ଷ ଲତା ପ୍ରାୟ ବାହୁ ବାହୁକୁ ଛନ୍ଦାଛନ୍ଦି ହୋଇଥିଲେ, ସେ ତାହା ତ୍ୟାଗକରି ରାମଙ୍କ ଦର୍ଶନ ପାଇଁ ଧାଇଁଲେ । ଯେଉଁ ରମଣୀ ଦେହରେ ହଳଦୀ ଲଗାଉଥିଲା ।ହାନ କରି ମାତ୍ର ପୋଛି ନ ହୋଇ ଅଙ୍ଗର ଛଟା ଦେଖାଇ ରାମଙ୍କ ଦର୍ଶନକୁ ଦୌଡ଼ିଲା

୧୪ଶ ପଦ :—ପାତ୍ର, ମନ୍ତ୍ରୀ ଓ ସାମନ୍ତଙ୍କର ସ୍ତ୍ରୀମାନେ ରାମ ଆସିବେ ବୋଲି ଶ୍ରବଣ କରି ତାଙ୍କୁ ଦେଖିବା ନିମନ୍ତେ ଉତ୍ସୁକ ହୋଇ ଅଟ୍ଟାଳିକା ଉପରକୁ ଯିବାକୁ

ବଡ଼ଭ ଲଭିଲ ନାହିଁ    ବଡଭି ଲଭବ ଗୃହି
ଜଗତ-ଚିତ୍ତ ଦାତାଙ୍କୁ ଅନଙ୍ଗ ବଶେ ।
ବାଟି ଭ୍ରମିହେବୁଁ ଉଶୀର ।
ବାଧିବ ସବବ ବେଳି ଶିଶିରକର । ୧୪ ।
ବିଗ୍ରହ ଦ୍ୱିପ ଆରମ୍ଭେ    ସୁନ୍ଦର ଦର୍ଶନ ଲୋଭେ
ପ୍ରଭଞ୍ଜନ-ପଥ ପ୍ରଭଞ୍ଜନ ହୋଇବ ।
ବିଶ୍ୱଚେତ୍ର ଜାତ ଏତେକ    ଲଭ ହୃଦ ସମ୍ପୁଟକ
ମଧ୍ୟରେ ସେ ମନୋରମ-ମଣି ଥୋଇବ ।

---

୧୫ଶ ପଦ—ବିଗ୍ରହ—ଦେହ । ପ୍ରଭଞ୍ଜନପଥ—ଗବାକ୍ଷ ବା ଝରକା । ପ୍ରଭଞ୍ଜନ—ବିଶେଷରେ ଭଗ୍ନ ହେବା । ହୃଦସମ୍ପୁଟକ—ହୃଦୟରୂପ ଫରୁଆ ।

---

ଚୌଦଶି ସଖୀ କହିଲ,—'ତୁମ୍ଭେ କଡ଼ଭ ଲଭିଲ ନାହିଁ' ତୁମ୍ଭେ କୋଠା ଉପରକୁ ଗଲନାହିଁ ଯେ, ଜଗତର ଚିତ୍ତଦାତା ରାମଙ୍କୁ ଗୃହିଁ କନ୍ଦର୍ପ ବଶରେ ଜଳ ଭଳି ଘର କରିବାକୁ ଗଲ । ଅମ୍ଭେମାନେ ଉଶୀରବେଣା ବାଟିକାରେ ଭ୍ରମୀ ହେବୁଁ । ବେଳ ଶିଶୁରକର ବାଧିବ ଅର୍ଥାତ୍ ଚନ୍ଦ୍ର କିରଣ ତୁମ୍ଭଙ୍କୁ କଷ୍ଟକର ଲାଗିବ ଓ କର୍ପୂର ଜଗତରୁ ଶେଷ ହେବ । ( ତୁମ୍ଭେ ରାମକୁ ଦେଖି ବିରହ ଜ୍ୱାଳାରେ ତାପିତ ହେବ । ତୁମ୍ଭଙ୍କୁ ଥଣ୍ଡା କରିବାକୁ ଯାଇ ଅମ୍ଭେ ଉଶୀର ବେଣା ବାଟି ବାଟି ଥକିତ ହେବୁ, କର୍ପୂର ଚୂର୍ଣ୍ଣ ଜଗତରୁ ଶେଷ ହୋଇଯିବ, ଚନ୍ଦ୍ର କିରଣ ବିଷପରି ବୋଧ ହେବ ) ।

୧୫ଶ ପଦ—"ତୁମ୍ଭେମାନେ ଯେଉଁ ରାମଙ୍କର ମନୋହର ରୂପ ଦେଖିବା ନିମିତ୍ତ ବ୍ୟଗ୍ର ହୋଇ ଝରକା ନିକଟକୁ ଧାଉଁଅଛ, ସେହି ରାମଚନ୍ଦ୍ର ତୁମ୍ଭମାନଙ୍କ ହୃଦୟ ରୂପ ଫରୁଆରେ ତାହାଙ୍କର ସୌନ୍ଦର୍ଯ୍ୟ ରୂପ ମଣିକି ଥୋଇ ତୁମ୍ଭଙ୍କୁ କେବଳ ଚିନ୍ତା ଦେବେ । ( ତୁମ୍ଭେମାନେ ତାହାଙ୍କର ସୌନ୍ଦର୍ଯ୍ୟ ଦେଖି ମୁଗ୍ଧ ହେବ ଓ ସବୁଦିନ ତାଙ୍କୁହିଁ ଭଜନ କରୁଥିବ, ମାତ୍ର ତାଙ୍କୁ କଦାପି ପାଇ ପାରିବ ନାହିଁ ) । ତୁମ୍ଭେ ସେହି ବିରହ ଚିନ୍ତାରେ ଅସ୍ଥିର ହେଲବେଳେ ( ପବନ ତୁମ୍ଭଙ୍କୁ ଅସ୍ଥିର କରି ଲାଗିବାରୁ ) ଏହି ଝରକାଗୁଡ଼ିକ ( ଯହିଁ ପାଖକୁ ତୁମ୍ଭେ ରାମଙ୍କୁ ଦେଖିବାପାଇଁ ଅଧୀରରେ ଦଉଡ଼ି ଯାଉଛ ) ଭଗ୍ନ ହେବେ । ସେ ରାମ ତୁମ୍ଭର କଦାପି ହୋଇ ପାରିବେ ନାହିଁ । ଦଇବ ସେଥିରୁ ତୁମ୍ଭଙ୍କୁ ବଞ୍ଚିତ କରିଅଛି । ( ତୁମ୍ଭେ ଜନ୍ମକାଳରୁ ବିବାହିତ ) ।" ସେମାନେ ( ପାତ୍ର, ମନ୍ତ୍ରୀ ଓ ସାମନ୍ତଙ୍କ ସ୍ତ୍ରୀମାନେ )

୨୨୬

ବୋଲେ ସେ ତୁମ୍ଭର କିଁ ନୋହୁବ ?
କହିନା କଲଣି ବେନ୍ଧେ ଭାଲୁ ଦଇବ । ୧୫ ।
ବିବୁଧାଳୟ ଜଗତୀ ସ୍ଥିତ ନାରୀ ସୁରାଙ୍ଗନା
ସୁମନା ମନ ମୋହନ ଛବି ଯାହାର ।
ବିଜୁଁ ବାହାରକୁ ପର ନାଗ-ନାଗରୀ ସୁନ୍ଦରୀ
ମଣି-ଭୂଷଣୀ ମଧ୍ୟରୁ ଯେତେ ବାହାର ।
ଦେଖିରେ ଭୂମାନବୀ ସର୍ବେ ।
ବିଶୁଦ୍ଧ ତ୍ରିପୁର ଲୀଳା ତହିଁ ସମ୍ଭବେ । ୧୬ ।
ବାମା କାଳ ଭାନୁ-ବାମା ପ୍ରସବ ସୂନୁ ସୁଷମା
ଲକ୍ଷିତ ହୁଅନ୍ତା ଅଜ ଅନନ ପ୍ରଭା ।

---

୧୬ଶ ପଦ—ବିବୁଧାଳୟ— ସ୍ୱର୍ଗ ବା ମେରୁ ପର୍ବତ । ନାରୀ ସୁରୀ —ଦେବ ସ୍ତ୍ରୀ ବା ଅପ୍ସରା । ସୁମନା—ଦେବତା, ପଣ୍ଡିତ । ନାଗ-ନାଗରୀ—ନାଗସ୍ତ୍ରୀ ବିଶ୍ୱଧାତ୍ରୀ—ଧରଣୀ ।

୧୭ଶ ପଦ—ବାମା କାଳେ—ରୂପ ଧରିଲା ବେଳେ । ଭାନୁ-ବାମା—ସୂର୍ଯ୍ୟ ପତ୍ନୀ, ସଜ୍ଞା ଓ ଛାୟା । ସୂନୁ—ପୁତ୍ର । ସୁଷମା— ଶୋଭା । ଅନନ—ମୁଖ । ସ୍ମର—କନ୍ଦର୍ପ । ମଧୁ—ବସନ୍ତ ।

---

କହିଲେ, "ତୁମ୍ଭର କଣ ବିରହ ଯନ୍ତ୍ରଣା ହେଉ ନାହିଁ କି ?" ସଖୀ ଉତ୍ତର ଦେଲା, "ଦଇବ ବହୁତ ଦିନୁ ଅମ୍ଭଙ୍କୁ ସେଥିରୁ ବଂଚିତ କରିଅଛି ।"(ଅମ୍ଭେ ବୁଢ଼ା ହୋଇ ଗଲୁଣି) ।

୧୬ଶ ପଦ —ମେରୁ ସଦୃଶ ଅଟ୍ଟାଳିକା ଉପରେ ଥିବା ନାରୀମାନେ ଦେବ ସ୍ତ୍ରୀ ପରି ଶୋଭା ପାଉଛନ୍ତି । ଦେବ ସ୍ତ୍ରୀ ମାନଙ୍କର ଛବି ଦେବତାମାନଙ୍କର ମନ ମୋହନ କଲାପରି ଅଟ୍ଟାଳିକା ଉପରେଥିବା ନାରୀମାନଙ୍କର ଛବି ପଣ୍ଡିତ-ମାନଙ୍କର ମନ ମୋହନ କରୁଅଛି । (ଏହିଦ୍ୱାରା ସ୍ୱର୍ଗପୁରର ସୂଚନା ଦିଆଗଲା) । ପୁରରୁ ବାହାରିବା ମଣିଭୂଷିତା ସ୍ତ୍ରୀମାନେ ନାଗ କନ୍ୟା (ନାଗକନ୍ୟାବଳକୁ ବାହାରନ୍ତି ଓ ତାଙ୍କ ମସ୍ତକରେ ମଣି ଥାଏ) ପ୍ରାୟ ଦେଖାଗଲେ । (ଏହିଦ୍ୱାରା ପାତାଳ ପୁରର ସୂଚନା ମିଳିଲା । ପ୍ରକୃତରେ ସମସ୍ତେ ମାନବୀ (ମର୍ତ୍ତ୍ୟର ସ୍ତ୍ରୀ—ଏହାଦ୍ୱାରା ମର୍ତ୍ତ୍ୟ ସୂଚିତ ହେଲା) । ସେହି ମଥିଲା ପୁରରେ ଏହି ତିନି ପୁରର ଲୀଳା(ସ୍ୱର୍ଗ ମର୍ତ୍ତ୍ୟ ପାତାଳ) ସମ୍ଭବ ହେଲା ।

୧୭ଶ ପଦ—ସୂର୍ଯ୍ୟ ପତ୍ନୀ ସଜ୍ଞା ଘୋଟକୀ ହେବା କାଳରେ ଯେଉଁ ପୁତ୍ର ପ୍ରସବ କରିଥିଲେ, ସେହି ଅଶ୍ୱିନୀ କୁମାରଙ୍କର ଶୋଭା ଏହାଙ୍କ ସହିତ (ରାମ

ବରନ ବସନ ଟରେ ନୀଳ ପୀତ ପରସ୍ପରେ
ସ୍ମର ମଧୁ ଅଲିଙ୍ଗନ ବହୁଲ ଶୋଭା ।
ବିହ୍ୱଳିତ ଦମ୍ଭ ଅନାଇ ।
ବାସ କଲା ତହିଁ ରାମ ଲକ୍ଷ୍ମଣେ ଯାଇ । ୧୭ ।
ବାଢ଼େ ଯେ ଅବଜ୍ଞା ରହି ଶଙ୍କ ପ୍ରତିମା କି ସେହି
ନିରବଲମ୍ବିନୀ ତ ଇଞ୍ଜନ ପିନ୍ଧିଲା ।
ବନିତା ସ୍ୱଭାବ ଲୁଟି ପତିବ୍ରତା କଲେ ହଠି
ସ୍ତମ୍ଭ ଟି ମହତ ସ୍ମୃତି ତାଙ୍କ ରଖିଲା ।
ହୋଇଲେ କି କାହା ଶୁଣନ୍ତି ।
ବଞ୍ଚିତ ନୋହେ ମାଦଳୀ ଚେତା ଅବୁଝ । ୧୮ ।

---

୧୮ଶ ପଦ—ବନିତା—ଅସତୀ । ମାଦଳୀ— ମଦ୍ୟପ ।

---

ଲକ୍ଷ୍ମଣଙ୍କ ସହିତ) ଉପସ୍ଥିତ ହୋଇପାରିଥାନ୍ତା, ଯଦି ଅଶ୍ୱିନୀ କୁମାରଙ୍କର ମୁଖ ଅନ୍ୟ ପ୍ରକାର ହୋଇଥାନ୍ତା, (ଅଶ୍ୱିନୀ କୁମାରଙ୍କ ମୁଖ ଘୋଡ଼ା ମୁଖ ପରି) । ଏ ଦୁହେଁ (ରାମ ଲକ୍ଷ୍ମଣ) ପରସ୍ପରରେ ନୀଳବର୍ଣ୍ଣ ଓ ପୀତବର୍ଣ୍ଣ ବସନ ପିନ୍ଧି ଅଛନ୍ତି ଅର୍ଥାତ୍ ନୀଳବର୍ଣ୍ଣ ରାମ ପୀତ ବସନ ପିନ୍ଧିଛନ୍ତି ଓ ପୀତବର୍ଣ୍ଣ (ଗୌର) ଲକ୍ଷ୍ମଣ ନୀଳ ବସନ ପିନ୍ଧି ଅଛନ୍ତି ; ତେଣୁ କନ୍ଦର୍ପ ଓ ବସନ୍ତର ଆଲିଙ୍ଗନରେ ଯେଉଁ ଶୋଭା ହେବ ସେହି ଶୋଭା ଏମାନେ ଧାରଣ କରି ଅଛନ୍ତି । ସେ ଶୋଭାକୁ ଗୃହ ଧୈର୍ଯ୍ୟ ବିଚଳିତ ହେଲା ; ତହିଁ ଯାଇ ରାମ ଲକ୍ଷ୍ମଣଙ୍କଠାରେ ବାସ କଲା ।

୧୮ଶ ପଦ—ଯେଉଁ ସ୍ତ୍ରୀ କାନ୍ତକୁ ଅବଜ୍ଞା କରି ଠିଆ ହୋଇଥିଲା, (ରାମଙ୍କ ଦର୍ଶନରେ କାମ ବିକାର ଜାତ ହେବାରୁ ସେ ନିଶ୍ଚଳ ହୋଇ ଠିଆ ହେଲା)ସେ କାନ୍ଥରେ ଚିତ୍ରିତ ହୋଇଥିବା ଚିତ୍ର ପ୍ରତିମା ପରି ଦିଶିଲା । ଯେଉଁ ସ୍ତ୍ରୀ ବିନା ଅବଲମ୍ବରେ ଠିଆ ହୋଇଥିଲା, ସେ କାଠ କଣ୍ଢେଇ ପରି ଦେଖାଗଲା । ପତିବ୍ରତା ମାନେ ଅସତୀମାନଙ୍କ ସ୍ୱଭାବକୁ ଲୁଟି କଲେ (ଅସତୀ ଯେପରି ପର ପୁରୁଷ ଦେଖିଲେ ହାବ ଭାବ ଦେଖାନ୍ତି ବା ବିଚଳିତ ହୁଅନ୍ତି,ପତିବ୍ରତାମାନେ ସେହିପରି ହେଲେ): ମାତ୍ର ଜଡ଼ତା ସେମାନଙ୍କ ମହତ୍ତ୍ୱ ରକ୍ଷାକଲା । (ସେମାନେ ଜଡ଼ ହୋଇ ଠିଆ ହୋଇ ଥିବାରୁ କିଛି କରି ପାରିଲେ ନାହିଁ, ନ ହେଲେ ରାମ ଲକ୍ଷ୍ମଣଙ୍କୁ ଧରି ଲ ପଳାଇଥାନ୍ତେ) । ମଦକଦ୍ରବ୍ୟ ଖାଇଥିବା ଲୋକଙ୍କ ପରି ପତିବ୍ରତାମାନେ କାମ ବିକାରରେ ବିହ୍ୱଳ ହୋଇ) କଣ କହୁଛନ୍ତି ବା କଣ କରୁଛନ୍ତି କିଛି ଜାଣି ପାରିଲେ ନାହିଁ ।

ବୈଦେହୀ କମଳଦେହୀ    କମଳ କେଶରେ ନାହିଁ
ସଖୀ ସହିତରେ ଥିଲେ ମଣ୍ଡି ଅଙ୍ଗାଳି ।
ବହୁ ଲୋକନେ ପ୍ରଶଂସା    କଳାଙ୍ଗେ କଲେ ଲାଳସା
ଗଉରେ ଗଉରବତା ନେତ୍ର ନ ତୋଳି ।
ବର ଦେବରେ ଯେ ମନାସେ ।
ବରଦେବର ହେବାକୁ ମାନସେ ତୋଷେ । ୧୯ ।
ବାମଲୋଚନ ସ୍ଫୁରିତା    ବାମମୋଚନ ବିଧାତା
ପାଣ୍ଡୁ ପୁଲକ ପୁଲକ କପୋଳେ ଦଶି ।
ବୃଦ୍ଧବୟଃ ସଙ୍ଗୀକାର    ଭାଙ୍ଗିବ ଏ ଧନୁବର
ମନରେ ଏମନ୍ତ କର ତା ଜାଣି ହସି ।
ବ୍ୟକତ ଏମନ୍ତ ବଚନ ।
ବିଶ୍ୱାସ ନିଃଶ୍ୱାସ ହାସ ନାଶା ଅନନ । ୨୦ ।

---

୨୦ଶ ପଦ—ବୃଦ୍ଧ ବୟଃ ସଙ୍ଗୀକାର—ବଡ଼ ସଖୀସମୂହ ।

---

୧୯ଶ ପଦ—କମଳ କେଶରଠାରୁ କେଶୀ ସୁନ୍ଦରୀ କମଳଦେହୀ ବୈଦେହୀ ସୀତା ସଖୀଙ୍କ ସଙ୍ଗରେ ଅଙ୍ଗୁଳିକାକୁ ମଣ୍ଡନ କରି ବସିଥିଲେ (ସେ ବସିଥିବାରୁ ଅଙ୍ଗୁଳିକା ସୁନ୍ଦର ଦିଶୁଥିଲା) । ସେ ରାମ ଲକ୍ଷ୍ମଣଙ୍କୁ ଦେଖି ପ୍ରଶଂସା କଲେ । 'କଳାଙ୍ଗ' ରାମଙ୍କଠାରେ ଅଭିଳାଷ କଲେ, ଗୌରଅଙ୍ଗ' ଲକ୍ଷ୍ମଣଙ୍କଠାରେ ଗୌରବ ଅନୁଭବ କରି ନେତ୍ର ପକାଇଲେ । (ସୀତା ନିଜେ ଗୌର ବର୍ଣ୍ଣ, ତେଣୁ ସେ ଶ୍ୟାମଳ ବର୍ଣ୍ଣ ପ୍ରତି ଆକୃଷ୍ଟ ହେଲେ) । ବର ଓ ଦେବର (ରାମ ଲକ୍ଷ୍ମଣଙ୍କୁ) ହେବା ପାଇଁ ମନରେ ଇଚ୍ଛା କଲେ, ସେ ମହାଦେବଙ୍କୁ ମାନସିକ କଲେ ଅଥବା ବର ଦାତାଙ୍କଠାରେ ବର ମନାସିଲେ ।

୨୦ ପଦ—(ସୀତା ମନରେ ଏପରି ବିଚାର କରିବା ସମୟରେ) ତାଙ୍କ ବାମ ଆଖି ଡେଇଁବାରୁ ବିଧାତା ମୋର ପ୍ରତିକୂଳତାକୁ ମୋଚନ କଲେ (ମୋର ସମସ୍ତ ବାଧା ଏଡ଼ି ଦେଲେ),—ଏହା ଭାବିଲେ । ସେତେବେଳେ ତାଙ୍କ ଗଣ୍ଡସ୍ଥଳରେ ରୋମୋଦ୍‌ଗମ ହେଲା । ବୟୋଜ୍ୟେଷ୍ଠ ସଖୀମାନେ ତାଙ୍କର ନେତ୍ର ଓ ଗଣ୍ଡସ୍ଥଳର ବିକାର ଦେଖି କହିଲେ, "ହେ ସୀତା ! ଏ ପୁରୁଷ ଧନୁଶ୍ରେଷ୍ଠ କି ଧନୁକୁ ଭାଙ୍ଗିବେ । ଏହା ଠିକ୍ ତୁମେ ଜାଣ ।" ଏହି କଥା ଶୁଣନ୍ତେ ସୀତାଙ୍କ ନାସିକାରୁ (ଅତି ଆନନ୍ଦ ହେତୁ) ନିଃଶ୍ୱାସ ଓ ମୁଖରୁ ହାସ୍ୟ ପ୍ରକାଶିତ ହେଲା (ଏହା ଶୁଭ ସଙ୍କେତ); ତେଣୁ ସୀତା ସଖୀଙ୍କ କଥାରେ ବିଶ୍ୱାସ କଲେ ।

ବିପ୍ରଳାପ ଥାଇ ସ୍ୱପେ ମନମାୟା ଯେ ରହସେ
ଏ ଯୋଗ ତୋର କର୍ମରେ ଅଛି ଘେନ ରେ ।
ବୋଲନ୍ତି ଏ କି ! ଜନକ ନ ସ୍ୱୀକେଲ ସତ୍ୟଗତ
ଧନୁ ସ୍ୱୟମ୍ବର କୃତ ତୋଷଦାନରେ ।
ବିଦଗ୍ଧତା ଶବ୍ଦେ ଯେଣିଲେ ।
ବୟସ୍ୟମୀଗଣ ପ୍ରମାଣ ପ୍ରମାଣ ବୋଲେ । ୨୧ ।

ବୃକୋଦର ବାସବର ଦିଗଦନ୍ତୀ ମନୋହର
ବିହାର ମଖଶାଳାରେ ପ୍ରବେଶବେଳେ ।
ବଂଶିକ-ସ୍ତ୍ରୀ ମାନସ ମଧ୍ୟରୁ ଧୈର୍ଯ୍ୟ ସାରସ
ଅସ୍ତବଶେ ଦରଶନେ ଉତ୍ପାଟି ନେଲେ ।
ବିଚିତ୍ର-କର୍ମାଙ୍କ ଆଲୋକେ ।
ବିଦେହରାଜ କୌଶିକେ ପୁଚ୍ଛିଲେ ଏ କେ ! । ୨୨ ।

---

୨୧ଶ ପଦ—ରହସେ—ବଂସ୍ଥହୋଇ । ବିପ୍ରଳାପ—ବିରୋଧୋକ୍ତି ।
୨୨ଶ ପଦ—ବୃକୋଦର—ଯମ । ବାସବ—ଇନ୍ଦ୍ର । ମଖଶାଳା—ଯଜ୍ଞଶାଳା । ବଂଶିକ—କୁଳୀନ । ସାରସ—ପଦ୍ମ ।

---

୨୧ଶ ପଦ—ସୀତାଙ୍କର ଅସ୍ତତ୍ୱ ଦେଖି ମନମାୟା ନାମକ ସଖୀ ବିରୋଧୋକ୍ତି ଥାଇ ବେଗରେ କହିଲା, "ହେ ସଖି ! ଏ ପୁରୁଷଙ୍କୁ ବିଭା ହେବା ଯୋଗ ତୋ କର୍ମରେ ଅଛି । ଏ ଯୋଗ ନାହିଁ ବୋଲି ମନରେ ଆଣ ନାହିଁ । ତୁମ୍ଭ ପିତା ଜନକଋଷି ନାରିକେଳଧନୁଶ କାହାରେ ଲଟିନ ଓ ଭାବରେ ବହୁ ରସଯୁକ୍ତ ଏ ଯେଉଁ ଧନୁ ସ୍ୱୟମ୍ବର କଲେ, ତାହା ଅପ୍ରୀତ୍ୟ ହୁଅନ୍ତା କି ? ଚତୁରା ସୀତା ତାହା ବୁଝି ପାରିଲେ ଓ ସଖୀମାନେ ତାହା ଶୁଣି ସତ୍ୟ ସତ୍ୟ ବୋଲି କହିଲେ ।

୨୨ଶ ପଦ—ଯମ ଓ ଇନ୍ଦ୍ର ଅବସ୍ଥାନ କରୁଥିବା ଦୁଇ ଦିଗର ହସ୍ତୀ ଅଞ୍ଜନ ଓ ଐରାବତ ପରି ମନୋହର ରାମ ଲକ୍ଷ୍ମଣ ଯାଗଶାଳାରେ ପ୍ରବେଶ କରି କୁଳୀନ ସ୍ତ୍ରୀମାନଙ୍କ ମାନସ ସରୋବରରୁ ଧୈର୍ଯ୍ୟ ପଦ୍ମକୁ ସ୍ପର୍ଶ ନ କରି ଦର୍ଶନ ମାତ୍ରକେ ଉପାଡ଼ି ପକାଇଲେ । ( ଅଞ୍ଜନ ଓ ଐରାବତ ଦ୍ୱାରା ମାନସରୋବରର ପଦ୍ମମାନ ଉତ୍ପାଟିତ ହେଲା ପରି ରାମ ଲକ୍ଷ୍ମଣଙ୍କୁ କେବଳ ଦେଖିଲାକ୍ଷଣି କୁଳୀନ ସ୍ତ୍ରୀମାନଙ୍କର ଧୈର୍ଯ୍ୟ ଲୋପ ପାଇଲା ) । ଅଦ୍ଭୁତକର୍ମା ରାମ ଲକ୍ଷ୍ମଣଙ୍କ ଦର୍ଶନରେ ବିଦେହ ରାଜା ଜନକ ବିଶ୍ୱାମିତ୍ରଙ୍କୁ ପଚାରିଲେ, "ଏ କିଏ ?"

ବଲଟିଲେ ମୁନି ଭୂବର ଦଶରଥ ଦେବୀସୁତ
ବନେ ତାଡ଼କା ବିନାଶି ରଖି ମୋ ଯାଗ ।
ବିନ୍ୟସ୍ତ କରି ଚରଣ ଗୌତମ-ନାରୀ ତାରଣ
ଶିବ ଚାପ ଦେଖିବାକୁ ଏବେ ଉଦ୍‌ବେଗ ।
ବୋଇଲେ ଦେଖିଲେ ଦେଖନ୍ତୁ ।
ବାଳ କୁମାରେ କି ହେବ ଏହାଙ୍କ ହେତୁ ? ୧୩ ।
ବାଳି କନିଷ୍ଠରେ ସାର ବଳ କୋଟିଏ ସିଂହର
ଭାଙ୍ଗିବା ଥାଉ ଭୃକୁଳ ଶୁଣି ଚଳିତ ।
ପକ୍ଷିରେ ଗରୁଡ଼ଶ୍ରେଷ୍ଠ ଗଗନ୍ତୁ ଯେବଣ ଉଡ଼େ
ତାଳେ ବସେ, ଭାରତୀରେ ଭଗ୍ନ ବହୁତ ।

---

୧୩ଶ ପଦ—ବଲଟିଲେ—କହିଲେ ।
୧୪ଶ ପଦ—ପକ୍ଷିରେ—ପକ୍ଷୀମାନଙ୍କ ମଧ୍ୟରେ ।

---

୧୩ଶ ପଦ—( ଜନକଙ୍କ ପ୍ରଶ୍ନ ଶୁଣି ) ବିଶ୍ୱାମିତ୍ର ମୁନି କହିଲେ, "ଏ ଦଶରଥ ରାଜାଙ୍କର ପୁତ୍ରମାନେ ବନରେ ତାଡ଼କା ରାକ୍ଷସୀକୁ ମାରି ମୋ ଯାଗରକ୍ଷା କରିଅଛନ୍ତି ଆମ୍ଭଙ୍କ ଗମନରେ ଚରଣ ବିନ୍ୟସ୍ତ କରି ଅହଲ୍ୟାଙ୍କୁ ପାଷାଣରୂପରୁ ତାରିଅଛନ୍ତି, ଏବେ ଶିବଧନୁ ଦେଖିବାକୁ ଉଦ୍‌ବେଗ ହୋଇ ଆସିଅଛନ୍ତି ।" (ବିଶ୍ୱାମିତ୍ରଙ୍କ ବଚନ ଶୁଣି) ଜନକ କହିଲେ, "ଦେଖିଲେ ଦେଖନ୍ତୁ, ଏ ବାଳକ କୁମାର ମାତ୍ର, ଏହାଙ୍କ ଦ୍ୱାରା କଣ ହେବ ?" ( ଅର୍ଥାତ୍ ଏ ଧନୁ ଭାଙ୍ଗିପାରିବେ ନାହିଁ ) ।

୧୪ଶ ପଦ—"କୋଟିସିଂହ ପରାକ୍ରମୀ କନିଷ୍ଠଙ୍କ ମଧ୍ୟରେ ଶ୍ରେଷ୍ଠ ଏପରି ଯେ ବାଳି, ସେ ଧନୁ ଭାଙ୍ଗିବା କଥା ଦୂରେ ଥାଉ, ମାତ୍ର ଧନୁ ଦେଖି ହାରିଗଲା । (ଜନକ ଏପରି କହିବାରୁ ବିଶ୍ୱାମିତ୍ର ଛଳ କରି ଉତ୍ତର ଦେଲେ, ପକ୍ଷୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ଗରୁଡ଼ ଅତି ତେଜରେ ଗଗନକୁ ଯେବେ ଉଡ଼େ, ମୁଣି ବୃନ୍ତ ତାଳରେ ବସେ, କିନ୍ତୁ ତାଳ ଭାଙ୍ଗିପାରେ ନାହିଁ । ମାତ୍ର ଭାରତୀ ପକ୍ଷୀ ତାଳରେ ବସିଲେ ତାଳ ଭାଙ୍ଗିଯାଏ ।" (ଦୈବଯୋଗରେ ଅସମ୍ଭବ ସମ୍ଭବ ହୁଏ, ବାଳି ଯିବା ଧନୁ ଦେଖି ହାରିଲେ, ମାତ୍ର ଏ ଧନୁ ଭାଙ୍ଗିପାରିବେ) । ପୁଣି ଜନକ କହିଲେ, "ପଣ୍ଡୁଖମ ପୂଜା କଲେ [ ଧନୁ ଧରି ନ ପାରି ] ।" ବିଶ୍ୱାମିତ୍ର ଉତ୍ତର

ବୋଲେ ପର୍ଶୁରାମ ତୁଳିଲେ ।
ବ୍ୟଭିଚାର ଛନ୍ଦି ଧର୍ମ ବନ୍ଧ ଟୋଇଲେ । ୨୪ ।
ବାଣାସୁର କାର୍ତ୍ତବୀର୍ଯ୍ୟ ସହସ୍ର ଭୁଜରେ ହେଳ
ଟେକି ନ ପାରିଲେ ଉଠୁଁ କଲେ ଉତ୍ତର ।
ବୃଶ୍ଚିକ କର୍କଟପର ସିନା ତାହାଙ୍କ ମାଧୁରୀ
ନାଗ ବ୍ୟତିରେକେ କେ ଅନ ଧରଣୀ ଧର ।
ବାଂଶବର ଉଦ୍ଧବା ନୋହୁ ।
ବାଳ ଅର୍ଜୁନରେ ଧରାଯାଇଛି ଯେହୁ । ୨୫ ।
ବିଘ୍ନରାଜ ମହାସେନ ଲବଣ ଆଦି ରାଜନ
ପ୍ରଭା ଦେଖାଇ ମଳିନ ଭାବ ଭଜିଲେ ।

---

୨୬ଶ ପଦ—ବିଘ୍ନରାଜ—ଗଣେଶ । ମହାସେନ—କାର୍ତ୍ତିକେୟ । ବଳ୍ମଜ—ବଲ୍ଲଅ ।

---

ଦେଲେ, "ସେ ବଡ଼ ହୋଇ ବ୍ୟଭିଚାର ହେତୁ ଛନ୍ଦିଯୁ ହୋଇଅଛନ୍ତି, (ବଡ଼ର ପୂଜା କରିବା ବିଧି—ତେଣୁ ସେ ପୂଜା କଲେ ।)

୨୫ଶ ପଦ—ତତ୍ପରେ ଜନକ କହିଲେ, "ବାଣାସୁର ଓ ସହସ୍ରାର୍ଜୁନ ସହସ୍ର ହାତରେ ଧନୁକୁ ଟେକିପାରିଲେ ନାହିଁ—ଏ କଥା ମନରେ ଭାବ ।" ତାହା ଶୁଣି ବିଶ୍ୱାମିତ୍ର ଉତ୍ତର କଲେ, "ବିଛା, କଙ୍କଡ଼ାଙ୍କପର ସିନା ତାଙ୍କର ହସ୍ତ ସଂଖ୍ୟା ବେଶୀ (ବିଛା ଓ କଙ୍କଡ଼ାଙ୍କର ସିନା ହାତ ବହୁତ, ମାତ୍ର ପରାକ୍ରମ କା କେତେ) ? ମାତ୍ର ନାଗ ବିନା ଆଉ କେହି ଧରଣୀକି ଧରିପାରେ କି ?" ଜନକ ପୁଣି କହିଲେ, "ରାବଣ" (ରାବଣ ଧନୁ ଦେଖି ହାରି ଯାଇଅଛି )। ବିଶ୍ୱାମିତ୍ର କହିଲେ, "ତା କଥା କହ ନାହିଁ, ବାଳି ଓ ସହସ୍ରାର୍ଜୁନଙ୍କ ଦ୍ୱାରା ବନ୍ଦୀ ହୋଇଥିବାରୁ ତା ବଳ ଜଣା ଯାଇଅଛି ।"

୨୬ଶ ପଦ—ଜନକ ପୁନର୍ବାର କହିଲେ, "ଗଣେଶ, କାର୍ତ୍ତିକ, ଲବଣଦୈତ୍ୟ ଆଦି ରାଜାମାନେ ପ୍ରଥମେ ତେଜ ଦେଖାଇ ପରେ ମଳିନ ହୋଇଅଛନ୍ତି, (ପ୍ରଥମରେ ତେଜ ଦେଖାଇ ଥିଲେ, ଧନୁ ଦେଖି ବ୍ୟକ୍ତ ପଡ଼ି ଯାଇଅଛନ୍ତି)।" ଏହାର ଉତ୍ତରରେ ବିଶ୍ୱାମିତ୍ର କହିଲେ, "ହେଲିଅ ପ୍ରଥମେ ଘରେ ଅନଳ ଦେଖାଇ ପରେ ଭସ୍ମ ପାଇଲେ ସେ ଅନଳ ଲିଭିଯାଏ, (ସେହିପରି ଏ

ବୀରଙ୍କ ପରାଚ୍ୟେ ତେବେ    ମୁଖରେ ଅନଳେ ଜବେ

ଦେଖାଇ ନାଶି ଶ୍ରୀରୁଚ ହେଲେ ଦୂଷିଲେ ।

ଅବୋଧ ନୁହ ହେ ଜନକ !

ହୃଷ୍ଟେ ଦେଖିବେ ଏ ଅଣାଅ ଚିନାଚ । ୨୭ ।

ଅନପନ କାଳ ନେଇ    ଉପନବଣିକ ତହିଁ

ସଭାରେ ଲୋଭା ଅନାଇ ନୃପ ସକଳ ।

ବିଦର୍ଭ, କର୍ଣ୍ଣାଟ, ଭୋଟ,    ସଉରାଷ୍ଟ୍ର, ମରହଟ୍ଟ

କୁନ୍ତଳ, କେରଳ, ଗୌଳ, ସିନ୍ଧୁ, ଉତ୍କଳ ।

ବାହ୍ଲିକ, ତୁରଷ୍କ, ନିଷେଧ ।

ବଙ୍ଗ, ଅଙ୍ଗ, କଳିଙ୍ଗ, ତ୍ରୈଲଙ୍ଗ, ମଗଧ । ୧୭ ।

ବେଦ, ଚେଦ, ମଦ୍ର, ମତ୍ସ୍ୟ,    ଦ୍ରାବିଡ, ଗନ୍ଧର, ମ୍ଲେଚ୍ଛ,

ଆବର, ମାଳବ, କଚ୍ଛ, କୁରୁ ପଞ୍ଚାଳ ।

କନାଉଜ, କନାକୁଜ,    କାଶ୍ମୀର, କାମେରୀ, କୁଞ୍ଜ,

ଗଳ, ଡାହାଲ, ଲେମଣ ପୁଣ୍ଡ୍ର, କୋଶଳ ।

ବେଲାଉଳ ଆଦ ଏ ଠିକ ।

ଅକ୍ଷେପି କହୁବା କେତେ କହେ ଜନକ । ୨୮ ।

---

ବୀରମାନେ ପ୍ରଥମେ ତେଜ ଦେଖାଇ ପରେ ଏ ଧନୁ ଦର୍ଶନରେ ସେ ତେଜରୁ ହରାଇଅଛନ୍ତି ) । ହେ ଜନକ ! ତୁମ୍ଭେ ଅବୋଧ ହୁଅ ନାହିଁ । ହରଧନୁ ଅଣାଅ, ଏ ନର୍ଭୟରେ ତାହା ଦେଖିବେ ।"

୨୭ଶ ଓ ୨୮ଶ ପଦ—ବିଶ୍ୱାମିତ୍ରଙ୍କ କଥା ଶୁଣି ଜନକ ରାମ ଲକ୍ଷ୍ମଣଙ୍କୁ ନେଇ ରାଜ ସଭାରେ ପ୍ରବେଶ କରାଇଲେ । ରାମ ଲକ୍ଷ୍ମଣଙ୍କ ଶୋଭା ଦେଖି ରାଜ ସଭାରେ ବସିଥିବା ନୃପତିମାନେ ଲୋଭିତ ହେଲେ । ( ତାଙ୍କ ଶୋଭାରୁ ଏକ ଧ୍ୟାନରେ ଗୃହିଁ ରହିଲେ ) । ଜନକ କହିଲେ,—ବିଦର୍ଭ, କର୍ଣ୍ଣାଟ, ଭୋଟ, ସୌରାଷ୍ଟ୍ର, ମରହଟ୍ଟ, କୁନ୍ତଳ, କେରଳ, ଗୌଳ ସିନ୍ଧୁ, ଉତ୍କଳ, ବାହ୍ଲିକ, ତୁରଷ୍କ, ନିଷେଧ, ବଙ୍ଗ, କଳିଙ୍ଗ, ତ୍ରୈଲଙ୍ଗ, ମଗଧ, ବେଦ, ଚେଦ, ମଦ୍ର, ମତ୍ସ୍ୟ, ଦ୍ରାବିଡ, ମ୍ଲେଚ୍ଛ, ଆବର ମାଳବ, କଚ୍ଛ, କୁରୁ, ପାଞ୍ଚାଳ, କନାଉଜ, କନାଉଜ, କାଶ୍ମୀର, କାମେରୀ, କୁଞ୍ଜଗଳ, ଡାହାଳ, ଲେମଣ, ପୁଣ୍ଡ୍ରକ, କୋଶଳ, ବେଲାଉଳ ଆଦି ଯେ ରାଜାମାନେ ମେଳ ହୋଇଅଛନ୍ତି, ତାହା ବିଶେଷ କରି କେତେ ଅବା କହିବା ?

ବିଖ୍ୟାତ ଭୂପତିମାନେ ବହୁଦିନୁ ଅଭିମାନେ
ବସି କି କାରଣେ ଧନୁ ଅଣ ନ କହ ।
ବ୍ୟାଜ ଦମ୍ଭ ଗର୍ବ ପ୍ରତେ ଏବେ ଦଶରଥ ସୁତେ
ଆସିଛନ୍ତି ଦେଖିବାକୁ ବଳାଇ ସ୍ନେହ ।
ବୋଇଲେ ଆଣିବା ସେ ଗୃହ ।
ବଦନ୍ତେ ଆଣାଅ କହେ ନୃପକଳାପ । ୨୯ ।

ବଳବନ୍ତ ଏକୁଁ ଏକ ଆଜ୍ଞାକୁ ମଲ୍ଲ ଅନେକ
ଯତ୍ନେ ଓଟାରି ଆଣିଲେ ମଞ୍ଜୁଷ କୋଟି ।
ବ୍ରହ୍ମାଣ୍ଡପାକ ଧଇଲେ ଟଳନ୍ତା ନାହିଁ ଯେ ତଳେ
ଚକ୍ର କଟ୍‌କଟ୍ ହୁଁକାର ନଭେ ପ୍ରକଟି ।
ବାକ୍‌ବୃହସ୍ପତି ମଇଥିଳର ।
ବାଣାସନ ଆସିଲା ବିଳମ୍ବ ନ କର । ୩୦ ।

---

୨୯ଶ ପଦ—'ହେ ଖ୍ୟାତନାମା ନରପତିମାନେ ! ତୁମ୍ଭେ ବହୁ ଦିନରୁ ଧନୁ ଭାଙ୍ଗିବା ଅଭିମାନରେ ବସିଅଛ । ମାତ୍ର କି ହେତୁରୁ ଧନୁକୁ ଆଣ ବୋଲି ଆମ୍ଭଙ୍କୁ କହୁ ନାହଁ ? ଏଥିରୁ ତୁମ୍ଭର ଦମ୍ଭ ଓ ଦର୍ପ କେବଳ ଛଳନା ପ୍ରାୟ ଜଣା ହେଉଛି ( ତୁମ୍ଭର ଦମ୍ଭ ଓ ଦର୍ପ ଥିଲା ପ୍ରାୟ ଜଣା ଯାଉ ନାହିଁ ) । ଏବେ ଦଶରଥ ରାଜାଙ୍କ ସୁତ ସ୍ନେହ ବଳାଇ ଧନୁ ଦେଖିବାକୁ ଆସି ଅଛନ୍ତି । ତୁମ୍ଭେମାନେ କହିଲେ ଶିବଧନୁକୁ ଆଣାଇବା ।" ଜନକ ଏହା କହନ୍ତେ, "ରାଜାମାନେ କହିଲେ ଧନୁ ଆଣାଅ ।"

୩୦ଶ ପଦ—ଜଣକୁ ଜଣ ବଳବନ୍ତ ଅଟନ୍ତି ଯେଉଁ ବୀର, ସେମାନେ ଜନକ ରାଜାଙ୍କ ଆଜ୍ଞାପାଇ, ବ୍ରହ୍ମାଣ୍ଡପାକ ଧଇଲେ ତଳ ପ୍ରମାଣେ ଟଳିବ ନାହିଁ ଏପରି ଯେ ଶିବଧନୁ, ତାକୁ ପେଡ଼ାମଧ୍ୟରେ ଯନ୍ତ୍ରରେ ଥିବା ହେତୁ ଓଟାରି ଆଣିଲେ । ସେ ପେଡ଼ାରେ ଲାଗିଥିବା ଚକର କଟ୍‌କଟ୍ ଶବ୍ଦ ଓ ମଲ୍ଲମାନଙ୍କର ହୁଁ ହୁଁ କାର ରବ ଯାଇ ଆକାଶରେ ସମ୍ଭେଇଲା । ସେ ସମୟରେ ଜନକ ବୃହସ୍ପତି କହିଲେ, ' ଧନୁ ଆସିଲା ଆଉ ବିଳମ୍ବ କର ନାହିଁ । ( ଶୀଘ୍ର ଆସି ଦେଖ ) ।"

ବଳବାନେ ଅଧିକ ତେ    ଜାଣୁ କଷଟୀ କାର୍ମୁକେ
ସମୁଳେ ହୋଇଲେ ସିନା ସୁବର୍ଣ୍ଣ ସର୍ବେ ।
ବଇଦେହିକ ଯେ ଅମ୍ଭେ    ଭୂଷଣ କର୍ମ ଅରମ୍ଭେ
କନ୍ୟାରତ୍ନ ସଙ୍ଗେ ଯୋଗ କରିବୁଁ ତେବେ ।
ବଚ ଶ୍ଲୋକେ ଗଲେ ସମସ୍ତ ।
ବ୍ୟାଘ୍ର ପତନ ଯନ୍ତ୍ରାକୁ ଗୁହିଁଲ ମତ । ୩୧ ।

ବହ୍ନିବସୁ ବଭ୍ରବସୁ    ଏକସ୍ଥାନେ ଏ କି ବସୁଁ
ଭାବି ନେଇ ବୃଷ ମୂଷ ପଛକୁ ହଟିଲେ ।

---

୩୧ଶ ପଦ—କାର୍ମୁକ—ଧନୁ । ସୁବର୍ଣ୍ଣ—ଉତ୍ତମ ଜାତ, ସୁନା । ବଇଦେହିକ—ବଣିକ, ବଦେହର ରାଜା ।

୩୨ଶ ପଦ—ବଭ୍ରବସୁ—ସୂର୍ଯ୍ୟ । ବହ୍ନିବସୁ—ଅଗ୍ନି । ବଳ—ଗର୍ତ୍ତ । ହରି—ସିଂହ । ଅହି—ସର୍ପ । ବୃଷ—ମୂଷା ଷଣ୍ଢ ।

---

୩୧ଶ ପଦ—'ତୁମ୍ଭେ ସମସ୍ତେ ଉତ୍ତମ କ୍ଷତ୍ରିୟ ଜାତ ଅଟ । ତେଣୁ ତୁମ୍ଭେ ସୁବର୍ଣ୍ଣ ହେଲ । ତୁମ୍ଭର ବଳ ସୁବର୍ଣ୍ଣର ତେଜ ହେଲା । ଅମ୍ଭେ ବଦେହରାଜ ରୂପ ବଣିକ ଧନୁ ରୂପ କଷଟୀ ପଥରରେ ତୁମ୍ଭର ବଳରୂପ ବିଶୁଦ୍ଧତାକୁ କଷି ତେଜସ୍ୱାନ୍ ହୋଇଥିବା ବୀରଙ୍କ ସହିତ କନ୍ୟା ରୂପୀରତ୍ନ ଯୋଗ କରିବୁ । [ସୁବର୍ଣ୍ଣ କଷଟି ପଥରରେ କଷି ହୋଇ ବିଶୁଦ୍ଧ ବୋଲି ଜଣା ଗଲେ, ସେଥିରେ ରତ୍ନ ଯୋଗ କରି ତାହାର ସୌନ୍ଦର୍ଯ୍ୟ ବଢ଼ାନ୍ତି । ସେହିପରି ତୁମ୍ଭେ ଶିବଧନୁ ଦ୍ୱାରା ବଳବାନ୍ ବୋଲି ନିର୍ଣ୍ଣୀତ ହେଲେ, ଅମ୍ଭେ ସୀତାଙ୍କୁ ତୁମ୍ଭଙ୍କୁ ବିବାହ ଦେଇ ତୁମ୍ଭର ମର୍ଯ୍ୟାଦା ବଢ଼ାଇବୁ ] ।' ଜନକଙ୍କର ଏ କଥାମାନ ଶୁଣି ରାଜାମାନେ ପାଖକୁ ଯାଇ ବ୍ୟାଘ୍ର ପଡିଥିବା ଯନ୍ତ୍ରାକୁ ଗୃହିଁଲା ପ୍ରାୟ ଧନୁପେଡ଼ାକୁ ଚାହିଁଲେ ।

୩୨ଶ ପଦ—ସୂର୍ଯ୍ୟ ଓ ଅଗ୍ନି ଏ କାରଣରୁ ଏକସ୍ଥଳରେ ଥିବାକୁ ଦେଖି ଅଜ୍ଞ ରାଜାମାନେ ଏପରି ମନରେ ଭାବି ନେଇ ବୃଷ ପଛକୁ ମୂଷା ବୁଲାଇଲେ [ ଧନୁକୁ ଗୃହିଁ ପାରିଲେ ନାହିଁ ] । ଗୁହାରେ ନଦା ଯାଇଥିବା ସିଂହକୁ ଦେଖି ଷଣ୍ଢ, ଗାତରେ ନଦା ଯାଇଥିବା ସର୍ପକୁ ଦେଖି ମୂଷା ଯେପରି ପଳାନ୍ତି, ସେପରି ରାଜାମାନେ ଧନୁକୁ

ବର୍ଣ୍ଣେ ନିଦ୍ରା ହରି ରୂପ ବଳେ ନିଦ୍ରା ହରି ରୂପ
ଦେଖି ଯଥା ପଳାୟିତ ତଥା ହୋଇଲେ ।
ବାସେ ଯାଇ କେତକୀ ପାଶେ ।
ବସେ ପଲ୍ଲବେ ଭୃଙ୍ଗାଳି କି ସ୍ୱଭାବୁଁ ସେ । ୩୨ ।

ବୈରାଗ୍ୟ ଅତୁଲ କୂଳେ ଭାସିଲେ ଭୂମିପକୂଳେ
ଭାଷିଲେ ଜନକ ରାମ ଶ୍ରୀରାମ ବେଗେ ।
ବଢାଇ ସୁମିତ୍ରା ବସ୍ତ ନାହିଁ ସୁମିତ୍ରାବ ସ୍ୱଚ୍ଛ
ନମେ ଧଇଲେ ବାଣ୍ଟବେ ରୂପେ ଓଳଗେ ।
ବିଶ୍ୱାମିତ୍ର ନେତ୍ରରୁ ଜାଣି ।
ବାହାରିଲେ ଶସ୍ତ୍ର ଦେଇ ଲକ୍ଷ୍ମଣ ପାଣି । ୩୩ ।

୩୩ଶ ପଦ— ବୈରାଗ୍ୟ— ବିରକ୍ତି, ବିବେକ । ଭୂମିପକୂଳେ—ରାଜା-ସମୂହ । ସୁମିତ୍ରାବ— ପ୍ରଧାନ ଶତ୍ରୁ । ସୁମିତ୍ରା—ଉତ୍ତମ ମାତ୍ର । ପାଣି—ହସ୍ତ ।

ଦେଖି ପଳାଇଲେ । ଭ୍ରମରମାନେ ବାସ ହେତୁରୁ କେତକୀ କୁସୁମର ପାଖକୁ ଯାଇ କଣ୍ଟକରେ ପକ୍ଷ ଛିଣ୍ଡି ଯିବା ଭୟ ହେତୁ ରହି ନ ପାରି ପଳାନ୍ତି, ମାତ୍ରପଲ୍ଲବରେ ଯାଇ ବସନ୍ତି ( କେତକୀରେ ବାସ ଥାଏ ତା ସଙ୍ଗେ ସଙ୍ଗେ କଣ୍ଟା ମଧ୍ୟ ଥାଏ । ଭ୍ରମର କଣ୍ଟାକୁ ଭୟ କରି ସେ ବାସ ଉପଭୋଗ କରି ପାରେ ନାହିଁ । ମାତ୍ର କଣ୍ଟକଶୂନ୍ୟ ଓ ସୁବାସ ହୀନ ପଲ୍ଲବରେ ଯାଇ ବସେ, ସେହିପରି ଭାବରୁ ରାଜାମାନେ ହେଲେ ) ।

୩୩ଶ ପଦ—ବିରକ୍ତିଜନିତ ଅତୁଳତା ରୂପ ଜଳରେ ରାଜାମାନେ ନିମଗ୍ନ ହେଲେ, ( ସୀତାଙ୍କୁ ପାଇବା ପାଇଁ ପ୍ରବଳ ଆକାଂକ୍ଷା ଥିଲେ ହେଁ ଧନୁ ଟେକିବାର ଉପାୟ ପାଇ ପାରୁ ନାହାନ୍ତି—ତେଣୁ ବିରକ୍ତ ହେଉଛନ୍ତି ) । ତତ୍ପରେ ଜନକ କହିଲେ,'ହେ ଶ୍ରୀରାମ । ତୁମ୍ଭେ ଶୀଘ୍ର ଯାଅ, [ଧନୁ ଟେକିବା ପାଇଁ ଚେଷ୍ଟା କରିବାକୁ ଯାଅ ] ।' ଏହା ଶୁଣି ଲକ୍ଷ୍ମଣ ରାମଙ୍କୁ କହିଲେ, 'ଆମ୍ଭର ଏଠାରେ ଭଲ ମିତ୍ରଲୋକ କେହି ନାହାନ୍ତି, ଶତ୍ରୁ ହିଁ ଅଛନ୍ତି । ମୁଁ ଆପଣଙ୍କ ଅଙ୍ଗକୁ ଧଇଲେ, ଧନୁକୁ ଓଳଗୁଛି ବୋଲି ସେମାନେ କହିବେ (ମୁଁ ନ ଆଣିଲେ ଧନୁ ଟେକିବ ନାହିଁ)।' ଏହି ସମୟରେ ବିଶ୍ୱାମିତ୍ର ଅକ୍ଷି ଠାରି ଦେବାରୁ ରାମଚନ୍ଦ୍ର ଲକ୍ଷ୍ମଣଙ୍କ ହସ୍ତରେ ନିଜଧନୁ ଦେଇ ବାହାର ହେଲେ ।

ବିକ୍ରମ ଗତିକି ବିଦ୍ଧ  ଶରଧା ଭୂପଙ୍କ ଗୃହଁ
କେଶରୀ ଗିରି ମଧ୍ୟରୁ ସେହି ସ୍ୱଭାବେ ।
ବିରାଜ ମୂର୍ତ୍ତି ଯେ ଧୃତ  ମଞ୍ଜୁ ମଞ୍ଜୁଷରୁ ସତ
ଧନୁ ଆକର୍ଷି ଆଣିଲେ ପନ୍ନଗ ଭାବେ ।
ବକପୁଷ୍ପ ମାଳା ମାଳିକ ।
ବନ୍ଧାଇବାକୁ ଶୃଙ୍ଗଦ୍ୱାରୁ ଟେକିଲା ଭୁଜ । ୩୪ ।
ବକ୍ତ୍ରେ ଗଲା ସଜନ୍ୟଙ୍କ  ବକ୍ତ୍ରେ ଜନନ ଜନକ
ଏହି ଗିର ଶରଭେଦ ହୃଦୟ କରେ ।
ବିଜୟୀ ସୁରତ୍ରିପୁରର  ବିଜୟୀ ଏ ତ୍ରିପୁରର
ଧରିଲା ଧରିଲା ଧନୁ ଅନାୟାସରେ ।
ବିଦ୍ରାବକୁ ଇଚ୍ଛାରେ ଭୂଲ ।
ଚପଳକେ ଅନାଇଲେ ନ ପାରି ଚଳି । ୩୫ ।

---

୩୪ଶ ପଦ—ବିକ୍ରମଗତି—ସାହସୀଙ୍କ ଗମନ । କେଶରୀ—ସିଂହ । ବିରାଜମୂର୍ତ୍ତି—ବିରାଟମୂର୍ତ୍ତି, ଗରୁଡ଼ । ମଞ୍ଜୁ—ସୁନ୍ଦର, ମନୋହର । ମଞ୍ଜୁଷ—ପେଡ଼ି । ପନ୍ନଗ—ସର୍ପ । ବକପୁଷ୍ପମାଳା—ଗଇଣଫୁଲମାଳା ।

୩୫ଶ ପଦ—ବକ୍ତ୍ର—ସାଙ୍ଗୁ । ବକ୍ତ୍ର—ମୁଖ । ତ୍ରିପୁର—ଉକ୍ତ ନାମଧାରୀ ରାକ୍ଷସ । ବିଦ୍ରାବ—ପଳାୟନ ।

---

୩୪ଶ ପଦ—ପର୍ବତ ଗୁହାରୁ ବାହାରି ସିଂହ ଯେପରି ବିକ୍ରମ ଭାବରେ ଗତି କରେ, ସେହିପରି ରାମଚନ୍ଦ୍ର ରାଜସଭାକୁ ଯାଇ ଧନୁକୁ ଦେଖିବାକୁ ଶ୍ରଦ୍ଧା କଲେ । ଦିବ୍ୟ ମୂର୍ତ୍ତି ଧରିଥିବା ରାମଚନ୍ଦ୍ର ଗରୁଡ଼ ରୂପରେ ସୁନ୍ଦର ପେଡ଼ିରୂପ ଗାତରୁ ଧନୁରୂପ ସର୍ପକୁ ଉଠାଇ ଆଣିଲେ । ( ଗରୁଡ଼ ଗାତରୁ ସର୍ପ ଉଠାଇ ଆଣିଲା-ପରି ରାମଚନ୍ଦ୍ର ପେଡ଼ିରୁ ଧନୁକୁ ଉଠାଇ ଆଣିଲେ ) । ମାଳି ଗଇଣଫୁଲ ମାଳକୁ ବନ୍ଧା ପାଇ ଶୃଙ୍ଗଦ୍ୱାରୁ ଟେକିଲା ପ୍ରାୟ ଟେକିଲେ । (ରାମଚନ୍ଦ୍ର ଧନୁକୁ ଅକ୍ଳେଶରେ ଟେକି ଧରିଲେ ) ।

୩୫ଶ ପଦ—"ତ୍ରିପୁରାସୁର ବିଜୟୀ ଶିବଙ୍କର ଧନୁକୁ ଏ ଅନାୟାସରେ ଧରିଲେ; ତେଣୁ ଏ ତ୍ରିପୁର ବିଜୟୀ ଅଟନ୍ତି"—ଏହି ବାଣୀ ଶର ପ୍ରାୟ ଜନକ ରାଜାଙ୍କ ମୁଖରୁ ଜାତ ହେଲା । ସେ ବଚନ-ଶର ରାଜାମାନଙ୍କର ସାଙ୍ଗୁ ଭେଦ କରି ହୃଦରେ ବିଦ୍ଧ ହେଲା । ସେମାନେ ଲଜ୍ଜା ପାଇଁ ପଳାଇବାକୁ ଭାବିଲେ, ମାତ୍ର ଯାଇ ନ ପାରି ତଟସ୍ଥ ହୋଇ ଅପଳକ ନେତ୍ରରେ ଚାହିଁ ରହିଲେ ।

ବସ୍ୱକାବସଙ୍ଗୀ ସୀତା ବସ୍ତ ବରଇ ଚିନ୍ତା
ଜୀବନ ଯାଉ ନୋହିଲେ ହେଲେ ଏ ବର ।
ବିମିଳିତ ନେତ୍ର ପିଠେ ମୁଦ୍ରିତ ଜଳଜ କି ଫୁଟେ
ପ୍ରମୋଦଦାୟକ ପରଭୃତଙ୍କ ସ୍ୱର ।
ବ୍ୟଳୀକତା ଜେ ବୋଲୁଥିଲ ।
ମଧୁର ସେ ଦ(ଦ୍ୟୁ)ନବନ୍ଧୁ ଦର୍ଶନେ ହେଲା । ୬୨ ।
ବୃନ୍ଦାରକ-ବୃନ୍ଦାରକେ ସେ ଯେ ପୁଚ୍ଛିଲେ ଜନକେ
ଦେବା ଶିଞ୍ଜିନୀ ଉତ୍ତମ ବୋଲି ସେ କହୁ ।

---

୬୨ଶ ପଦ—ବସ୍ୱକାବସଙ୍ଗୀ—ତପ୍ତକାଞ୍ଚନ ବର୍ଣ୍ଣା । ବସ୍ତ—ଶିତ । ଜଳଜ—ପଦ୍ମ । ପରଭୃତ—କୋକିଳ, ଭୃତ୍ୟ । ବ୍ୟଳୀକତା—ଅପ୍ରିୟକର ବାର୍ତ୍ତା । ଦ(ଦ୍ୟୁ)ନବନ୍ଧୁ—ସୂର୍ଯ୍ୟ, ରାମଚନ୍ଦ୍ର ।

୬୩ଶ ପଦ—ବୃନ୍ଦାରକ—ଦେବଶ୍ରେଷ୍ଠ । ବୃନ୍ଦାରକ—ରାଜା । ଶିଞ୍ଜିନୀ—ଧନୁର ଗୁଣ । ଅଷ୍ଟନାଗ—ଅଷ୍ଟ ଦିଗ୍‌ଗଜ, ଅଷ୍ଟକୁଳାନାଗ । ହୂଳ—ଧନୁର ଅଗ୍ରଭାଗ ।

---

୬୨ଶ ପଦ—ଉଜ୍ଜ୍ୱଳ ସ୍ୱର୍ଣ୍ଣବର୍ଣ୍ଣା ସୀତା ଚକ୍ଷୁ ବୁଜି ମହାଦେବଙ୍କୁ ଚିନ୍ତା କରି କହିଲେ, "ଏ ମୋର ବର ନୋହିଲେ ଜୀବନ ଯାଉ, ଏ ମୋର ବର ହେଲେ ଜୀବ ନ ଯାଉ ।" ଏପରି ସମୟରେ 'ଧନୁ ଧଇଲେ'—ଭୃତ୍ୟମାନଙ୍କର ଏ ଶବ୍ଦ ତାଙ୍କର ପ୍ରମୋଦଦାୟକ ହେଲା, ତେଣୁ ନିର୍ମଳ ନେତ୍ରପଦ୍ମ ବିକଶିତ ହେଲା । ( ରାତି ପାହିଲେ କୋକିଳ ସ୍ୱର ଶୁଣି ଲୋକମାନେ ଚକ୍ଷୁ ଫିଟାଇ ଉଠନ୍ତି —ଏଠାରେ ସୀତାଙ୍କର ଚିନ୍ତା ରୂପକ ରାତି ଯାଇ ଶୁଭ ଦିନର ସକାଳ ହେଲା) । ଲୋକମାନେ କହିଲେ, "କିଏ କହୁଥିଲା ଯେ ଧନୁଭଙ୍ଗ ପଣ ସୀତାଙ୍କର ଅପ୍ରିୟକର ? ସୂର୍ଯ୍ୟରୂପୀ ରାମଚନ୍ଦ୍ରଙ୍କର ଦର୍ଶନରେ ସୀତାଙ୍କ ହୃତ୍‌ପଦ୍ମ ବିକଶିତ ହେଲା । (ଅନ୍ୟାର୍ଥ—ପଦ୍ମର ମୁଦ୍ରିତ ଦୋଷ କିପରି ଗଲା ? ରାମଙ୍କୁ ଚନ୍ଦ୍ର ବୋଲି ବୋଧ ହେବାରୁ ପଦ୍ମ ମୁଦ୍ରିତ ହୋଇଥିଲା, ମାତ୍ର ଦିନବନ୍ଧୁ ଜଣା ଯିବାରୁ ଅର୍ଥାତ୍ ସୂର୍ଯ୍ୟ ରୂପେ ବୋଧ ହେବାରୁ ପଦ୍ମ ବିକଶିତ ହେଲା )।

୬୩ଶ ପଦ—(ଧନୁକୁ ପେଡିରୁ ଆଣି ଧଇଲା ପରେ) ଦେବଶ୍ରେଷ୍ଠ ରାମଚନ୍ଦ୍ର ରାଜା ଜନକଙ୍କୁ ପଚାରିଲେ, "ଧନୁରେ ଗୁଣ ଦେବି କି ?" ଜନକ କହିଲେ, "ଭଲ କଥା ( ଗୁଣ ଦିଅ )।" ସେହି ସମୟରେ ଲକ୍ଷ୍ମଣ କହିଲେ,

ଦୀର୍ଘ ଦନ୍ତ ବେଳ ଯୋଗେ          ଅଷ୍ଟନାଗେ ଅଷ୍ଟନାଗେ
ଧର ଧରଣୀକି ବୋଲେ ଲକ୍ଷ୍ମଣ ତହିଁ ।
ବିକଳତେ ପୃଥିବୀ ଭାଷିଲେ ।
ଧନୁ ଥୁଲ ପାଦପତ୍ରେ ପଶିବ ତଳେ । ୩୭ ।
ବୃଦ୍ଧାଙ୍ଗୁଳି ପରେ ପଦେ          ରାମ ରଖିଲେ ସମଦେ
ଜାଣିଲେ ତା ଅତ୍ୟନ୍ତ ଅଧୈର୍ଯ୍ୟ ହେବାର ।
କାମୁକ କି ବହେ କୂର୍ମ          ବନ୍ଧିଲା ସେ ମନୋରମ
ଗୁଣବନ୍ତ ଗୁଣ ଦଞ୍ଜ କଲେ ସତ୍ୱର ।
ବୈନାଶିକ ନାଡ଼ୀ ମୋ ହେଲା ।
ବାମେ ରହି ଅଜଗବ ବିଗୁର କଲା । ୩୮ ।
ଝଗୁଡ଼ିକଷେ ଉଠାରେ          ପ୍ରଚଣ୍ଡ ମଲ୍ଲ ହସ୍ତରେ
ଏରଣ୍ଡ ଦଣ୍ଡ ପଡିଲା ପରି ଭାଙ୍ଗିଲା ।
ବ୍ରହ୍ମାଣ୍ଡ ଭାଣ୍ଡ ପୂରିତ          ପ୍ରଳୟକାଳେ ଏକତ୍ର
ଘୂରମେଘ ଗର୍ଜିଲା ଶବଦ ଗଞ୍ଜିଲା ।

---

୩୯ଶ ପଦ—ହଗଡ଼ କଷେ—ବଳ ପୂର୍ବକ । ଏରଣ୍ଡଦଣ୍ଡ—ଜଡ଼ ଗଛର ଡାଣ୍ଡ । ବିବୁଧେ—ଦେବତାମାନେ ।

---

"ହେ ଅଷ୍ଟଦିଗର ହସ୍ତୀସବୁ, ହେ ଅଷ୍ଟକୁଳନାଗେ ! ବଳ ଓ ଧୈର୍ଯ୍ୟର ସହିତ ଧରଣୀକୁ ଧର ।" ପୃଥ୍ବୀ ବିକଳ ଭାବରେ କହିଲେ, "ପଦ ପ୍ରାକୃଷ୍ଟ ଧନୁଥୁଲ ମୋ ଉପରେ ରଖାଗଲେ, ମୁଁ ପାତାଳକୁ ପଶିଯିବି ।"

୩୮ଶ ପଦ—ପୃଥିବୀ ଅତ୍ୟନ୍ତ ଅଧୈର୍ଯ୍ୟ ହେବାର ରାମ ଜାଣିପାରି ପଦର ବୃଦ୍ଧାଙ୍ଗୁଳି ଉପରେ ଗର୍ବରେ ଧନୁଥୁଲକୁ ରଖିଲେ । କୂର୍ମ କାମୁକକୁ ବନ୍ଧନ କଲା ପ୍ରାୟ ତାହା ମନୋହର ଦେଖାଗଲା । ଗୁଣବନ୍ତ ରାମ ତତ୍ପର ହୋଇ ଧନୁରେ ଗୁଣ ଦେଲେ । ସେ ସମୟରେ ଶିବଧନୁ ରାମଙ୍କର ବାମହସ୍ତରେ ରହି ବିଗୁର କଲା, "ମୋର ବୈନାଶିକ ନାଡ଼ି ହେଲା ।" (ଏହିକ୍ଷଣି ବିନାଶ ହେବ—ଅଜଗବ କୃତ୍ତିକା ନକ୍ଷତ୍ର ଦାଶରଥି ପୂର୍ବଭଦ୍ର ପଦ; ତେଣୁ ବୈନାଶିକ ନାଡ଼ି ହେଲା )।

୩୯ଶ ପଦ—ବଳପୂର୍ବକ ଗାଢ଼ କରି ଧରି ଧନୁକୁ ଉଠାଇ ଦିଅନ୍ତେ, ପ୍ରଚଣ୍ଡ ମଲ୍ଲ ହାତରେ ଜଡ଼ଗଛ ଡାଳ ଯେପରି ଭାଙ୍ଗିଯାଏ, ସେହିପରି ସେ ଭାଙ୍ଗି-ଗଲା । ସେହି ଶବ୍ଦ ( ଧନୁ ଭଗ୍ନ ହେବା ଶବ୍ଦ ) ବ୍ରହ୍ମାଣ୍ଡରେ ପୂର୍ଣ୍ଣ ହୋଇ ପ୍ରଳୟ କାଳରେ ଘୂରମେଘ ( ଆବର୍ତ୍ତକ, ସମ୍ବର୍ତ୍ତକ, ଦ୍ରୋଣ, ପୁଷ୍କର ) ଏକତ୍ରିତ ହୋଇ ଗର୍ଜିଲେ ଯେଉଁ ଶବ୍ଦ ହୁଏ, ତାଠାରୁ ବଳିଗଲା । ଦେବତାମାନେ ମୂର୍ଚ୍ଛିତ ହେଲେ; ପରେ ଚେତାପାଇ ବିଚାର କଲେ; "ଅମୃତ ଅମରପ୍ରାଣ

ବିବୁଧେ ମୂର୍ଚ୍ଛିତ ହେବାରେ ।
ଥିଲେ ପ୍ରାଣ ଅମୃତ ଭକ୍ଷିଲା ବଳରେ । ୩୯ ।
ବସୁଧାଭୃତେ ଟଳିଲେ    ବସୁଧାଭୃତେ ଚଳିଲେ
ସେହୁ ତରଳିତ ଧାତୁ ଧାର ହେଲେଟି ।
ବଳ-ବର-ବଳୀ ବର    ଆନ କି ହୋଇବ ମୋର
ଭବେ ଶତକୋଟି ଶତକୋଟି ତ ବୃଷ୍ଟି ।
ବିଶେଷ କି ନରେ କାଳରେ ?
ଅଚେତନ ହେଲେ ଯହିଁ ନାରକୀ ନରେ । ୪୦ ।
ଅଭ୍ରଷ୍ଟ ଯେ ବ୍ରହ୍ମର୍ଷି    ଧ୍ୟାନ ରହିଁକି ବଳର
ଅଭ୍ରଷ୍ଟ ଯେ ବ୍ରହ୍ମ ସ୍ମରମୁଖୁଁ ବେଦହିଁ ।

---

୪୦ଶ ପଦ—ବସୁଧାଭୃତେ—ରାଜାମାନେ । ବସୁଧାଭୃତେ—ପର୍ବତମାନେ । ବଳବର-ବଳି—ବୀରେନ୍ଦ୍ର ବଳି । ଶତକୋଟି—ବଜ୍ର । ନାରକୀ ନରେ—ନରକ ପତିତ ଲୋକମାନେ ।

୪୧ଶ ପଦ—ଚଣ୍ଡୀ—କୁପିତା ରମଣୀ । ଘଣ—ପଟ । ଚଣ୍ଡୀ—ଦୁର୍ଗା । ଘଣ—ଶବ୍ଦ । ବିରବ—ବିଶେଷ ଶବ୍ଦ, ଭୟଙ୍କର ଶବ୍ଦ ।

---

ଏତେବେଳେ ରକ୍ଷିଲେ । ( ଅମୃତ ଖାଇଥିବାରୁ ଅମ୍ଭେ ଜୀବନରେ ରହିଗଲୁ, ନ ହେଲେ ଏ ଶବ୍ଦରେ ନିଶ୍ଚୟ ପ୍ରାଣ ହାରିଥାନ୍ତୁ ) ।

୪୦ଶ ପଦ—ସେ ଶବ୍ଦ ଶୁଣି ରାଜାମାନେ ଟଳି ପଡିଲେ, ପର୍ବତ ସବୁ କମ୍ପିତ ହେଲେ । ତହିଁରୁ ତରଳ ଗୈରିକ ଧାତୁ ଧାର ଛଳରେ ପ୍ରବାହିତ ହେଲା । ବଳଶ୍ରେଷ୍ଠ ଇନ୍ଦ୍ର ଭାବିଲେ, 'ଶତକୋଟି ବଜ୍ର ଏତେବେଳକେ ବୃଷ୍ଟି ହେଲା ପରି; ମୋହର (ଚିରଂଜୀବୀ ହେବା ) ବିଧି ଅନ୍ୟଥା ହେବ କି ? ( ମୁଁ ବର୍ତ୍ତିମାନ ବିନାଶ ହେବି, ଏହି ଅଶଙ୍କା ହେଲା,—ଏହି ଶବ୍ଦ ସ୍ୱର୍ଗ ଓ ପାତାଳ ଭେଦ କରିବାର ସୂଚନା ଦିଅଇଛି)' ସେଉଁଠାରେ ନରକରେ ଥିବା ପାପୀମାନେ ଅଚେତନ ହୋଇଗଲେ, ସେ ଶବ୍ଦରେ ନର କିନ୍ନରମାନେ ଅଚେତନ ହେବାରେ ବିଚିତ୍ର କା'ଣ ଅଛି ।

୪୧ଶ ପଦ—ସେ ଶବ୍ଦରେ ବ୍ରହ୍ମଋଷିମାନଙ୍କର ଧ୍ୟାନ ଭଙ୍ଗ ହେଲା; ସେ କଥା କା'ଣ ବର୍ଣ୍ଣନା କରିବା । ବ୍ରହ୍ମାଙ୍କ ଚାରି ମୁଖରୁ ବେଦ ସୁଦ୍ଧା ବିଭ୍ରଷ୍ଟ

ବିଖଣ୍ଡନ ଚଣ୍ଡିମାନ    କ୍ଷଣରେ ସ୍ନେହୀ ନ ସେନ
ବିଖଣ୍ଡନ ଚଣ୍ଡୀମାନ କ୍ଷଣରେ ସ୍ନେହୀ ।
ବାହାରନ୍ତେ ବ୍ରହ୍ମାଣ୍ଡ ଫୁଟି
ବିରବ ସମସ୍ତଙ୍କର ଜ୍ଞାନ ପ୍ରକଟି । ୪୧ ।
ବୀରେଶ୍ୱର କରି ପୂଜା    କଲେ ସେ ମିଥିଳା ରାଜା
ବସାଇ ରଘୂତ୍ତମଙ୍କୁ ସିଂହାସନରେ ।
ବିହାୟସେ ଦେବେ ଅସେ    ରାମ ଦର୍ଶନ ଲାଳସେ
ଶବ୍ଦଶୁଣି ରାବଣ ମିଳିଲା ସେଠାରେ ।
ବୀର ସେ ବାହୁଡ଼େ ବିରସେ ।
କଲ୍ୟାଣ ପଦେ ଛାନ୍ଦ ଉପେନ୍ଦ୍ର ଭାଷେ । ୪୨ ।



---

ହୋଇଗଲା (ବ୍ରହ୍ମା ବେଦପାଠ କରି ପାରିଲେ ନାହିଁ) । ଯୋଷିତ ସ୍ତ୍ରୀର ମାନ ଖଣ୍ଡନ ହେବାରୁ ସେ ନାୟକଠାରେ ସ୍ନେହ କଲାଇଲେ—ଏ ବାକ୍ୟ ବଡ଼ କଥା; ଉଦ୍ୟରେ ପାର୍ବତୀଙ୍କର ମାନ ଖଣ୍ଡନ ହୋଇ ଯିବାରୁ ସେ ମହାଦେବଙ୍କଠାରେ ସ୍ନେହଯୁକ୍ତ ହେଲେ । ସେ ଶବ୍ଦ ବ୍ରହ୍ମାଣ୍ଡ ଫୁଟି ବାହାରନ୍ତେ ସମସ୍ତଙ୍କର ଜ୍ଞାନଲାଭ ହେଲା ।

୪୨ଶ ପଦ — ( ଧନୁର୍ଭଙ୍ଗ କରିବାରୁ ) ମିଥିଳାର ରାଜା ରାମଚନ୍ଦ୍ରଙ୍କୁ ସିଂହାସନରେ ବସାଇ ବୀରଶ୍ରେଷ୍ଠ ବୋଲି ପୂଜାକଲେ । ସେହି ସମୟରେ ରାମଚନ୍ଦ୍ରଙ୍କ ଦର୍ଶନ ଆଶାରେ ଦେବତାମାନେ ଆକାଶମାର୍ଗରେ ଆସିଲେ । ଧନୁର୍ଭଙ୍ଗ ଶବ୍ଦ ଶୁଣି ରାବଣ ସେଠାରେ ମିଳିଲା, ମାତ୍ର (ରାମଚନ୍ଦ୍ର ଧନୁ ଭଙ୍ଗିବାର ଶୁଣି) ସେ ବୀର ବିରସମନରେ ଫେରିଗଲା । ଏ ଛାନ୍ଦକୁ କଲ୍ୟାଣ ପଦରେ ଉପେନ୍ଦ୍ର କହିଲେ ।



## ଦଶମ ଛାନ୍ଦ

### ରାଗ-ରସିକୁଲ୍ୟା

ବିଭୂଷଣ ପୁଷ୍ପେ ଯା କାନ୍ତି ଜାଣ । ବିଭୂଷଣ କରି କନ୍ୟାକୁ ଆଣ ।
ବାରଣଶିରେ ପଦ ଦେଇ ଆସୁ । ଚରଣ କରି ରାମ ମନ ତୋଷୁ ସେ ।
ବୋଲି ଦେଲେ କଉଶିକ ଯେ ।
ବୋଲ ଦେଲା ପ୍ରାୟେ ଗୋଲ ଚନ୍ଦନକୁ ହୋଇଲେ ରଘୁବଂଶିକ ଯେ ॥
ବିଧାନ ହୋଇଛି ଯା ନାମ ସୀତା । ବର୍ଣ୍ଣନେ ଶୋଭା ଅତି ମଧୁରତା ।
ବୁଡ଼ ସେତ ଅଙ୍ଗ ହେବ ପବିତ୍ର । ବିଶେଷେ ଅର୍ପି ଦେଇ ହୃଦ କ୍ଷେତ୍ର
ବୁଣିଲଣି ସ୍ନେହ-ବୀଜ ଯେ ।
ବିସ୍ମରୁଁ ଏମନ୍ତ ଜନକ ସମ୍ମତ ଶୁଣିଲେ ସଖୀ ସମାଜ ଯେ । ୨ ।

---

୧ମ ପଦ—ଭୂଷଣପୁଷ୍ପ—ଭୂଷଣପଟ୍ଟ ଗଛର ଫୁଲ । ବିଭୂଷଣ କରି—ବିଶେଷରେ ମଣ୍ଡନ କରି । ବାରଣ—ବ୍ୟାଘାତ ଅଥ ହସ୍ତୀ ବାରଣଶିର—ଗଣେଶ । କଉଶିକ—ବିଶ୍ୱାମିତ୍ର ।

୨ୟ ପଦ—ସୀତା—ସୀତାଦେବୀ, କନ୍ଦ ବା ନବାତ, ସ୍ୱର୍ଗଙ୍ଗାର ଶାଖା-ନଦୀ ବିଶେଷ, ଲଙ୍ଗଳ ପଦ୍ଧତି ।

---

## ଦଶମ ଛାନ୍ଦ

୧ମ ପଦ—"ଯେଉଁ ସୀତାଙ୍କ କାନ୍ତି ଛଣ ପୁଷ୍ପର କାନ୍ତି ପରି, ସେହି କନ୍ୟାଙ୍କୁ ବିଶେଷ ଭାବରେ ମଣ୍ଡନ କରି ଆଣ । ଅଶୁଭ ବିନାଶ ପାଇଁ ଗଣେଶଙ୍କ ପଦାର୍ଥମାନ ଅର୍ପଣ କରି (ବିଘ୍ନ ବିନାଶ ପାଇଁ ପ୍ରତ୍ୟେକ ଶୁଭ କାର୍ଯ୍ୟରେ ଆଗ ଗଣେଶଙ୍କର ପୂଜା କରାଯାଏ ) ସେ ଆସୁ ଓ କ୍ରମଣ କରି ରାମଚନ୍ଦ୍ରଙ୍କ ମନକୁ ତୋଷ କରୁ ।" ବିଶ୍ୱାମିତ୍ର ଏହି କଥା ଜନକଙ୍କୁ କହନ୍ତେ, ରାମଚନ୍ଦ୍ର ଚନ୍ଦନକୁ ଘୋରି ଦେହରେ ବୋଳିଲା ପ୍ରାୟ ମନେ କଲେ । (ଚନ୍ଦନ ଦେହରେ ବୋଳିଲେ ମନ ଖୁସି ହୋଇ ଯାଏ, ସେହିପରି ବିଶ୍ୱାମିତ୍ରଙ୍କ ବାକ୍ୟ ରାମଙ୍କ ମନକୁ ଆନନ୍ଦନ କଲା ।

୨ୟ ପଦ—ରାମଚନ୍ଦ୍ର ମନରେ ଭାବିଲେ, ' ଯାହାର ନାମ ବିଧାନରେ ସୀତା ହୋଇଅଛି, ତାହାର ଶୋଭା ବର୍ଣ୍ଣନରେ ଅତ୍ୟନ୍ତ ସୁନ୍ଦର ଅଟେ । (ସୀତା=ଶର୍କରା, ଶର୍କରା ଖୁବ୍ ମଧୁର, ସୀତାଙ୍କ ନାମ ସେହିପରି ମଧୁର ) । ଯେ ଗଙ୍ଗାରେ ବୁଡ଼େ ସେ ପବିତ୍ର ହୁଏ, ମୋର ନେତ୍ର ସୀତାଙ୍କ ଶୋଭା ଦର୍ଶନ କରି ପବିତ୍ର ହେବ । ବିଶେଷରେ ମୋ ହୃଦୟରୂପ କ୍ଷେତ୍ରକୁ ସେ (ସୀତା—ଲଙ୍ଗଳ ଅଗ ) କର୍ଷଣ କରି ସ୍ନେହ ବୀଜ ବୁଣିଲଣି"। ରାମଚନ୍ଦ୍ର ଏହା ବିଚାର କରୁଥିବେଳେ ଜନକ ବିଶ୍ୱାମିତ୍ରଙ୍କ କଥା ଶୁଣି ସମ୍ମତି ଦେବାରୁ ସୀତାଙ୍କ ସଖୀମାନେ ଶୁଣି ପାରିଲେ ।

ବେଶକାରୀ ତାଙ୍କୁ ପୀଠେ ବସାଇ । ବେଶ କରଙ୍ଗଲେ ଚଉ ରସାଇ ।
ବିମ୍ବ ଦେଖାଇଲେ ସମ୍ମୁଖରେ କେହୁ । ବିମ୍ବାଧରୀ ଆଡମ୍ବରକୁ ବହୁ ସେ ।
ବିବନ୍ଧ କଲେ କୁନ୍ତଳ ଯେ ।
ବିଜନ ମଣି ନୀଳମଣି ପ୍ରଭାଭ୍ର ଊର୍ଦ୍ଧ୍ୱ ପ୍ରକାଶିତ ତଳ ଯେ । ୩ ।
ବିଲେପି ଅଳ୍ପ ତଇଲ ଶାମଲ । ବାରଣଦନ୍ତ ପ୍ରସାଧନୀ ଚାଳ ।
ବିଭାବସୁଜା କଲ୍ଲୋଳରେ ଭାସେ । ବିକଶି ଅସିତ କୁମୁଦ ବସେ ସେ ।
ବାନ୍ଧିଲେ ଚୂଡ଼ା ଯତନେ ଯେ ।
ବନ୍ଦୀ ହୋଇଲ ମର୍କତ କୁବେଣୀରେ ବନୀ ହେବେ ମନ-ମୀନେ ଯେ ।୪।
ବହୁଳ ମଥାମଣି ମାଣିକ୍ୟର । ବିଭାଗ ସୀମନ୍ତ ସିନ୍ଦୂରଧାର ।
ବନ୍ଧବସ୍ତ୍ରେ ଭଉ ପାଟ ସୂତ୍ରରେ । ବନ୍ଧୁଜୀବ ଗଲ ମେନ ହସ୍ତରେ ସେ ।

---

୩ୟ ପଦ—ପୀଠ—ପୀଢ଼ା ବା ଆସନ । ବିମ୍ବ—ଦର୍ପଣ । କୁନ୍ତଳ—କେଶ ।

୪ର୍ଥ ପଦ—ବାରଣଦନ୍ତ—ହସ୍ତୀଦନ୍ତ । ପ୍ରସାଧନୀ—ପାନିଆ । ବିଭାବସୁଜା—ଯମୁନା । ମର୍କତ କୁବେଣୀ—ମର୍କତମଣି ନିର୍ମିତ ଖାଲୋଇ ।

---

୩ୟ ପଦ—(ସୀତାଙ୍କୁ ବେଶ କରିବା ନିମିତ୍ତ ସଖୀମାନେ ବେଶକାରିଣୀମାନଙ୍କୁ ଡାକି ସୀତାଙ୍କୁ ଆସନରେ ବସାଇ, ତାହାଙ୍କ ଚଉକୁ ରସାଇ ବେଶ କଲେ । କେହୁ ସଖୀ ତାଙ୍କ ସମ୍ମୁଖରେ ଦର୍ପଣ ଦେଖାଇଲେ । ସେହି ଦର୍ପଣ ସୀତାଙ୍କ ପ୍ରତିବିମ୍ବ ଧାରଣ କରି କେଡ଼େ ସୁନ୍ଦର ଦିଶିଲା । ତତ୍ପରେ କେଶକୁ ଫିଟାଇଲେ । କେଶ ଫିଟି ପୃଷ୍ଠରେ ପଡ଼ି ତଳକୁ ଲମ୍ବିବାରୁ ଜଣାଗଲା, ନୀଳକାନ୍ତ ମଣିର ପ୍ରଭା ଉପରୁ ତଳକୁ ଲମ୍ବିଅଛି କି ? (ନୀଳକାନ୍ତ ମଣିର ପ୍ରଭା ତଳୁ ଉପରକୁ ଉଠିଥାଏ, ମାତ୍ର ଏ କେଶ ନୀଳକାନ୍ତ ମଣି ଉପରୁ ତଳକୁ ଆସିଛି ) ।

୪ର୍ଥ ପଦ - ବେଶକାରିଣୀମାନେ କେଶରେ ଅଳ୍ପ ତେଲ ଲଗାଇ ଶାଉଁଳି ଦେଲେ । ତତ୍ପରେ ହସ୍ତୀଦନ୍ତ ପାନିଆରେ କୁଣ୍ଡାଇ ଦେଲେ । ପାନିଆକୁ ଚଳାଉଥିବାବେଳେ ଜଣାଗଲା, ଯମୁନାର ତରଙ୍ଗରେ ବିକାଶୋନ୍ମୁଖ କୁମୁଦ ଭାସୁଛି କି ? ( ଯମୁନାର ଜଳ ଗାଢ କୃଷ୍ଣବର୍ଣ୍ଣ, କେଶ ଗାଢ଼ କୃଷ୍ଣ ବର୍ଣ୍ଣ ଓ ଢେଉ ପର କୁଞ୍ଚିତ, ତା ମଧ୍ୟରେ କୁମୁଦପରି ଶୁଭ୍ର ଓ ସୁନ୍ଦର ପାନିଆ ଚଳିତ ହେଉ ଥାଏ )। ତାହାପରେ ଯତ୍ନ ପୂର୍ବକ ଚୂଡ଼ା ବାନ୍ଧିଲେ । ସେ ଚୂଡ଼ା ରୂପ ମର୍କତମଣିର ଖାଲୋଇରେ ଦର୍ଶକଙ୍କ ମନ ମୀନ ବନ୍ଦୀ ହେବେ ।

୫ମ ପଦ—ତତ୍ପରେ ସୂକ୍ଷ୍ମାପର ସିନ୍ଦୂର ଗାର ଦେଲେ ଓ ତୁଳନା ରହିତ ମାଣିକ୍ୟର ମଥାମଣି ଦେଇ ପାଟ ସୂତାରେ ଚୂଡ଼ା ମୂଳକୁ ବାନ୍ଧିଦେଲେ ।

ବଧୂବଶେ କବା ପଡ଼ ଯେ ।
ବକୁଳ ଗର୍ଭିକ ସୁଧା ଉଦ୍‌ଗାରୁଛି ଭୟରୁ ନ ଦେଇ ଗ୍ରାହ ଯେ । ୫ ।
ବଭୂଷି କଅପଟୀ ମୋତିଜାଲି । ଛପିଲେ ତମାଲର କବା ଝଲି ।
ବନ୍ଧନ ବୃତ ପାଶ ଜାଲ ଦୁଇ । ବଶିଖ ଝରକାଠି କି ଦେଖାଇ ସେ
ବକ୍ର ଚଉଁର ହି ଧନୁ ଯେ ।
ବଧୂର ଧୈର୍ଯ୍ୟ-ମୃଗକୁ ବାନ୍ଧିବାକୁ ଏଠାରେ କରେ ଅତନୁ ଯେ । ୬ ।
ବବଧ କୁସୁମମାଳା ଖଞ୍ଜନ । ବ୍ୟୋମେ ଇନ୍ଦ୍ରଧନୁ ପ୍ରଭା ଗଞ୍ଜନ ।
ବନ୍ଧୁ ଚନ୍ଦ୍ର ଝୁମ୍ପି ଝିଲମିଲକା । ବଲ୍ଲବଶ୍ରୀ-ପ୍ରାନ୍ତ ସ୍ୱତ ପଡ଼ିକା ସେ ।
ବେଳ ସପ୍ତଋଷି ଶଣୀ ଯେ ।
ବମୋହିତ କରେ ମନ ଏକାବେଳେ ପଡ଼ିଲା ପଶ୍ଚିମେ ଖସି ଯେ । ୭ ।

---

୫ମ ପଦ—ବକୁଳ—ଅତୁଲ୍ୟ । ସୀମନ୍ତ—ମସ୍ତକର ମଧ୍ୟରେଖା, ସୂନ୍ଥା । ବଧୂନ୍ତୁଦ—ରାହୁ । ମିହ—ସୂର୍ଯ୍ୟ ।

୬ଷ୍ଠ ପଦ—କଅପଟୀ ଓ ମୋତି ଜାଲି—ମସ୍ତକ ଭୂଷଣ ବଶେଷ । ବଶିଖ—ଶର । ବକ୍ର ଚଉଁରୀ—ଶିରୋଭୂଷା । ଅତନୁ—କନ୍ଦର୍ପ ।

---

ତା ଦେଖି ମନେ ହେଲା ସୂର୍ଯ୍ୟଙ୍କ କବଳରେ ରାହୁର ଗଳା ବେକକଟା ପଡ଼ିଗଲା କି ? ତେଣୁ ସେ ଭୟ ହେତୁ ଗ୍ରାହ ନ ଦେବାକୁ କେଶ ମଧ୍ୟରେ ଥିବା ବକୁଳମାଳ ରୂପ ଅମୃତକୁ ବାନ୍ତି କରୁଅଛି । (ରାହୁ କଳା, କେଶ ଜୁଡ଼ା କଳା, ସୂର୍ଯ୍ୟ ଲାଲ ଓ ପାଟ ଡୋର ଲାଲ । ପାଟ ଡୋର ରୂପ ସୂର୍ଯ୍ୟ ରାହୁ ରୂପ ଜୁଡ଼ାକୁ କବଳ କରିବାରୁ ସେ ରାହୁଜୁଡ଼ା ବକୁଳଫୁଲ ମାଳ ରୂପ ଅମୃତ ବାନ୍ତି କରି ପକାଇଲା )

୬ଷ୍ଠ ପଦ—ତତ୍ପରେ ସ୍ୱର୍ଣ୍ଣ କଅପଟୀ ଓ ମୁକ୍ତାଜାଲି ନାମକ ଅଳଙ୍କାରକୁ ଭୂଷିତ କଲେ । ( ସେଥିରେ ଏହି ଉତ୍ପ୍ରେକ୍ଷା ହେଲା ) କନ୍ଦର୍ପ ସେ କେଶରୂପ ତମାଲ ବନରେ ଧୈର୍ଯ୍ୟ ରୂପ ମୃଗକୁ ଉପରୋକ୍ତ ଅଳଙ୍କାର ଦ୍ୱୟ ସଦୃଶ ପାଶ ଜାଲରେ ବାନ୍ଧି ବକ୍ର ଚଉଁରୀରୂପ ଧନୁରେ ଝରକାଠି ରୂପ ଶର ଯୋଡ଼ି ତାକୁ ଏଠାରେ ବଧିବା ପାଇଁ ଏପରି କରିଅଛି କି ?

୭ମ ପଦ—ତାହାପରେ ନାନାରଙ୍ଗର କୁସୁମଦ୍ୱାରା ନିର୍ମିତ ମାଳମାନଙ୍କୁ ଖଞ୍ଜିଲେ । ସେହି ଶୋଭା ଆକାଶରେ ପଡ଼ିଥିବା ଇନ୍ଦ୍ରଧନୁର ଶୋଭାକୁ ଖର୍ବ କଲା । ତହିଁ ଚନ୍ଦ୍ର ଝୁମ୍ପି ଓ ଝିଲମିଲି ମାଳୀ ଦିଅନ୍ତେ, ତାହା କୁଞ୍ଚିତ କେଶର ଶେଷ, ଜଗରେ ପଡ଼ି କଣା ଅବସାନରେ ସପ୍ତର୍ଷି ଓ ଚନ୍ଦ୍ର ହୁଡ଼େ ଯାଇ ଏକାବେଳକେ ପଡ଼ିଲାପରି ମନକୁ ବଶେଷ ଭାବରେ ମୋହିତ କଲା । ( କେଶ ରୂପ ଅନ୍ଧକାରର ଶେଷ ଭାଗରେ ଚନ୍ଦ୍ର ଝୁମ୍ପି ରୂପ ଚନ୍ଦ୍ର ଓ ଝିଲମିଲି ମାଳୀ ରୂପ ସପ୍ତର୍ଷି—ମଣ୍ଡଳାକାର ସପ୍ତଋଷି—ଉଜ୍ଜ୍ୱଳ ବର୍ଣ୍ଣରେ ଉଦିତ ହେଲେ କି ? )

ବେଣୀଙ୍କ ଶ୍ରବଣେ ସଖୀ ଖଞ୍ଜିଲେ । ବଜ୍ରେ ବ୍ୟାକୁଳ ଅଗ୍ନି ଜାତ କଲେ ॥
ଝଟିତ ଫୁଲ ତହିଁ ସ୍ଫୁଟ କରି । ବାଳୀକି ଭଜ ବୋଲି ବାଳୀ ଠାରେ ସେ
କନ୍ଦଅ ଚକ୍ର ଉପର ଯେ ।
କଚ୍ଛେଦ ବୁଡ଼ାଇଦେବ ଯୋଗୀ ଯୋଗ ଯନ୍ତ୍ରିତ ତୁଲ ପ୍ରକାର ଯେ । ୮ ।
ବାଧାଯୁକ୍ତ ଶଙ୍କ ଲଲାଟପଟରେ । କର୍ଣ୍ଣକ ଛଳେ କସ୍ତୁରୀ ସିନ୍ଦୂରେ ।
ବିଶ୍ୱକୁ ତଳରେ କରିବ ବଶ । ଝଟିତ ଏ ଯୋଗ୍ୟ ତିଳକ ଭାଷ ସେ ।
ଦେଖି ହୀର ଅବତଂସ ଯେ ।
ବର୍ଣ୍ଣି ଅକ୍ଷମ ମୂକ ହେବା ଗୁରୁ କବି ସେହି ଶଙ୍କର ଯଶ ଯେ । ୯ ।
ବୟସୀ ମାଣିକ୍ୟ ଗୁଣା ମୁକୁତା । ବେଣୀପୁଟେ ଦେଇଁ ନାସା ଶୋଭିତା
ବଦନକୁ ଚାହିଁ ଚନ୍ଦ୍ରକୁ ଚାହିଁ । ବିମଳ ଏହି ତ ସମଳ ସେହି ଯେ ।

---

୧୦ମ ପଦ—ବ୍ୟଞ୍ଜଗୃହୀ—କୁଳଟା ସ୍ତ୍ରୀ । ଅରଦ୍ରା—ଦ୍ରାବୀଭୂତା, ନୟନ ବିଶେଷ ।

---

୮ମ ପଦ—ତତ୍‌ପରେ ସଖୀମାନେ ସୀତାଙ୍କ ଶ୍ରବଣରେ ମଲ୍ଲୀକଢ଼ି ଖଞ୍ଜିଲେ । ସେହି ମଲ୍ଲୀକଢ଼ି ବଜ୍ରଠାରେ ବ୍ୟାକୁଳତା ରୂପ ଅଗ୍ନି ଜାତ କରାଇଲା । ( ବଜ୍ରର ଶୋଭା ସେ ଶୋଭା ସହିତ ସମାନ ନ ହେବାରୁ ବଜ୍ର ସନ୍ତାପାଗ୍ନିରେ ଦଗ୍ଧ ହେଲା ) । ତଦନନ୍ତର କଢ଼ି ଫୁଟିଲେ ସେ ଫୁଲ ହୁଏ—ଏହା ଜଣାଇବା ପାଇଁ, ସଖୀମାନେ ଯେ କର୍ଣ୍ଣଫୁଲ ଖଞ୍ଜିଲେ ତା ଉଚିତ ହେଲା । ତହିଁ ପରେ ବାଳିଗୁଣା ଦେଲେ ନାହିଁ ଯେ, ଏ ବାଳାକୁ ଭଜ ଏହି ସଙ୍କେତ ଦେଲେ । ତଦନନ୍ତର କନ୍ଦଅକୁ କର୍ଣ୍ଣର ତଳଭାଗରେ ଦେଲେ । ସେ କନ୍ଦଅ ଚକ୍ର ପରି ଯୋଗୀମାନଙ୍କର ଯୋଗକୁ ଛେଦନ କରି 'ଚକ୍ର' ପାଣିଭଉଁରୀ ପରି ସେମାନଙ୍କ ମନକୁ ବୁଡ଼ାଇ ଦେବ କି ?

୯ମ ପଦ—ସଖୀମାନେ ସୀତାଙ୍କ ଲଲାଟପଟରେ କନକ କସ୍ତୁରୀ ଓ ସିନ୍ଦୂର ଚିତା ଦେଲେ । ସେହି ଚିତା ସଂସାରକୁ ତଳମାନଙ୍କେ ବଶ କରିବ, ସେହି ହେତୁରୁ ସେ ତିଳକ ନାମ ବହନ କରୁଛି । ସୀତାଙ୍କ କର୍ଣ୍ଣରେ ଥିବା ହୀରକଯୁକ୍ତ କର୍ଣ୍ଣଭୂଷଣ ଦ୍ୱୟ ଦେଖିଲେ ମନେହୁଏ, ବୃହସ୍ପତି ଓ ଶୁକ୍ର ସେ ତିଳକ ଶଙ୍କର ଶୋଭାକୁ ବର୍ଣ୍ଣନା କରିବାକୁ ଅକ୍ଷମ ( ବର୍ଣ୍ଣନା କରି ନ ପାରି ) ମୂକ ହେଲେ କି ? ( ମୂକ ହୋଇ କର୍ଣ୍ଣର ଦୁଇପାଖରେ କର୍ଣ୍ଣଭୂଷଣ ରୂପେ ରହିଲେ ) ।

୧୦ମ ପଦ—ସମବୟସୀ ସଖୀମାନେ ମାଣିକ୍ୟର ଗୁଣା, ମୁକ୍ତାର ନଥ, ନାକଚଣା ନାସାର ବେଣୀ ପୁଡ଼ାରେ ଦେବାକୁ ନାହିଁବା ସୁନ୍ଦର ଦିଶିଲ । ସୀତାଙ୍କ

ବଂଭୂଷା ହେଲେ ପର ସେ ।
ବିଧୁରେ ଅଚନ୍ଦ୍ରା-ଶବ୍ଦରେ ଅରଦ୍ରା ବେହୁଣୀ ଏ ବେନି ଚାରୁ ଯେ ।୧୦।
ବଲ୍ଲଭ ରଥେ ଯା କେତୁ ମକର । ବଲ୍ଲଭୀ ରଥେ ତା ମକରୀକର ।
ବିବେକୀ ସଙ୍ଗୀ ସୌନ୍ଦର୍ଯ୍ୟେ ଗୋଳେ । ବଳେ ଛଡ଼ାଇ ଦେଖାଇ କପୋଳେ ସେ
ଇନ୍ଦୁ ମୃଗମଦରେ ଯେ ।
ବିନ୍ଦୁ କେ ଚିବୁକେ ମଧୁମକ୍ଷିକା ଏ ସ୍ଖଳିତ ସଙ୍ଗ ଭଙ୍ଗରେ ଯେ । ୧୧ ।
ବଡ଼ିଶ ସାରଣୀ ଲକ୍ଷ ସେ ନେତ୍ର । ଚଳମିତ କଲେ ଅଞ୍ଜନସୂତ୍ର ।
ବାହାର ପଦ୍ମପେଡ଼ାରୁ ପଚାର । ବଳ-ଶ୍ରୋତେ କି ଦମ୍ଭଦଂଶ ପଡ଼ୁ ସେ

---

୧୧ଶ ପଦ—ବଲ୍ଲଭ—ପ୍ରିୟ ବା କନ୍ଦର୍ପ । ବଲ୍ଲଭୀ—ପ୍ରିୟା ବା ପତ୍ନୀ । ମୃଗମଦ—କସ୍ତୁରୀ ।

---

ମୁଖରୁ ଓ ଚନ୍ଦ୍ରରୁ ଗୃହୀଁଲେ ଧାରଣା ହୁଏ, ସୀତାଙ୍କ ମୁଖ ନିଷ୍କଳଙ୍କ; ମାତ୍ର ଚନ୍ଦ୍ର କଳଙ୍କଯୁକ୍ତ । ତେଣୁ ଅଦ୍ରା ଓ ବେହୁଣୀ ଏ ଚାରୁ ହୁହେଁ ଅଦ୍ର ଶବ୍ଦ ହୋଇ ବଂଶଭୂଷଣୀ ହେଲେ ପର । (ଅଦ୍ରା ଓ ବେହୁଣୀ ଚନ୍ଦ୍ରଙ୍କୁ ସକଳଙ୍କ ଦେଖି ତାଙ୍କୁ ତ୍ୟାଗ କରି ସୀତାଙ୍କ ନିଷ୍କଳଙ୍କ ବଦନରେ ଶୋଭିତ ହୋଇ ବଂଶଭୂଷଣୀ ହେଲେ । ଅଦ୍ରା ରକ୍ତବର୍ଣ୍ଣ, ବେହୁଣୀ ଶୁକ୍ଳବର୍ଣ୍ଣ, ଏଠାରେ ମାଣିକ୍ୟର ଗୁଣା ରକ୍ତବର୍ଣ୍ଣ, ମୁକ୍ତାର ନଥ ଶୁକ୍ଳବର୍ଣ୍ଣ )।

୧୧ଶ ପଦ—ଯେଉଁ କନ୍ଦର୍ପର ରଥରେ ମକର ଚିହ୍ନିତ ପତାକା ଥିବାରୁ ସେ ପ୍ରିୟ ହୋଇ ପାଇଅଛି, ତାହାର ପ୍ରିୟା ରୂପ ରଥ ( ଏଠାରେ ସୀତା ସ୍ତ୍ରୀ ରୂପ ରଥ ହେଲେ ) ଦେହର ମକରୀ ଚିତ୍ର ଲେଖ । ଏପରି ହୁଡ଼ାହୁଡ଼ି ହୋଇ ମକରୀ ଚିତ୍ର ଲେଖିବାକୁ ଚଞ୍ଚଳେ ସୌନ୍ଦର୍ଯ୍ୟ ସମ୍ବନ୍ଧରେ ଗୋଳ ଉଠିଲା । ( ଅର୍ଥାତ୍ ସଖୀମାନେ ପରସ୍ପର ହୁଡ଼ାହୁଡ଼ି ହେଲେ, ମୁଁ ଭଲକରି ଲେଖି ଜାଣେ ନାହିଁ—ମୁଁ ତୋ ଅପେକ୍ଷା ଭଲ ଜାଣେ । ସେହି ଗୋଳମାଳ ଭିତରେ କେହି ବିବେକବତୀ ସଖୀ ବଳେ ତୁଳିକା ଛଡ଼ାଇ ନେଇ ସୀତାଙ୍କ ଗଣ୍ଡସ୍ଥଳରେ ମକରୀ ଚିତ୍ର ରଚନା କଲା । ତାହା ପରେ କେଉଁ ସଙ୍ଗୀ କସ୍ତୁରୀରେ ଗୋଟିଏ ବିନ୍ଦୁ ଚିବୁକରେ ଦେଲା । ତା ଦେଖି ମନେ ହୁଏ ଗୋଟିଏ ମଧୁମାଛି ସଙ୍ଗଭ୍ରଷ୍ଟ ହୋଇ ନିଶ୍ଚଳ ଭାବରେ ସେଠାରେ ରହିଅଛି କି ?

୧୨ଶ ପଦ—ଅନନ୍ତର ତାହାଙ୍କ ନେତ୍ରରେ କଜ୍ଜଳ ଦେବାରୁ, ତାହା ବଡ଼ିଶି ଓ ସାରେଣୀ ସହିତ ଲକ୍ଷ ଦେଲା । ପୁଣି ସେହି କଜ୍ଜଳର ରେଖା ଦେଖି ମନେହୁଏ, ନେତ୍ରଲୋମ ରୂପ ପେଡ଼ାରୁ ବାହାର ବର୍ଣ୍ଣରୂପ ବଳରୁ ଦମ୍ଭ

କଟେଷ୍ଟ କି ନ ଜାଣି ତତ୍ତ୍ୱ ଯେ ।
ବକାଶ ମୀନସନ୍ଧି ଦେଖ ପାରୁଷେ ହେଲ ଦେନ ଧୂମକେତୁ ଯେ ।୧୨।
ବତରଣ୍ଠରେ ମୋତି ଗୃପସର । ଛତକ ଚନ୍ଦ୍ରେ ଦେବେଶ ପ୍ରସର ।
ବହିଁ ତଣ୍ଡୁଳବତ ପାଶବତ । ବନ୍ଦୀ ହେଲ ପଶ ପାଶରେ ସତ ସେ
ବହୁଳ ମାଳକ ରଞ୍ଜି ଯେ ।
ବର୍ଣ୍ଣନା ଅଛି ଶଙ୍ଖ ବୋଲି ଯାହାକୁ ଦେ ତାହା ପାରବ ଭାଞ୍ଜି ଯେ ।୧୩।
ବ୍ୟବସ୍ଥା କଲେ ବାହୁଦଣ୍ଡ ବଧି । ବନତ ସ୍କନ୍ଧ-ଛତ ପ୍ରତିନିଧି ।
ବଳୟ ତାଡ଼ସାରକୁ ନିଯୋଗେ । ବଯୋଜ ଭୂମିକା ଥିବାରୁ ଲାଗେ ସେ
ବିମ୍ବଳ ବାହୁଯୁଗଳ ଯେ ।
ବାହୁବନ୍ଧ ଦେଇ ମୁଦ ଦେଲେ ତାକୁ ନୋହିଲା ଲକ୍ଷ ସକଳ ଯେ ।୧୪।

---

୧୨ଶ ପଦ—ଅଞ୍ଜନସୂକ୍ଷ—କଜ୍ଜଳସୂକ୍ଷ । ଦକ-ଶ୍ରୋଣେ—କର୍ଣ୍ଣରୂପକ ଗଣ୍ଡିରେ । ଦମ୍ଭ-ଦଂଶ-ଅହି—ଧୈର୍ଯ୍ୟ ଦଂଶକ ସର୍ପ ।

---

ଦଂଶନକାରୀ ଲଞ୍ଜିରୂପ କୃଷ୍ଣସର୍ପ ପଳାଇ ଯାଉଛି କି ? ଅଥବା ନେତ୍ରରୂପ ମୀନ ରାଶିର ଦୁଇପାଶରେ ବୋଧହୁଏ ଦୁଇ ଧୂମକେତୁ ପ୍ରକାଶିତ ହେଲେ । (ମୀନରାଶିର ଦୁଇପାଖରେ ଧୂମକେତୁ ଦେଖାଗଲେ ଉତ୍ପାତ ଘଟେ । ଏଠାରେ ଯୁବକ ଧୈର୍ଯ୍ୟ ଧ୍ୱଂସ ହୋଇ ଉତ୍ପାତ ଘଟାଇବା ପାଇଁ ଏପରି ହୋଇଛି କି ?) ଏ ବିଷୟରେ କି ତତ୍ତ୍ୱ ଅଛି—ତା ଜଣାଯାଉ ନାହିଁ ।

୧୩ଶ ପଦ—ତଦନନ୍ତରେ ସଖୀମାନେ କଣ୍ଠରେ ମୋତି ଗୃପସର ଦେଲେ । ତାହା ଦେଖି ଉତ୍ପ୍ରେକ୍ଷା ହେଉଛି, କପୋତ ମୋତିକୁ ତଣ୍ଡୁଳ ପରି ମନେକରି ଖାଇବାକୁ ଯାଇ ପାଶରେ ବନ୍ଦୀ ହୋଇଛି କି ? ଏହା ମିଥ୍ୟା ନୁହେ । ପୁଣି ବହୁତ ମାଳରେ ରଞ୍ଜିତ କଣ୍ଠକୁ ଯାହା ଶଙ୍ଖ ବୋଲି ବର୍ଣ୍ଣନା କରାଯାଇଛି ତାହା କିଏ ବା ଅନ୍ୟଥା କରିବ ? ( ଅନ୍ୟଥା କରିପାରିବ ନାହିଁ ।) ( ଶଙ୍ଖ ବହୁତ ମାଳାଦାରକୁ ରଞ୍ଜିତ କରେ, କଣ୍ଠ ବହୁତ ମାଳରେ ରଞ୍ଜିତ ହେଲା ।)

୧୪ଶ ପଦ—ସଖୀମାନେ ଭୁଜରୂପ ବୀଣାଦଣ୍ଡ ବିଧିରେ ବ୍ୟବସ୍ଥା କଲେ । ଅନତ ସ୍କନ୍ଧଦେଶ ବୀଣାଛତର ପ୍ରତିନିଧି ହେଲା । ବାହୁରେ କଙ୍କଣ ଓ ତାଡ଼ ଲଗାଇବାରୁ ତାହା ବୀଣାର ସାର ସଦୃଶ ହେଲା । ସ୍ତନ ସେହି ବାହୁଦଣ୍ଡର ତୁମ୍ବୀ ହେଲା । ତତ୍ପରେ ସେହି ମୃଣାଳ ବାହୁଦ୍ୱୟରେ ବାଜୁବନ୍ଧ ଓ ଅଙ୍ଗୁଳିରେ ମୁଦି ଖଞ୍ଜିଦେଲେ । ଏହିପରି ଅଳଙ୍କାରମାନଙ୍କଦ୍ୱାରା ମଣ୍ଡିତ ହେବାରୁ ବୀଣାଦଣ୍ଡ ଖୋଳ ମଧ୍ୟସ୍ଥ ହେଲେ ଯେପରି କିଛି ଦେଖାଯାଏ ନାହିଁ, ବାହୁର ସେହିପରି କୌଣସି ଅଂଶ ଦେଖାଗଲା ନାହିଁ ।

ବଲ୍ଲୀପର ଗିର ଲଗଇ ମାନ । ବଦୃଷ୍ଟ ସ୍ଥାନରେ କି ସୃଷ୍ଟି ଶନ ।
ବଭୂଷି ସ୍ୱର୍ଣ୍ଣକଷ ନୀଳବେଣୀ । ବଳସାଇ ହାର ବଟିକ ଫୁଲି ସେ ।
ବନ୍ଧ୍ୟ ମନ୍ଦର ଘୋଡ଼ାଇ ଯେ ।
ବଦ୍ୟୁଧାରକେ ଘନଧାରେ ବଳାକାପନ୍ତି ଏ ମିଳି କି ଉଡ଼ି ଯେ । ୧୫ ।
ବଳା ଚୂଳାକୋଟି ଖଞ୍ଜିଲେ ପାଦେ । ବୋଲବ ତୁଳାକୋଟି ତୁଚ୍ଛନାଦେ ।
ବଗୂଢ଼ ହଂସକ ହରେ ଗମନ । ବଗୂଢ଼-ସ୍ୱନ ହଂସକ ମଣ୍ଡନ ସେ ।
ବନ୍ଧୁର ମାର୍ଗ ଜଣାଇଁ ଯେ ।
ବର୍ଣ୍ଣଭେଦ ସିନା ଝୁଣ୍ଟିଅ ଖୁଣ୍ଟିଅ ପ୍ରପଦେ ରଖିଲେ ତହୁଁ ଯେ । ୧୬ ।

---

୧୫ଶ ପଦ—ବଲ୍ଲୀ—ଲତା । ବଦୃଷ୍ଟ—ଯାହା ଦେଖାଯାଏ ନାହିଁ । ନୀଳବେଣୀ—ନୀଳକାଞ୍ଚୁଲି । ବଳାକାପନ୍ତି—ବକଶ୍ରେଣୀ ।

୧୬ଶ ପଦ—ଚୂଳାକୋଟି—ନୂପୁର । ତୁଳାକୋଟି—ଉପମାସମୂହ । ବଗୂଢ଼—ନିନ୍ଦିତ । ବଗୂଢ଼ସ୍ୱନ—ଗୁପ୍ତସ୍ୱନ । ଖୁଣ୍ଟିଅ—ବନ୍ଧୁର ପଥ । ପ୍ରପଦେ—ପଦାଗ୍ରରେ ।

---

୧୫ଶ ପଦ—ତତ୍ପରେ ସ୍ତନ ଦ୍ୱୟରେ ସଖୀମାନେ ଉତ୍ତମ ଚନ୍ଦନ ( କସ୍ତୁରୀର ପତ୍ରାବଳୀ ) ଲେଖିଲେ । ସ୍ତନଦ୍ୱୟ ଗିରି ସଦୃଶ ହେଲା, ( ପର୍ବତରେ ଲତା ପତ୍ର ମାତ୍ରଥାଏ, ଏଠାରେ ଲତା ପତ୍ର ଚର୍ଚ୍ଚିତ ହେଲା ) ତତ୍ପରେ ତାହାକୁ ସ୍ୱର୍ଣ୍ଣ ଜରିଯୁକ୍ତ ନୀଳବର୍ଣ୍ଣ କାଞ୍ଚୁଲିରେ ବଭୂଷିତ କଲେ । ପୁଣି ସେହି କାଞ୍ଚୁଲି ଉପରେ ମୁକ୍ତାମାଳା ଲମ୍ବାଇଲେ, ତେଣୁ ତାହା ବଚିତ୍ର ଶୋଭା ଧାରଣ କଲା । ତାହା ଦେଖି ମନେହୁଏ, ବନ୍ଧ୍ୟ ଓ ମନ୍ଦର ପର୍ବତ ଦ୍ୱୟ ନୀଳମେଘରେ ଢାଙ୍କି ହୋଇଅଛି ଓ ସେ ନୀଳମେଘ କୋଳରେ ବଜୁଳି ଖେଳୁଛି ଏବଂ ବଗସବୁ ଧାଡ଼ି ଧାଡ଼ି ଉଡି ଯାଉଅଛନ୍ତି ।

୧୬ଶ ପଦ—'କୋଟି କୋଟି ଉପମାକୁ ତୁଚ୍ଛ କରୁଛି'—ଛଳରେ ଏହା କହିବା ପାଇଁ ସଖୀମାନେ ସୀତାଙ୍କ ପାଦରେ ବଳା ଓ ନୂପୁର ଖଞ୍ଜି ଦେଲେ । ପୁଣି 'ସୀତାଙ୍କ ଗମନ ହଂସମାନଙ୍କର ଗତିକୁ ନିନ୍ଦା କରୁଛି'—ଏହି ସ୍ୱନ କରିବା ନିମିତ୍ତ ପାଦରେ ହଂସକ ନାମକ ଅଳଙ୍କାରକୁ ମଣ୍ଡନ କଲେ । ଖୁଣ୍ଟିଅର ଅର୍ଥ ଉଚ୍ଚ ନୀଚ ପଥ । ଝୁଣ୍ଟିଅ ସହିତ ତାହାର ଗୋଟିଏ ବର୍ଣ୍ଣର ଯାହା ପ୍ରଭେଦ ଅଛି । ଏହି ଛଳରେ ଉଚ୍ଚନୀଚ ପଥ ଜଣାଇ ଦେବାପାଇଁ ସଖୀମାନେ ପାଦ ଅଗରେ ଝୁଣ୍ଟିଅ ଖଞ୍ଜି ଦେଲେ ।

ଦେହରେ ପାଦରେ ଲେପିଲେ ଲାକ୍ଷା । ବାସ ହେଲା ରେଣୁରଙ୍ଗ କି ଦକ୍ଷା
ବିକଶିତ କୋକନଦ ମଧ୍ୟର । ଦେଖି ଭ୍ରମେ କି ସରସ୍ୱତୀ ନୀର ସେ
ବଂଶନଳରେ ଥିବାର ଯେ ।
ବାନ୍ଧୁ ପିନ୍ଧି ଦୂର୍ବାଦଳ-ନୀଳ ଚେଳ କୋଳ ଉଚ୍ଚି ଶ୍ୟାମର ଯେ । ୧୭ ।
ବସନାଞ୍ଚଳ ଯେ ଚଳିଲେ ବେଗେ । ବସ ନା ଠାରେ ସେ ଯୋଗିଙ୍କି ଯୋଗେ
ବିଭଙ୍ଗେ ତାହା ଅଗେ କୁଞ୍ଚା ରହି । ବ୍ୟକ୍ତ ନୋହୁ ଉରୁ ଫୁଟି ଏ ପାଞ୍ଚସେ
ବାନ୍ଧି କଟିରେ କଙ୍କିଣୀ ଯେ ।
ତାଙ୍କ କଣିକଣି ଶବ୍ଦ ନେବ କଣି ଶୁଣୁଁଲେ ନଯୁନ ଏଣୀ ଯେ । ୧୮ ।

।

---

୧୭ଶ ପଦ—ଲାକ୍ଷା—ଅଳତା । କୋକନଦ—ରକ୍ତପଦ୍ମ ।
୧୮ଶ ପଦ—ବସନାଞ୍ଚଳ—ପଣତ କାନି ଲୁଗାକାନି । ଉରୁ—ଜାନୁ ।
ଏଣୀ—ମୃଗୀ ।

---

୧୭ଶ ପଦ—ତତ୍ପରେ ପାଦର ବେଢ଼ରେ ଅଳତା ଦେଲେ । ପାଦ ରଙ୍ଗ ଓ ଅଳତା ରଙ୍ଗ ଦୁହିଁଙ୍କର ସଦୃଶ ଜଣା ପଡୁଥିଲା ( ଏକବର୍ଣ୍ଣ ହୋଇ ଯିବା ହେତୁ ତାହା ସହିତ ମିଶିଲା ନାହିଁ ) ଯେପରି ଫୁଟିଥିବା ରକ୍ତପଦ୍ମର ମୂଳ ପାଖରେ ସରସ୍ୱତୀର ରକ୍ତବର୍ଣ୍ଣ ଜଳ କେତେ ରହିଅଛି । ( ପାଦ ରକ୍ତପଦ୍ମ ଓ ଅଳତା ସରସ୍ୱତୀର ରକ୍ତବର୍ଣ୍ଣ ଜଳ ରୂପେ ଉପମିତ ) । ତାହା ପରେ ବାଉଁଶ ନଳୀ ଭିତରେ ଥିବା ଅତ୍ୟନ୍ତ ସୂକ୍ଷ୍ମ ଦୂର୍ବାଦଳବର୍ଣ୍ଣ ବିଶିଷ୍ଟ ନୀଳ ଶାଢ଼ୀ ତାଙ୍କୁ ପିନ୍ଧାଇଲେ । ଦୂର୍ବାଦଳବର୍ଣ୍ଣ ଶ୍ୟାମ ଏହିପରି କୋଳ କରିବେ—ଏହି ଇଚ୍ଛାରେ ନୀଳବର୍ଣ୍ଣ ଶାଢ଼ୀ ସୀତାଙ୍କ ଦେହରେ ଲଗାଇ ଦେଲେ କି ?

୧୮ଶ ପଦ—ଲୁଗା ପିନ୍ଧାଇ ଦେଇ ପରେ ଲୁଗାର ପଣତ ପବନରେ ଚଳିତ ହେବାରୁ ଜଣାଗଲା, ଯେପରି ସେ ପଣତ ଯୋଗୀଙ୍କ 'ଯୋଗରେ ବସ ନାହିଁ' ଏପରି ଠାରି କହୁଛି । ( ସେ ପବନ ଚଳିତ ଅଞ୍ଚଳର ଦର୍ଶନରେ ଯୋଗୀଙ୍କର ଯୋଗ ସୁଦ୍ଧା ଭ୍ରଷ୍ଟ ହୋଇ ଯିବ ) । ପୁଣି ସୀତାଙ୍କ ସମ୍ମୁଖ ଭାଗରେ ସ୍ତନ ଦ୍ୱୟ ଫୁଟି ନ ଦିଶୁ'—ଏଥିପାଇଁ ଲୁଗାକୁ ନାନାପ୍ରକାର ଭଙ୍ଗ କରି କୁଞ୍ଚି ଦେଲେ । କଟିରେ କଙ୍କଣୀ ବାନ୍ଧିଲେ; ତାହା କଣି କଣି ବାଜି ଦେଉଥିବା ସ୍ୱରର ନନ୍ଦନ ମୃଗର ଶବ୍ଦକୁ ଜିଣି ନେଲା । ( ଘଣ୍ଟି ଶବ୍ଦ ଶୁଣିଲେ ଅରଣ୍ୟରେ ମୃଗ ମୃଗୀମାନେ ବଶ ହୁଅନ୍ତି ) ।

ବେଳା ଜାଣିବାକୁ ସଖୀ ବସାଇ । ବୀଟିକା ନାଗବଲ୍ଲୀର ଭୁଞ୍ଜାଇ ।
ବିଡ଼ମ୍ବ ନୋହିଲା ଅଧରପୁଟରେ । ବାଳ ରବି ଦ୍ୟୋତିଜବା କି ଧରେ ସେ
ବଢଣଲକ୍ଷଣା ପୁଷ୍ପ ଯେ ।
ବିଧାତା ଉପମା ଗୀତ ଗୃହସ୍ଥଳ ଲକ୍ଷ ଲକ୍ଷ ଦାଜ କର ଯେ । ୧୯ ।
ବିଭୂଷା ହେମରତ୍ନ ଯେତେ କହି । ବାଳାମଣି ଶାନ୍ତ୍ର ରସାଣ ତହିଁ ।
ବିଦଳି ଅଞ୍ଜନ କସ୍ତୁରୀ ନିଶି । ବିଧୁ ବିଧୁବନ୍ଧୁ ଉଜ୍ଜ୍ୱଳ ଦିଶି ସେ ।
ବିଦେହଜା ପଦ ଗୁଣି ଯେ ।
ବିଂଶତି ପଦେ ଏ ଛାନ୍ଦ ଉପଇନ୍ଦ୍ର ଭଞ୍ଜ ବୀରବର ଭଣି ଯେ । ୨୦ ।

---

୧୯ଶ ପଦ—ବୀଟିକା—ପାନ ଖିଲ । ନାଗବଲ୍ଲୀ—ପାନ । ବିଡ଼ମ୍ବ—ଉପହାସ ।

---

୧୯ଶ ପଦ—ଏହାପରେ ବେଶ ରଚନା ସରିଲା ପରେ ଭୋଜନ ସମୟ ନିକଟବର୍ତ୍ତୀ ହେବାର ଜାଣି ସଖୀମାନେ ସୀତାଙ୍କୁ ବସାଇ ପାନ ଖିଲ ଭୁଞ୍ଜାଇଲେ । ରକ୍ତବର୍ଣ୍ଣ ବିଶିଷ୍ଟ ଅଧର ପାନ ବୋଳରେ ଦ୍ୱିଗୁଣିତ ହୋଇଗଲା, କିନ୍ତୁ ତାହା ଉପହାସିତ ବା କୃଷ୍ଣବର୍ଣ୍ଣ ହେଲା ନାହିଁ (ରକ୍ତବର୍ଣ୍ଣରେ ରକ୍ତବର୍ଣ୍ଣ ମିଶିଲେ କୃଷ୍ଣବର୍ଣ୍ଣ ହୋଇଯାଏ), ମାତ୍ର ଜବାବର୍ଣ୍ଣ ବାଳ ସୂର୍ଯ୍ୟର ତେଜଃମଣ୍ଡଳକୁ ଧାରଣ କଲା ପ୍ରାୟ ଦେଖାଗଲା । ସୀତା ବଢଶ ଲକ୍ଷଣାର ସ୍ଥଳ ରୂପେ କଳ୍ପିତ ହୋଇ ଅଛନ୍ତି, ଗୀତ ଗୃହସ୍ଥ ସ୍ଥଳରେ ଉପମାମାନଙ୍କୁ ସନ୍ନା ଦିଆ ଗଲା (ମାତ୍ର କୌଣସି ଉପମା ତାଙ୍କର ଶୋଭାକୁ ଯୋଗ୍ୟ ନୁହନ୍ତି) ।

୨୦ଶ ପଦ—ଯେତେ ସ୍ୱର୍ଣ୍ଣ ଓ ରତ୍ନର ଅଳଙ୍କାର କଥା କୁହାଗଲା, ସେ ସବୁ ସୀତାଙ୍କ ଅଙ୍ଗ ରୂପ ରସାଣ ପଥର ଯୋଗରେ ଉଜ୍ଜ୍ୱଳ ଦେଖାଗଲେ । (ରତ୍ନ ଓ ସ୍ୱର୍ଣ୍ଣ ରସାଣ ପଥରରେ ଘଷିଲେ ବେଶି ଉଜ୍ଜଳ ଦିଶନ୍ତି, ତେଣୁପର ଏଠାରେ ସେମାନେ ସୀତାଙ୍କୁ ସୁନ୍ଦର କଲେ ନାହିଁ ଯେ, ସୀତାଙ୍କ ଯୋଗେ ନିଜେ ସୁନ୍ଦର ଦେଖାଗଲେ) । ମର୍ଦ୍ଦିତ କଜ୍ଜ୍ୱଳ ଓ କସ୍ତୁରୀ ରୂପ ରଜନୀ ସୀତା ରୂପୀ ଚନ୍ଦ୍ର ଯୋଗେ ଉଜ୍ଜ୍ୱଳତର ଦିଶିଲେ । ସେହି ବିଦେହ ରାଜକନ୍ୟା ସୀତାଙ୍କ ପାଦପଦ୍ମକୁ ସ୍ମରଣ କରି ବୀରବର ଉପେନ୍ଦ୍ର ଭଞ୍ଜ ଏ ଛାନ୍ଦକୁ କୋଡ଼ିଏ ପଦରେ ଭଣିଲେ ।

## ଏକାଦଶ ଛାନ୍ଦ

### ରାଗ—ବସନ୍ତବରାଡ଼ି

ହେଲ ଶୁଭଦରେ ପ୍ରବେଶ ଅବେଶ ବେଶ ସଖୀଏ ସାରିଥିଲେ
ବିସ୍ମରେ ସୁମନା ଶ୍ରୀ-କରେ ସୁମିନା- ସୁମନା-ମାଳା ନେଇ ଦେଲେ ।
ବୋଇଲେ, ବରଣ ଏ କଳାଭ୍ରମର ।
ବସି ଦଶରଥ-ସୁତ-ଜାନୁ-ରଥ ପେ ମନୋରଥ ସାର୍ଥ କର । ୧ ।
ବେଷ୍ଟିତରେ ତରଳାକ୍ଷୀଙ୍କ ତାର ତାର ପରିଧି କି ବଧୂରେ ।
ବିଧିରେ ମଙ୍ଗଳବିଧିରେ କେ ହୁଳହୁଳିକି ବହିଲେ ବର୍ଧିରେ ।
ବର୍ଷନ୍ତି, ଘଟ୍ଟଚୂର୍ଣ୍ଣ କେହୁ ଅଗରେ ।
ବଜାଇ କେହୁକାଳି ମାର୍ଗ କେ ପ୍ରବୀଣା ବୀଣା ଧରି ଅନୁସରେ । ୨ ।

---

୧ମ ପଦ—ସୁମନା—ସୁଚତୁରୀ, ପୁଷ୍ପମାଳା ।

୨ୟ ପଦ—ବେଷ୍ଟିତରେ—ଅତି ଘନସ୍ୱରରେ ବେଢ଼ିକା । ତରଳାକ୍ଷୀ—ଚଞ୍ଚଳାକ୍ଷୀ । ତାର ତାର—ଉଜ୍ଜ୍ୱଳ ତାରକା । ପରିଧି—ମଣ୍ଡଳ । ବର୍ଧିରେ—ଉଚ୍ଚରେ । ଘଟ୍ଟଚୂର୍ଣ୍ଣ । କର୍ପୂର ଗୁଣ୍ଡା ।

---

## ଏକାଦଶ ଛାନ୍ଦ

୧ମ ପଦ—ବରଣ କରିବାପାଇଁ ଶୁଭ ସମୟ ପ୍ରବେଶ ହେଲା । ପୂର୍ବରୁ ସଖୀମାନେ ବେଶକାର୍ଯ୍ୟ ଶେଷ କରିଥିଲେ । ସଖୀମାନେ ବିସ୍ମିତ ହୋଇ ଅନନ୍ୟମନା ହୋଇ ସୀତାଙ୍କ ଶ୍ରୀହସ୍ତରେ ଫୁଲମାଳ ନେଇ ଦେଲେ । ଅନ୍ୟାର୍ଥ—ଇଷ୍ଟଦେବତାଙ୍କୁ ସ୍ମରଣ କରି ଲକ୍ଷ୍ମୀ ରୂପୀ ସୀତାଙ୍କ ହସ୍ତରେ ଉତ୍ତମମନା ହୋଇ ପୁଷ୍ପମାଳା ଦେଲେ) । କହିଲେ, "ଏ ଫୁଲମାଳ କଳାଭ୍ରମର ରୂପ ରାମଚନ୍ଦ୍ରଙ୍କୁ ବରଣ କରିକ । ଦଶରଥ ସୁତ ରାମଙ୍କ ଜାନୁ ରୂପ ରଥରେ ବସି ତୁମ୍ଭ ମନକାମନା ପୂର୍ଣ୍ଣ କର ।"

୨ୟ ପଦ—( ରାମଙ୍କୁ ବରଣ କରିବା ନିମନ୍ତେ ସୀତାଙ୍କ କରରେ ପୁଷ୍ପମାଳା ଦେଇ ) ଚଞ୍ଚଳାକ୍ଷୀ ସଖୀମାନେ ଚଉଦିଗରେ ଘନସ୍ୱରରେ ବେଢି ରହିଲେ, ତାହା ଦେଖି ବୋଧ ହେଲା—ଉଜ୍ଜ୍ୱଳ ତାରାସମୂହ ଚନ୍ଦ୍ରଙ୍କର ଚଉପାଶରେ ଘେରି ରହିଅଛନ୍ତି କି ? ତାଙ୍କ ମଧ୍ୟରୁ କେହି ମଙ୍ଗଳ ବିଧାନର ସୂଚନା ସ୍ୱରୂପ ଉଚ୍ଚ ସ୍ୱରରେ ହୁଳହୁଳି ଦେଲେ । କେହିଁ ସଖୀ ଅଗରେ କର୍ପୂର ଧୂଳି ବର୍ଷିଲେ । କେହିଁ ପଣ୍ଡିତା ସଖୀ ଯିବାବେଳେ ପଥ ଜଣାଇଦେବା ଉଦ୍ଦେଶ୍ୟରେ ବୀଣା ଧରି ଅନୁରାଗରେ ବଜାଇଲେ ।

ବ୍ୟଜନ ରଞ୍ଜନ କରି ଯେ ବୁଲନ୍ତି ଢାଳନ୍ତି ଯେ ଶଶୀ ଚାମର ।
ବଲ୍ଲା ମହିମା ମହିମା ପଦରେ ଯେ ଅଣିମାଦିଦାୟୀ ସମ୍ମୁଖ ।
ବାରିଧି, ବାରିମଧ୍ୟୁଁ ଯେହ୍ନି ରମ୍ଭାଦି ।
ବଳେ କରନ୍ତି ଉପୃଷ୍ଠସ୍ଥାନେ ସୁରାସୁର ଅଗେ ଶ୍ରୀଙ୍କ ସମ୍ପାଦ । ୩ ।
ବିତାନ- ଶର ଧରନ୍ତି ଉପର ବୀଚ ଚୁଟର ସେହ୍ନତ ।
ବଳାଙ୍ଗନାଦ ପ୍ରବାଳ ଅବଳାଙ୍କ ଶୁକ୍ତି ଭକ୍ତିକି ସେ ମୋହିତ ।
ବାସୁକି, ବାହୁ କି ଉରଜ ମନ୍ଦର ।
ବିଚଳିତ ସ୍ପୃତଃ ଇଳିତ କଳିତ ଅଛି ହାସ-ସୁଧା ସଂସ୍ମୃତ । ୪ ।

---

୩ୟ ପଦ—ବ୍ୟଜନ—ବିଞ୍ଚଣା । ଐଶ୍ୱର୍ଯ୍ୟଦାୟୀ— ଯେ ଅଣିମାଦି ଅଷ୍ଟୈଶ୍ୱର୍ଯ୍ୟ ଦିଏ । ଶ୍ରୀକି—ଲକ୍ଷ୍ମୀଙ୍କି ।

୪ର୍ଥ ପଦ—ବିତାନ ଶର—ଗୃଧ୍ରୁଅ ଲୁଗା । ବୀଚ ଲହରୀ । ଚୁଟର—ମନୋହର । ଶୁକ୍ତି—ଶାମୁକା । ଉରଜ—ସ୍ତନ ।

---

୩ୟ ପଦ—ଯେଉଁ ଅଲଟ ଧରା ପକାଇଲେ, ଯେଉଁ ଖଣ୍ଡ ଚାମର ଢାଳିଲେ । ଅଣିମାଦି ଅଷ୍ଟଐଶ୍ୱର୍ଯ୍ୟଦାୟିନୀ ସୀତାଙ୍କ ସମ୍ମୁଖରେ ଯେଉଁ ଯେଉଁ ମହିମା ମହିମା ଭାବ ଦେଲେ । ତାହା ଦେଖି ମନେ ହୁଏ, ସମୁଦ୍ରର ଜଳ ମଧ୍ୟରୁ ଉଠିଥିବା ରମ୍ଭା ଆଦି ଅପ୍ସରାମାନେ ଯେହ୍ନେ ଦେବତା ଓ ଅସୁରମାନଙ୍କ ଅଗ୍ରତରେ ଉପୃଷ୍ଠ- ସ୍ଥାନୀ ଲକ୍ଷ୍ମୀଙ୍କର ଶୋଭା ସମ୍ପାଦନ କରାଇ ନାରାୟଣଙ୍କ ସମୀପକୁ ବଳେ କରାଉ-ଅଛନ୍ତି କି ? ଲକ୍ଷ୍ମୀ ସମୁଦ୍ରରୁ ଉଠିଲେ, ମାତ୍ର ସୀତା ଉପୃଷ୍ଠ ସ୍ଥାନ । ସେଠାରେ ସୁରାସୁର ଅର୍ଥ ବୀର ଓ ସାଧୁ )

୪ର୍ଥ ପଦ—ସୀତାଙ୍କ ଉପରେ ଧରା ଯାଇଥିବା ଗୃଧ୍ରୁଅ ଲୁଗା ସମୁଦ୍ରର ଲହରୀ ପ୍ରାୟ ସୁନ୍ଦର ଦିଶୁଅଛି । 'ଅବଳାମାନଙ୍କର' ସଖୀମାନଙ୍କର ପାଦର ପ୍ରବାଳ ବଳାଶଙ୍କ ସମୁଦ୍ରର ଶାମୁକା ଶଙ୍ଖକୁ ମୋହିତ କରୁଅଛି । ବାହୁ ରୂପ ବାସୁକି ସ୍ତନ ରୂପ ମନ୍ଦର ପର୍ବତକୁ ବିଚଳିତ କରି ସେ ସମୁଦ୍ରକୁ ମନ୍ଥନ କରିବାରୁ ମନୋହର ହାସ-ସୁଧା ସେଥିରୁ ଉତ୍ପନ୍ନ ହେଉଅଛି । (କ୍ଷୀରସାଗର ମନ୍ଦର ପର୍ବତ ଓ ବାସୁକି ସର୍ପ ଦ୍ୱାରା ମନ୍ଥିତ ହେବାବେଳେ ଶାମୁକା ପ୍ରବାଳଙ୍କର ବଳ ବଳ ସ୍ୱନ ଓ ଅମୃତ ଉଦ୍ଭବ ହୋଇଥିଲା, ଏଠାରେ କ୍ଷୀରକଣ୍ଠ ଚନ୍ଦ୍ରାତପ ସାଗରର ତରଙ୍ଗ, ସ୍ତନ ମନ୍ଦର, ବାହୁ ବାସୁକି, କଳାଙ୍କ ଶାମୁକାର ସ୍ୱନ, ଅନନ୍ଦ ହାସ ଅମୃତ ସ୍ୱରୂପ ଉପମିତ) ।



ଏକାଦଶ ଛାନ୍ଦ ।

ବେଳ ଶୁଭଦାରେ ପ୍ରବେଶ ଆବେଶ ବେଷ ସଖୀଏ ସଂବଥିଲେ ।
ବସ୍ତରେ ସୁମନା ସ୍ତ୍ରୀ-କରେ ସୁମନା-ସୁମନା-ମାଳା ନେଇ ଦେଲେ ।
ବୋଇଲେ, ବଶଙ୍କ ଏ କଳାଭୃଙ୍ଗର ।
ଦର୍ପି ଦଶରଥ-ସୁତ-ଜାନୁ-ରଂ ଯେ ମନୋରଥ ସାର୍ଥ କର । ୧ ।

ଝଳସି ଝଳସି ଗର୍ଭାଳସୀ ହଂସୀ ମନ୍ଥର ମନ୍ଥନ ଗତିରେ ।
ବର ସନ୍ନିଧିକି ସେ ଶୋଭାନିଧିକି ନେଇଁ ଧିକି ଧିକି ଝଡରେ ।
ବାହୁଲେ, ବସୁମତୀପତି ସକଳେ ।
ବିଧାତା ବିଧାନୀ ଉଚ୍ଚାଟ ନିଧାନୀ ନୋହେ ସାବଧାନୀ ହୋଇଲେ । ୫ ।
ବିଘ୍ନରାଜ ସତ ଉପମାରାଜିତ ଭ୍ରାଜତମାନ କରି ଲେଖି ।
ବକ୍ରତୁଣ୍ଡ ହେଲେ ଟଳି ବର୍ଣ୍ଣି ଆଣୁ ଯେଣୁ ସେମାନେ ସେ ମାନେ ବାହୁଡ଼ି ।
ଭବେକି, ବର୍ଜନ ଏ କଦା ନୁହନ୍ତି ।
ବୃହତ୍କୁକ୍ଷି କୁଣ୍ଡେ ସେ ପୂର୍ଣ୍ଣ ହୋଇଲେ ଧନ୍ୟ ସୀତା ମାଳେ ଜପନ୍ତି ॥
ବିପୂର୍ତ୍ତି ଦୃଷ୍ଟି ସୃଷ୍ଟି ସହିଁ ଉଶନା ଏକଦୃଷ୍ଟି କରି ବୋଲଇ ।
କଣା ହେବାରେ ଲକ୍ଷଣା ବାରେ ବାରେ ଗଣାତ' କରିବା କିପାଇଁ ।

---

୫ମ ପଦ—ବସୁମତୀ ପତି—ରାଜା । ଉଚ୍ଚାଟନିଧାନୀ—ଚିତ୍ତ ଉଦ୍ଦୀପନକାରିଣୀ । ସାବଧାନୀ ହେଲେ—ବିଚାରପୂର୍ବକ ଯୁକ୍ତିଯୁକ୍ତ କଥା କହିଲେ ।

୬ଷ୍ଠ ପଦ—ବିଘ୍ନରାଜ—ଗଣେଶ । ଭ୍ରାଜତମାନ—ଶୋଭମାନ ବା ଦେଦୀପ୍ୟମାନ । ବୃହତ୍ କୁକ୍ଷି—ବଡ଼ ପେଟ । ତୂର୍ଣ୍ଣି—ଶୀଘ୍ର ।

---

୫ମ ପଦ—ଗର୍ଭଭରରେ ଧୀର ଗତି କରୁଥିବା ହଂସୀ ପରି ସର୍ବଶୋଭାର ଭଣ୍ଡାର ସୀତାଙ୍କୁ ମନ୍ଥର ଗତି କରାଇ ରାମଙ୍କ ସମୀପକୁ ନେଇଗଲେ, ସେ ଶୋଭା ରତ୍ନ ମଧ୍ୟ ଧିକ୍କାର କଲା । ତାହା ଦେଖି ରାଜାମାନେ ସାବଧାନରେ ବିଚାର କଲେ, 'ଚିତ୍ତ ଉଚ୍ଚାଟନକାରିଣୀ ସୀତା ବିଧାତାଙ୍କ ଦ୍ୱାରା ନିର୍ମିତ ହୋଇ ନାହାନ୍ତି କି ? ( ସୀତାଙ୍କ ଶୋଭା ଯାବତୀୟ ବିଧିସୃଷ୍ଟ ଶୋଭାଠାରୁ ବଳି ମନୋହର, ତେଣୁ ସେ ସ୍ୱୟଂ ସୃଷ୍ଟା ବୋଲି ବୋଧ ହେଉ ) ।

୬ଷ୍ଠ ପଦ—ବିଘ୍ନରାଜ ଗଣେଶ ଉତ୍କୃଷ୍ଟ ଉପମାମାନ ଲେଖି, ସେମାନଙ୍କ ସହିତ ସୀତାଙ୍କର ସୌନ୍ଦର୍ଯ୍ୟ ତୁଳନା କରିବାକୁ ଯାଇ ଅକୃତକାର୍ଯ୍ୟ ହୋଇ ବକ୍ରତୁଣ୍ଡ ହେଲେ । ସେ ଉପମା ସମୂହ ଅପମାନିତ ହୋଇ ବାହୁଡ଼ି ଯିବାକୁ ବସିଲେ । ସେମାନଙ୍କୁ ବର୍ଜନ କରାଯାଇ ନ ପାରେ'—ଏହା ଭାବି ଗଣେଶ ଉପମାମାନଙ୍କୁ ଠେଲି ଆଣି ନିଜ ଗର୍ଭରେ ରଖିବାକୁ ଲମ୍ବୋଦର ହୋଇ ଅଛନ୍ତି ତଥାପି ବର୍ଣ୍ଣି ନ ପାରି 'ଧନ୍ୟ ସୀତା' 'ଧନ୍ୟ ସୀତା'ମାଳା ଯୋଗେ ଏହି ଜପ କରୁଅଛନ୍ତି ।

୭ମ ପଦ—ସୀତାଙ୍କର ସୌନ୍ଦର୍ଯ୍ୟ ସହିତ ଉପମାମାନଙ୍କୁ ଲକ୍ଷ୍ୟ ଦେବା ଉଦ୍ଦେଶ୍ୟରେ ଶୁକ୍ର ବାରମ୍ବାର ଦୃଷ୍ଟି ଦେଇ ମଧ୍ୟ କଣା ହେଲେ । ଅବଶେଷରେ

ବାଳାରେ, ବିଶେଷ କବି ତୋ ଶୋଭିତ ।
ବହୁଲେ ଅନନ୍ତ ଅନନ୍ତ ଲପନ ବର୍ଣ୍ଣି ଅଶକ୍ତେ ଲଜ୍ଜାଯୁକ୍ତ । ୭ ।
ବିଦ୍ୟାବିଶାରଦା ଶାରଦା ଶାରଦା ବିନୟୀ ଧରିତନୟୀ ! ହେଲେ ତୋତେ ।
ବଡ଼ିମା ରକ୍ଷଣେ ସୁଷମା ଅସମା ଉପମା ଅଙ୍ଗୀକାର କଲେ ।
ବାଳାରେ, ବତ୍ସଳା ହେଲେ ଉକ୍ତିଯୁକ୍ତେ ।
ବିନ୍ୟାସ କରନ୍ତି କବିତ୍ୱ ଗୁମ୍ଫିତ କବି ସମ୍ମତେ ମତମତେ । ୮ ।
ବିଶ୍ରମ୍ଭ ପଦର ଗମନେ ଆଦର କର କେ ନୂମନେ ଭଜଇ ।
ବିଶାଳ ଉରୁ କରେ ଗୁରୁ ଯୌବନ-କରୀ କୋକନଦ ଗ୍ରହଇ ।

---

୭ମ ପଦ—ଉଶନା—ଶୁକ୍ର । ଅନନ୍ତ—ଶେଷଦେବ । ଅନନ୍ତ ଲପନ—ବହୁସଂଖ୍ୟକ ମୁଖ ।

୮ମ ପଦ—ବିଦ୍ୟାବିଶାରଦା— ସମସ୍ତ ବିଦ୍ୟାରେ ପଣ୍ଡିତା । ଶାରଦା—ସରସ୍ୱତୀ । ଧରିତନୟୀ—ସୀତା । ସୁଷମା—ପରମାଶୋଭା । ବତ୍ସଳା—ସ୍ନେହଯୁକ୍ତା । ମତମତେ—ଇଚ୍ଛାନୁସାରେ ।

୯ମ ପଦ – ବିଶ୍ରମ୍ଭ—ସୁପ୍ରକଥା । କୋକନଦ—ରକ୍ତପଦ୍ମ ।

---

ଏକଦୃଷ୍ଟି କବି ( ଶୁକ୍ରଙ୍କର ଗୋଟିଏ ଚକ୍ଷୁ ) କୋହଇଲେ । ତାଙ୍କୁ ଅବା ତାହାଙ୍କ କବି ମଧ୍ୟରେ ଗଣନା କରିବା ? ଗୋ ସୀତେ ! ତୁମ୍ଭର ଶୋଭାକୁ ବର୍ଣ୍ଣନା କରିବା ନିମନ୍ତେ ଶେଷଦେବ ଅସଂଖ୍ୟ ମୁଖ ଧାରଣ କଲେ, ତଥାପି ତୁମ୍ଭ ଶୋଭାକୁ ବର୍ଣ୍ଣିବାକୁ ଯିବା ସମୟରେ ମୁଖ ଲଜ୍ଜାଯୁକ୍ତ ହେବାରୁ ବର୍ଣ୍ଣି ପାରିଲେ ନାହିଁ ।

୮ମ ପଦ—ହେ ସୀତେ ! ସର୍ବ ବିଦ୍ୟାରୂପିଣୀ ଶାରଦା 'ତୁମ୍ଭର ପରମା ଶୋଭା ସହିତ ସମସ୍ତ ଉପମା ଅସମାନ ଅଟନ୍ତି—ଏହା ଅଙ୍ଗୀକାର କରିବାକୁ ଯାଇ ତୁମ୍ଭ ପାଖରେ ବିନୟୀ ହେଲେ । ଏହାଦ୍ୱାରା ତାଙ୍କର ବଡ଼ିମା ରକ୍ଷା ପାଇଲା । ( ବିନୟୀ ହେଲେ ମଧ୍ୟ ବଡ଼ିମା ତୁଟା ନ ହୋଇ ବର୍ଦ୍ଧିତ ହେଲା ) । ହେ ବତ୍ସଳେ ସୀତେ ! ତୁମ୍ଭେ ତାଙ୍କର ଉକ୍ତିଯୁକ୍ତ ବାକ୍ୟରେ ସନ୍ତୁଷ୍ଟ ହେବାରୁ କବିମାନେ ଇଚ୍ଛାନୁସାରେ କବିତ୍ୱ ଗୁମ୍ଫିତ ନାନାପ୍ରକାରରେ ପ୍ରକାଶ କରୁଅଛନ୍ତି ।( କବିମାନେ ସରସ୍ୱତୀଙ୍କ ବର ପୁତ୍ର ) ।

୯ମ ପଦ—ସୀତାଙ୍କ ଗମନ ସମୟରେ ତାଙ୍କ ପାଦ ବିନ୍ୟାସକୁ ଗୃହଂ କେଉଁ ସଖୀ ସୁନ୍ଦରରେ ବହୁଅଛି,—ମନୋହର ଯୌବନ ହସ୍ତୀ ବିଶାଳ

ବାଳାର, ବୋଲେ କେ ନଖରେଖି ଅଙ୍ଗୁଳି ।
ବାଳିକା ମଣ୍ଡି ମାଳିକା କର ଗୁନ୍ଥି ଅଶୋକକଳିକାରୁ ଫୁଲ, । ୯ ।
ବହେଠନ ମୁଖ ପୟୋଧର ଶିଖ ଦେଖି କେତେ ଯୋଖି ଉପମା ।
ବିଷମସନ୍ତାପ ସମ୍ଭୂତେ ଶମ୍ଭୁର ଶୂନ୍ୟ ଖସି ଅସି ଚନ୍ଦ୍ରମା ।
ବାଳାର, ବଗଢ ହେଉଁ କୋଣେ ତୋଳା ।
ବିହରି ହରିଣ କି ବିଷଧାରଣି ବେନି ସଂଶୟ ଉପୁଜିଲା । ୧୦ ।
ବିଘଟନା ଲକ୍ଷ୍ଣକୁଟେ କେତେ ଦାସ ଗୁନ୍ଥି ଦେଇ ଗୁଚ୍ଛ ଅଳକ ।
ବିଲୋମଲୋମ ବର୍ଣ୍ଣସ୍ତୋମ ଏ କାମଦରକୁ କରତା ତାରକା ।

---

୧୧ଶ ପଦ—ଦକ୍ଷ—ନିପୁଣ ବା ପ୍ରବୀଣ । ବର୍ଣ୍ଣସ୍ତୋମ—ବର୍ଣ୍ଣସମୂହ । ଶାୟକ—ଖଡ୍ଗ । ବଶ୍ୟକେତୁ—କନ୍ଦର୍ପ । ଧନ୍ୱୀ—ଧନୁର୍ଦ୍ଧର । ଫରକ—ପ୍ରଭେଦ ।

---

ଉତ୍ତରୂପ ଥୋରହସ୍ତରେ ରକ୍ତପଦ୍ମକୁ ଗୁନ୍ଥୁଅଛି କି ? ତାଙ୍କ ପଦାଙ୍ଗୁଳିକୁ ନଖରେଖି କେଉଁ ସଖୀ କହିଲା,—ଅଶୋକ କଢ଼ିଠାରୁ କେଣି କାନ୍ତିଯୁକ୍ତ ପଦାଙ୍ଗୁଳିରେ ମାଳା ନିର୍ମାଣ କରି ଏ କନ୍ୟା ମଣ୍ଡୁଛି କି ।

୧୦ମ ପଦ—ଲଜ୍ଜା ହେତୁରୁ ସୀତାଙ୍କର ମୁଖ ଅଧୋଗତ ହୋଇ ସ୍ତନର ଅଗ୍ରଭାଗରେ ନିହିତ ଥିବାର ଦେଖି କେଉଁ କେଉଁ ନୃପତି ଉପମା ଦେଲେ, ମହାଦେବଙ୍କର ଅତିଶୟ ଗରଳ ତାପ ଜାତହେବାରୁ, ସନ୍ତାପ ଶାନ୍ତି ନିମନ୍ତେ ଶୂନ୍ୟରୁ ଚନ୍ଦ୍ରମା ଖସି ଆସୁଅଛନ୍ତି କି (ସ୍ତନ ଶମ୍ଭୁସହିତ ଓ ମୁଖ ଚନ୍ଦ୍ରମା ସହିତ ଉପମିତ) । ତାଙ୍କର ତୋଳା ଚକ୍ଷୁକୋଣରେ ଗତାଗତ ହେଉଥିବାରୁ ବୋଧହେଲା, ଚନ୍ଦ୍ରଙ୍କ ଦେହରେ ମୃଗ ବିହାର କରୁଅଛି କି ? ଅବା ଶିବଙ୍କ ବିଷଜ୍ୱାଳା ଅପସାରିତ ହୋଇ ଚାଲିଯାଉଅଛି କି ? ଏହିପରି ଦୁଇଟି ସନ୍ଦେହ ମନରେ ଜାତ ହେଲା ।

୧୧ଶ ପଦ—ମନୋହର ଚୂର୍ଣ୍ଣ କୁନ୍ତଳକୁ ( କୁଞ୍ଚିତ କେଶକୁ ) ଗୁନ୍ଥିଦେଇ କେତେକ ଚତୁର ସଖୀ ଲକ୍ଷ୍ୟ କଲେ ଯେ, ଏହା 'ଲୋମ ବିଲୋମ' ଓଲଟପାଲଟ ହୋଇ ରହିଥିବା ଅକ୍ଷର-ଶ୍ରେଣୀ । ଅଥ ମଧ୍ୟ ଏହା କନ୍ଦର୍ପ ଭୂପର ତାରକ ଓ କନ୍ଦର୍ପ ଭୂପର ଶାଣକଣ୍ଠି ଅଟେ । ( କେହି କେହି ଏହାକୁ ଦେଖି କନ୍ଦର୍ପ ପୀଡ଼ିତ ହେବ, ଅଥ ମଧ୍ୟ କାହାର କନ୍ଦର୍ପପୀଡ଼ା ଦୂର ହେବ ) । କନ୍ଦର୍ପ ଦେବଯୋଗରେ ଧନୁର୍ଦ୍ଧର, ମାତ୍ର ସୀତାଙ୍କର ଅଷ୍ଟାଂ ତଳକ ଖଡ୍ଗଧର

ବାଳାର, ବଶନ ଛଳକ ଶାସ୍ତ୍ର

ବଶ୍ଵକେତୁଙ୍କୁ ଧନ୍ଵୀ ବୋଲି କଇବେ ହୋଇବ କି ଏବେ ଫଳିବ ।୧୧।
ବୁଧାନେ ଉପମା ବଧାନେ ଅଣିଲେ କେଶ-ବେଣ-ଜାଲି ସିନ୍ଦୂରେ ।
ବପ୍ରଶରିଭୃତ ମଧ୍ୟ ପାଟସୂକ୍ଷ ସିହ୍ନାଁରୁ ଭୂଷିତ ଟୋପରେ ।
ବାଳାର, ବଣୀଣ୍ଡ ଟିଲପିଲମାଳ ।
ବକ୍ରୁହିତବଶେ ଇସ୍ପାଦ ଦନ୍ତାଳି ଉତ୍ତଂସ ଘେନ ଦଶେ ଫୁଲ ।୧୨।
ବଲଷିତ କଲେ ଷିତିପତିକୁଳେ ପ୍ରଦୀପ୍ତ ତାଟଙ୍କ ପଜାଇ ।
ବଶ୍ଵକେତୁତମ ଘୋଟିଭି ଜନରେ ପ୍ରସନ୍ନ ଦରଶନ ପାଇଁ ।
ବାଳା ଯେ, ବଇମ୍ବାଇ ବେନି ପ୍ରଦୀପ ।
ବହ୍ନ୍ୟଲତଭାସ୍ରି ରତନ ଫୁଣାରେ ଯତନ ଦଶଇ ସ୍ୱରୂପ ।୧୩।

---

୧୨ଶ ପଦ—ବୁଧାନେ—ପଣ୍ଡିତମାନେ । ବପ୍ରଚଞ୍ଚୁସୁତ—ସ୍ୱଳ୍ପ । ବକ୍ରୁହିତବଶେ—ହାଇମାରିବା ବ୍ୟାଜ ।

୧୩ଶ ପଦ—ଷିତିପତିକୁଳେ—ରାଜାମାନେ । ବଶ୍ୱକେତୁ—କନ୍ଦର୍ପ । ତମ—ଅନ୍ଧକାର ।

---

କେ ଉମାନ, ତେଣୁ କେହି ମନେକଲେ, କନ୍ଦର୍ପ ଏବେ ଖଡ୍ଗଧାରୀ ହେଲା କି ? (ସୀତା କନ୍ଦର୍ପଠାରୁ ଧନୁଶର ଛଡ଼ାଇ ନେଇ ତାହାର ଚିତ୍ରଚରିତ ଖଂଗ ଲେପ କଲେ କି ? ଏଠାରେ ସୀତାଙ୍କର ଲଲାଟପଟ୍ଟ ଫଳ ଓ ବଦନ ଖଣ୍ଡାରୂପେ କଳ୍ପିତ ।)

୧୨ଶ ପଦ—ପଣ୍ଡିତମାନେ କେଶରେ ମଣ୍ଡିତ ହୋଇଥିବା ମୋତିଜାଲି ଓ ସିନ୍ଦୂର ଗାରକୁ ଦେଖି ଉପମା ଦେଲେ, ସ୍ୱଳ୍ପ ମଧ୍ୟଦେଶ ପାଟସୂତ୍ରବ୍ୟାପ୍ତ ସିଅଁ ହୋଇଥିବା ଟୋପିରେ ଭୂଷିତ ହୋଇଅଛି କି ? (କେଶ ସ୍ୱଳ୍ପସଦୃଶ, ମୁକ୍ତାଜାଲି ଟୋପି ଓ ସିନ୍ଦୂରଗାର ପାଟସୂତା ସଦୃଶ ଉପମିତ) । ସୀତାଙ୍କର ବିପୁଳ ଫୁଲିଦାର ମାଳ ଓ କର୍ଣ୍ଣାବତଂସ ନାମକ ଭୂଷଣ ଦେଖି ମନେ ହେଲା,—ସେହି କେଶ—ସ୍ୱଳ୍ପ ହାଇ ମାରିବା ଛଳରେ ମୁଖ ମଧ୍ୟସ୍ଥିତ ଦନ୍ତର ଶୋଭାକୁ ଦେଖାଉ ଅଛି କି ?

୧୩ଶ ପଦ—ରାଜାମାନେ ସୀତାଙ୍କ କର୍ଣ୍ଣସ୍ଥିତ ଉଜ୍ଜ୍ୱଳ ତାଟଙ୍କ ଦ୍ୱୟକୁ ଦେଖି ଲକ୍ଷ୍ୟକଲେ,—କନ୍ଦର୍ପର ଅନ୍ଧକାରରେ ଆଚ୍ଛନ୍ନ ହୋଇଥିବା ଲୋକଙ୍କୁ ଆଲୋକ ଦେବାପାଇଁ ସୀତା ତାଙ୍କର କର୍ଣ୍ଣରେ ଦୁଇଟି ପ୍ରଦୀପ ଧାରଣ କରି ତାହାକୁ ରତ୍ନଫୁଣାରେ ପ୍ରଜ୍ୱଳିତ କରୁଅଛନ୍ତି କି ? ସେହି ଆଲୋକରେ ତାଙ୍କ ଶରୀର ସୁନ୍ଦର ଦିଶୁଅଛି ।

ବୀଚୀର ଓଷ୍ଠ ପଶ ତୋର ସୁରଙ୍ଗେ ପରମ୍ପରା ନାହିଁ କେ ଭଲ ।
ବଉଳ ତାମ୍ବୁଳେ କ୍ଷାଳିତ ବୁଦ୍ଧିବଳେ ଦେଉଛି ତାହା ଦର୍ପ ଦଳ ।
ବାଳାର, ବମ୍ବ ଗଣ୍ଡଗନ ଅନାଇ ।
ବଢ଼ନ୍ତି ରସ ହରଷ ହାସପୂର୍ଣ୍ଣ ସ୍ଥାନ ଏବେ ଲକ୍ଷ ମଣାଇ । ୧୪ ।
ବଲ୍‌ଗୁ ଚିବୁକେ କସ୍ତୁରୀ ଜାଣି କେହୁ ସୁମରେ ଭଲ କୁସୁମରେ ।
ବଶରେ ଯାଇଁ ଭ୍ରମର ଶ୍ୱାସବଶେ ପାତଙ୍ଗ ଲବଣ୍ୟ ଭ୍ରମରେ ।
ବାଳାର, କଳ୍ପମାଳା ଝୁଲୁ ଦେଖି ।
ବାନା ତରମ ମନୋରମ ପ୍ରଭାରେ ବନ୍ଧା କି ଏମନ୍ତ କେ ପୋଷି । ୧୫ ।
ବାଜନ୍ତି ରସନା ଉଚ୍ଚା ବରଜନା ନୂପୁର ପ୍ରଭୃତ ମାଧୁର୍ଯ୍ୟ ।
ବୋଲନ୍ତି ରସ ନା କଳା ନା ସୁମନା ହିପୁର ଶୋଭୁଛି ଏ ହେଜ ।

---

୧୪ଶ ପଦ—ସୁରଙ୍ଗେ—ରକ୍ତମାରେ । କ୍ଷାଳିତ—ଧୌତ । ବମ୍ବଗଣ୍ଡ—ଦର୍ପଣ ତୁଲ୍ୟ ଗଣ୍ଡମଣ୍ଡଳ । ରସ—ହେନ୍ତୁ ।

୧୫ଶ ପଦ—କଲ୍‌ଗୁ—ସୁନ୍ଦର । ତରମ—ପୃଷ୍ଠଦେଶ ।

---

୧୪ଶ ପଦ—( ପାନ ବୋଳରେ ରକ୍ତବର୍ଣ୍ଣ ଧାରଣ କରିଥିବା ଅଧରକୁ ଦେଖି ) କେହୁ ରାଜା ଭାବିଲେ, 'ଏହାଙ୍କ ଅଧର ସମାନ ଗାଢ଼ ରକ୍ତବର୍ଣ୍ଣ ପଦାର୍ଥ ଆଉ କିଛି ନାହିଁ । ତେଣୁ ତାମ୍ବୁଳ ଭକ୍ଷଣର ଛଳନାରେ ଏ ନିଜ ଅଧରକୁ ଧୋଇ ପାନର ଗର୍ବକୁ ଖର୍ବ କରି ଦେଉଛନ୍ତି ।' ତାଙ୍କର ଦର୍ପଣ ପରାୟ ଗଣ୍ଡମଣ୍ଡଳରେ ଅଙ୍କିତ ହୋଇଥିବା ମକରୀ ଚିତ୍ରକୁ ଅନାଇ କେଉଁ ରାଜା ବିଗୁର କଲେ, "ଅନୁରାଗ, ପ୍ରମୋଦ, ହାସ୍ୟ ଏ ତିନିହେଁ ଏକତ୍ରିତ ହୋଇ ଏକାକାର ଧାରଣ କଲେ—ଏ ଲକ୍ଷକୁ ମଧ୍ୟ ସେ ଶୋଭା ଫିଙ୍ଗି ଦେଉଅଛି । (ଏ ତିନିହେଁ ଏକାକାର ହୋଇ ମଧ୍ୟ ତା ସହିତ ସମାନ ନୁହନ୍ତି) ।"

୧୫ଶ ପଦ—ମନୋହର ଚିବୁକରେ ମୃଗମଦ ଭ୍ରମରୀକୁ ଗୃହିଁ କେଉଁ ରାଜା ଭାବିଲେ, 'ନାସିକାକୁ ତିଳ ଫୁଲ ମନେ କରି ଭ୍ରମବଶତଃ ଗୋଟିଏ ଭ୍ରମର ତା ପାଖକୁ ଯାଉ ଯାଉ ନିଶ୍ୱାସ ପବନର ଆଘାତରେ ତଳକୁ ଖସି ରୂପ ଚିବୁକ ମଧ୍ୟରେ ପଡିଗଲା କି ?' ପୁଣି ପୃଷ୍ଠ ଭାଗରେ ଲମ୍ବମାନ ଫୁଲ ସବୁ ଦେଖି ମନେ ହେଲା, ପୃଷ୍ଠ ଭାଗର ଶୋଭା ଛଟାରେ ଅନୁପମ ବୋଲି ତହିଁରେ କାନା ବନ୍ଧା ହୋଇଛି କି ?

୧୬ଶ ପଦ—ସୀତାଙ୍କୁ ସଖୀମାନେ ପ୍ରଦକ୍ଷିଣ ମଣାଇ ନେବା ସମୟରେ ରସନା, କଳା ଓ ନୂପୁର ବାଜିବା ଛଳରେ କହୁଅଛନ୍ତି, 'ହେ ରାଜାମାନେ ! ସୀତାଙ୍କଠାରେ ରସନା (ରସ ନାହିଁ)—ଏ କଥା ହେଲା । 'କଳାନା ସୁମନ'—

ବାଜାର, ବପୁସଙ୍ଗରଙ୍ଗୁ ପଣ୍ଡିତ ।
ବ୍ୟକତ ଭଙ୍ଗାଭଙ୍ଗ ଦନ୍ତ୍ୟକ୍ଷର ଯେ ଚ୍ୟୁତଦନ୍ତ୍ୟକ୍ଷରେ ମଣ୍ଡିତ । ୧୬ ।
ବୁଝି ଏ ଶବଦ ରାଜନେ ସ୍ତବଧ ବୀରାୟୁଧମାନ ପତନ ।
ବଦାବଦ ଯାଉଥିଲେ ଲାଜେ ବେଢି ଏ ଶୋଭା ହୁଅନ୍ତା ଦର୍ଶନ ।
ବାଳା ଯେ, ବରଣମାଳା ଧରିଥିଲେ ।
ବ୍ରୀଡ଼ାଯୁତେ ଉତକଣ୍ଠୀ ସୁକଣ୍ଠୀ ରାମ ଗଳାରେ ଲମ୍ବାଇଲେ । ୧୭ ।
ବର୍ଯ୍ୟା ପ୍ରବୀଣୀ ଜାଣିଅଜ ଅନାଇ ଯେ ଭଙ୍ଗୀ ଧୈର୍ଯ୍ୟ ଭଙ୍ଗି ହେଲା ।
ବାହୁଡ଼େ ହୁଡ଼େ ସେ ପଥରେ ମନ୍ଥରେ ମନ ପାଲଟ କରି ନେଲା ।

---

୧୭ଶ ପଦ—ବୀରାୟୁଧ—ବୀରମାନଙ୍କର ଅସ୍ତ୍ର ଶସ୍ତ୍ର । ବ୍ରୀଡ଼ା—ଲଜ୍ଜା ।
୧୮ଶ ପଦ—ବର୍ଯ୍ୟା—ସ୍ୱୟଂବରା । ଚମ୍ପାଦାମ—ଚମ୍ପାମାଳା । ଈଶ—ମହାଦେବ ପଦ ।

---

ଉତ୍ତମ କରି ମନକୁ ବଳାଅ ନାହିଁ—( ବଳା ଶବ୍ଦରେ ନା ଯୁମନ ଦନ୍ତ୍ୟ ହେବାରୁ ଅଭଙ୍ଗ ଦନ୍ତ୍ୟାକ୍ଷର ହେଲା ) । ନୂପୁର ଶବ୍ଦର ଆଦ୍ୟବର୍ଣ୍ଣ 'ନୂ' ଚ୍ୟୁତ ହୋଇ 'ଝ' ରହି ହେଲା ଓ ପ୍ରାନ୍ତରେ 'ଶୋଭୀ' ରହି ହୋଇ ଝ'ପୁରିଶୋଭି ହେଲା; ତେଣୁ ନୂପୁର କହିଲା, 'ଏ ଝ'ପୁରଶୋଭୀ' ( ଏ ଚ୍ୟୁତ ଦନ୍ତ୍ୟାକ୍ଷର ) । ( ଏରୂପରେ ଘଟନା, ବଳା ଓ ନୂପୁର ନାଦ ସ୍ଥଳରେ ଭଙ୍ଗ, ଅଭଙ୍ଗ, ଦନ୍ତ୍ୟାକ୍ଷର ଓ ଚ୍ୟୁତ ଦନ୍ତ୍ୟାକ୍ଷରରେ ରାଜାମାନଙ୍କୁ କହୁ ଅଛନ୍ତି, ଏ ଝ'ପୁର ଶୋଭନୀ ସୀତାଙ୍କଠାରେ ରସ ନାହିଁ କିମ୍ବା ମନ ବଳାଅ ନାହିଁ ) । ( ନିର୍ଜୀବ ପଦାର୍ଥ ସବୁ କିପରି କଥା କହିଲେ ? ) ସୀତାଙ୍କର ଅଙ୍ଗ ସଙ୍ଗରେ ରହି ସେମାନେ ପଣ୍ଡିତ ହୋଇ ଅଛନ୍ତି; ତେଣୁ ଭଙ୍ଗ, ଅଭଙ୍ଗ, ଦନ୍ତ୍ୟାକ୍ଷର, ଚ୍ୟୁତ ଦନ୍ତ୍ୟାକ୍ଷରରେ ମଣ୍ଡିତ ବାକ୍ୟମାନ କହିଲେ ।

୧୭ଶ ପଦ—ଏ ଶବ୍ଦ ( ଅଳଙ୍କାରମାନଙ୍କର ବାକ୍ଚାତୁରୀ ସ୍ଥଳରେ ଯେ ଶବ୍ଦ ହେଲା ) ବୁଝି ପାରି ରାଜାମାନେ ସ୍ତମ୍ଭୀଭୂତ ହୋଇଗଲେ । ତାହାଙ୍କ ହାତରୁ ବୀରର ଭୂଷଣ ଅସ୍ତ୍ର ଶସ୍ତ୍ର ସବୁ ଖସି ପଡ଼ିଲା । ସେମାନେ ପରସ୍ପରରେ କୁହାକୁହି ହେଲେ, "ଅମ୍ଭେମାନେ ଲଜ୍ଜାପାଇ ଏଠାରୁ ପଳାଇ ଯାଉଥିଲେ, ଏ ସୀତାଙ୍କ ଶୋଭା କିପରି ଦର୍ଶନ ହୋଇଥାନ୍ତା ?" ବରଣମାଳାଧାରିଣୀ ସୁକଣ୍ଠୀ ସୀତା ଲଜ୍ଜାଯୁକ୍ତ ହୋଇ ଖାଲି ଉଦ୍‌ବେଗ ମନରେ ଗୁହିଁଥିବା ରାମଚନ୍ଦ୍ରଙ୍କ ଗଳାରେ ମାଳା ଲମ୍ବାଇ ଦେଲେ ।

୧୮ଶ ପଦ—ସ୍ୱୟଂବରା ଶୋଭଙ୍ଗୀ ସୀତା ( ବରଣମାଳା ଦେବା ସମୟରେ ( ଜାଣିଅଜ ଅନାଇଁବାରେ ଯେ ଭଙ୍ଗୀ ପ୍ରକାଶ କଲେ, ତାହାର

ବାହୁର, ବିମଳ ଚମ୍ପାଦାମ ଭ୍ରବ ।
ବାହୁଡ଼ାଇ ଧନ ଉପ ହେବା ଜନ ଦେବ କୁ ବର୍ତ୍ତେ ସମ୍ଭବ । ୧୮ ।
ବର୍ତ୍ତୀ ହୋଇ ଗଲା ଯୁବତୀରତନ ନେତ୍ରରୋଗ ଗଲା ଜବଣି ।
ବସ୍ତ୍ରାପନ ରଣ ଜାଲିକ ଯେମନ୍ତ ଦେଖାଇ ହରଇ ତତ୍କ୍ଷଣ ।
ବାଳାର, ବିଲୋକନ ସେହି ପ୍ରକାର ।
ବିସର୍ଜନେ ସର୍ବ ରାଜନେ ଗମିଲେ ସ୍ଥିତ ରାମ ଅଗ୍ରମପୁର । ୧୯ ।
ବଡ଼ ମଙ୍ଗଳ କାଲି ପର କରିବା ବିଶ୍ୱାମିତ୍ରେ କହେ ଜନକ ।
ବିରୋଧିଲେ ଶୁଣି ସେ ବାଣୀ ଲକ୍ଷ୍ମଣ କି ତତ୍ତ୍ୱ ନ ଜାଣି ଜନକ ।

---

୧୯ଶ ପଦ—ବର୍ତ୍ତୀ—ନେତ୍ରାଞ୍ଜନ ବା ନେତ୍ରରୋଗର ଔଷଧ ବିଶେଷ । ବସ୍ତ୍ରାପନ—କୁହୁକ । ଅଗ୍ରମପୁଅ—ଉପବନସ୍ଥିତ ଗୃହ ।

---

ରାମଚନ୍ଦ୍ରଙ୍କର ଧୈର୍ଯ୍ୟଭଙ୍ଗ ହେଲା । ବରଣମାଳା ଦେଇ ସାରି ସୀତା ମଣ୍ଡପ ତଳେ ଫେରିଗଲାବେଳେ ପଥ ହୁଡ଼ି ଗଲେ; କାରଣ ସେ ରାମଚନ୍ଦ୍ରଙ୍କୁ ନିଜ ମନ ଦେଇ ପକାଇଥିଲେ । ( ରାମଚନ୍ଦ୍ରଙ୍କର ଦର୍ଶନରେ ବିହ୍ୱଳ ହୋଇ ପଡ଼ିଥିଲେ ) । ସୀତା ଫେରି ଯିବାରୁ ରାମଚନ୍ଦ୍ର ଭାବନା କଲେ—ସେ ଚମ୍ପାମାଳା ସଦୃଶ ବାହୁ ବୁଲାଇ ମୋ ଗଳାରେ ନ ଦେଇ ଫେରାଇ ନେଲା କାହିଁକି ? ଈଶ୍ୱରଙ୍କୁ ହିଁନା ଚମ୍ପା ମାଳା ଦିଅ ଯାଏ, ମୁଁ ଯେଉଁ ଦିନ 'ଈଶ' ସ୍ୱାମୀ ହେବି, ସେହି ଦିନ ସୀତା ସେ ମାଳାକୁ ମୋ ଗଳାରେ ଦେବ ।

୧୯ଶ ପଦ — ଯୁବତୀରତନ ସୀତା ନେତ୍ରାଞ୍ଜନ ସ୍ୱରୂପ ହେଲେ, ତଦ୍ୱାରା ରାମଚନ୍ଦ୍ରଙ୍କ ନେତ୍ର ରୋଗ ଦୂର ହେଲା ( ସୀତାଙ୍କୁ ଦେଖିବା ପାଇଁ ରାମଙ୍କର ଯେ ବ୍ୟାକୁଳତା ଥିଲା, ତାହା ଦୂର ହେଲା ) । ଐନ୍ଦ୍ରଜାଲିକ ଯେପରି କୁହୁକ ରଚନା କରି, କିଛି ଜିନିଷ ଦେଖାଇ ହଠାତ୍ ହରଣ କରି ନିଏ, ସେହିପରି ସୀତାଙ୍କର ଦର୍ଶନ ହେଲା ( ସୀତା ହଠାତ୍ ସଭା ମଧ୍ୟରୁ ଆସି ଦେଖା ଦେଇ ପୁଣି ଚାଲିଗଲେ ) । ତତ୍ପରେ ସଭା ଭଗ୍ନ ହେବାରୁ ରାଜାମାନେ ବାହୁଡ଼ି ଗଲେ ( ସ୍ୱ ସ୍ୱ ଦେଶକୁ ଫେରିଗଲେ ) । ରାମଚନ୍ଦ୍ର ଜନକଙ୍କ ଉପବନରେ ଥିବା ଗୃହରେ ରହିଲେ ।

୨୦ଶ ପଦ—ଜନକ ବିଶ୍ୱାମିତ୍ରଙ୍କୁ କହିଲେ, 'ବିବାହୋତ୍ସବ କାଲି କିମ୍ବା ପଅର ଦିନ କରିବା ।' ସେ କଥାରେ ବାଧା ଦେଇ ଲକ୍ଷ୍ମଣ କହିଲେ, 'ପିତା ନ ଜାଣିଲେ ବିବାହ କିପରି ହେବ ?' ( ଏହାଦ୍ୱାରା ପିତୃଭକ୍ତିର ପରାକାଷ୍ଠା

ବହନ୍ତୁ, ବନ୍ଧନ ଶତାନନ୍ଦ ହେଲେ ।
ବିଂଶ ପଦେ ଶେଷ ଶେଷଶାୟୀ ଚିନ୍ତା ଉପେନ୍ଦ୍ର ଭଞ୍ଜ କହିଲେ । ୨୦ ।

---

## ଦ୍ୱାଦଶ ଛାନ୍ଦ

### ରାଗ—ବରାଡ଼ୀ, ଆଷାଢ଼ଶୁକ୍ଳବାଣୀ

ଝିଲ୍ଲି ବନ ପାର ବିଳମ୍ବ ଶୁଣି । ବଳାବଳୀ ହେଜେ ରମଣୀମଣି ।
ବିଭାବରୀଚରୀ ଭୋଟିଲା ଗ୍ରାସେ । ଝିଲ୍ଲିର ସ୍ୱରରୁ ନିଦ୍ରା ନ ଆସେ ।
ବିରହେ ଛଟପଟ ସେ ।
ରାମ ହେ ! ରକ୍ଷେ ସେ ତାଡ଼କା ନାଶେ । ୧ ।
ବାସରେ ନିନ୍ଦେ ସ୍ୱଜନସରୋଜ ଯେ । ବାସରେ ତା ପାଶେ ଭ୍ରମ ଉପୁଜେ ।
ବାସରେ ମୃଗ କରଇ ବିରୂର । ବାସରେ ମୃଗ ନୋହୁଁ ପଞ୍ଚଶର ।

---

୧ମ ପଦ—ବିଲ୍ୱବନ—ରାତି । ବିଭାବରୀଚରୀ—ରାତିଚରୀ ବା ରାକ୍ଷସୀ ।

---

ଜଣାଗଲା ) । ( ଏହା ଶୁଣି ଜନକ ରାଜା ଶତାନନ୍ଦଙ୍କୁ ଦଶରଥଙ୍କ ପାଖକୁ ପଠାଇଲେ ) । 'ଶତାନନ୍ଦ' ଗୌତମ ମହର୍ଷିଙ୍କ ପୁତ୍ର ଶୀଘ୍ର ଦୂତ ହୋଇଗଲେ । ଉପେନ୍ଦ୍ର ଭଞ୍ଜ ନାରାୟଣଙ୍କୁ ଚିନ୍ତା କରି ଏ ଛାନ୍ଦ ବିଂଶ ପଦରେ ଶେଷ କଲେ ।

---

## ଦ୍ୱାଦଶ ଛାନ୍ଦ

୧ମ ପଦ— ରମଣୀଶ୍ରେଷ୍ଠା ସୀତା କରଣମାଳା ହୋଇ ସାରିଲା ପରେ ଝିଙ୍କାର ବିଳମ୍ବରେ ହେଜ ବୋଲି ଶୁଣିଲେ । ରାତି ହେବାରୁ ସେ ମନେ କଲେ, 'ରାତିରୂପୀ ରାକ୍ଷସୀ ମୋତେ ଗ୍ରାସ କରିବା ପାଇଁ ଆସି ଆଗର୍ଜଣ କଲା କି ?" ଏହାପରେ ବିଶେଷ ଭାବନା କରିବାରୁ ନିଦ ହେଲା ନାହିଁ । ସେ ବିରହ ଜଳରେ ଭାସି କହିଲେ, "ହେ ରାମ, ତୁମ୍ଭେ ତାଡ଼କା ନାଶରୁ ମୁନିମାନଙ୍କୁ ରକ୍ଷା କରିଛ, ମୋତେ ଏ ରାତି-ରାକ୍ଷସୀ ଭୟରୁ ରକ୍ଷା କର । ( ମୋର କାମ ବିକାର ବିନାଶ କର ) ।'

୨ୟ ପଦ—ଯାହାଙ୍କର ଅଙ୍ଗ ସୌରଭଦ୍ୱାରା ସଦ୍ୟ ବିକଶିତ ପଦ୍ମ ପରାସ୍ତ ହୁଏ, ସେହି ସୀତା ନିଜର ବଦନକୁ ଜଣନ ଭଲ ପର ମନେ କଲେ ।

ବିନାଶିଲେ ପୁନଃ ।
ବିନା ଗତିରେ ତ ଗଲା ଜୀବନ । ୨ ।
ବିରୋଚନ ହେଲା ସୁଧା ଆହାର । ବିରୋଚନକଣ କର୍ପୂର ଚୂର ।
ବିରୋଚନ ଉଦେ ହୋଇବା ଗୃହୁଁ । ବିରୋଚନ କର ନ ଛାଡ଼େ କହି ।
ବୟସୀଙ୍କ ସାର ।
ବୟସି । ମେରୁ କି ହେଲା ଆମ୍ଭ ଘର । ୩ ।
ବସନ୍ତ ଋତୁ ବର୍ଣ୍ଣ ମଣ୍ଡପରେ । ବସନ୍ତ ରସାଳ ତରୁ ଉପରେ ।
ବସନ୍ତଦୂତ କୃତ ଉଚ୍ଚସ୍ୱରେ । ବସନ୍ତବସନା ଅଗସ୍ତ୍ୟ ସ୍ମରେ ।
ବ୍ୟାଧିଘାତଧର ।
ବ୍ୟାଧିଘାତ ଗୁଚ୍ଛୁଁ ଉଡ଼ୁ ଭ୍ରମର । ୪ ।

---

୨ୟ ପଦ—ବାସରେ—ସୁଗନ୍ଧରେ । ବାସରେ—ବସ୍ତ୍ରରେ । ବାସରେ—ଦିବସରୁ । ବାସରେ—କେଳିଗୃହରେ । ପଞ୍ଚଶର—କନ୍ଦର୍ପ ।

୩ୟ ପଦ—ବିରୋଚନ—ଅରୁଣ । ବିରୋଚନକଣ—ଅଗ୍ନିକଣା । ବିରୋଚନ—ଚନ୍ଦ୍ର । ବିରୋଚନ କର—ସୂର୍ଯ୍ୟକିରଣ ।

୪ର୍ଥ ପଦ—ରସାଳତରୁ—ଆମ୍ବଗଛ । ବସନ୍ତଦୂତ—କୋକିଳ । ବସନ୍ତ-ବସନା—ପୀତବସନା । ବ୍ୟାଧିଘାତ—ସୁନାରୀଗଛ ।

---

ଦିବସରୁ ଯୁଗ ସମାନ ବିଚାର କଲେ । ପୁଣି ଭାବିଲେ, କେଳି ଗୃହରେ (ରାମଚନ୍ଦ୍ରଙ୍କ ସହିତ) ମିଳନ ନ ହୋଇଣ କନ୍ଦର୍ପ ମୋତେ ବିନାଶ କଲେ, ବିନା ଗତିରେ ମୋର ଜୀବନ ଯିବ ସିନା ! (ସ୍ତ୍ରୀର ଏକମାତ୍ର ଗତି ସ୍ୱାମୀ) ।

୩ୟ ପଦ—ସୀତାଙ୍କୁ ଅମୃତତୁଲ୍ୟ ଭୋଜନ ଅରୁଚି ହେଲା, କର୍ପୂର ଚୂର୍ଣ୍ଣ ଅଗ୍ନିକଣା ପରି ବୋଧ ହେଲା । ଚନ୍ଦ୍ର ଉଦିତ ହେବାର ଦେଖି ସୀତା ଜଣେ ବିସ୍ମିତା ସଖୀକୁ କହିଲେ, "ହେ ସଖୀ ! ଆମ୍ଭ ଗୃହ ମେରୁପର୍ବତ ହେଲା କି ? ତେଣୁ ସୂର୍ଯ୍ୟ କିରଣ ସର୍ବଦା ରହିଅଛି । (ମେରୁ ପର୍ବତରେ ସୂର୍ଯ୍ୟ କିରଣ ସର୍ବଦା ରହିଥାଏ । ବିରହବଶରୁ ସୀତା ଚନ୍ଦ୍ରର ସୁଶୀତଳ ଜ୍ୟୋତ୍ସ୍ନାକୁ ସୂର୍ଯ୍ୟର ପ୍ରଖର କିରଣ ପ୍ରାୟ ମନେ କଲେ) ।

୪ର୍ଥ ପଦ—କୋକିଳ ବସନ୍ତକାଳ ହେତୁରୁ ମଉଳୋଇ ଆମ୍ବ ଗଛରେ ବସି ଉଚ୍ଚସ୍ୱରରେ ଡେ କରନ୍ତେ, ବସନ୍ତବସନା ସୀତା ଅଗସ୍ତ୍ୟ ଋଷିଙ୍କ ସ୍ମରଣ କଲେ । (ବଜ୍ର ଶବ୍ଦ ହେଲାବେଳେ ଅଗସ୍ତ୍ୟ ଋଷିଙ୍କୁ ସ୍ମରଣ କରାଯାଏ—ବିରହ ହେତୁ କୋକିଳ ରବ ସୀତାଙ୍କୁ ବଜ୍ର ଶବ୍ଦ ପ୍ରାୟ ପ୍ରତୀତ ହେଲା) । ଭ୍ରମର ଗୁଞ୍ଜନ କରି ସୁନାରୀ ଫୁଲ ପାଖରେ ଉଡ଼ନ୍ତେ, ତଦ୍ଦ୍ୱାରା ତାଙ୍କର ଯନ୍ତ୍ରଣା ବର୍ଦ୍ଧିତ ହେଲା ।

ବାରେ ବାରେ ଶିବ ଶିବ ସେ ଘୋଷେ । ବାରେ ବାରେ ବ୍ରତମାନ ମନାସେ
ବାରେ ବାରେ ନାହିଁ ମୂର୍ଚ୍ଛାରେ ସଖୀ । ବାରେ ବାରେ ଭୟ ସଂଶୟେ ରଖି ।
ବନରୁହନାଭ ।
ବନଜାକ୍ଷୀ ଦେଖି ଶମ୍ଭୁ ଗରୁଡ଼ । ୫ ।
ବିଶ୍ୱସ୍ତ ସଖୀଜନଙ୍କୁ କହିତ । ବିଶ୍ୱସ ଜନେ ବୋଲନ୍ତି ମରୁତ ।
ବହଇ ପୁଣ ବାୟୁ ନାମ ସେହୁ । ବହଇ ମନ୍ଦଗୁଣେ ହୋଇ ସ୍ନେହୁ ।
ବଧିରେ ଅସୁର ।
ବଧିରେ ସୁର କଲେ ପୁରନ୍ଦର । ୬ ।

---

୫ମ ପଦ—ବାରେ ବାରେ—ପୁନଃ ପୁନଃ । ବାରେ ବାରେ—ରବି ସୋମାଦି ବାରମାନଙ୍କରେ । ବାରେ ବାରେ—ନିବାରଣ ବା ନିଷେଧ କରିବାରେ । ବନରୁହନାଭ—ପଦ୍ମନାଭ । ବନଜାକ୍ଷୀ—ପଦ୍ମାକ୍ଷୀ ।

୬ଷ୍ଠ ପଦ—ମରୁତ—ପବନ, ନଷ୍ଟ ହେଉ । ବଧିରେ—ମୂର୍ଚ୍ଛା ହେଲ । ସୁର—ଦେବତା । ପୁରନ୍ଦର—ଇନ୍ଦ୍ର ।

---

୫ମ ପଦ—ଏହି ବିରହ ତାପରୁ ରକ୍ଷା ପାଇବା ପାଇଁ ସୀତା ଥରକୁ ଥର ଶିବ ନାମ ଉଚ୍ଚାରଣ କଲେ । ପୁଣି ରବି, ସୋମ ଇତ୍ୟାଦି ବାରମାନଙ୍କରେ (ଦିନାଧିପତିଙ୍କ ସନ୍ତୁଷ୍ଟି ପାଇଁ) ବ୍ରତ ମନାସି କଲେ । ବାରମ୍ବାର ମୂର୍ଚ୍ଛା ହେବାରୁ ସଖୀମାନେ ଭୟ ଓ ସଂଶୟ ଚିତ୍ତରେ ଅସ୍ଥିର ହୋଇ ପଙ୍ଖା କଲେ ଓ ପାଣି ଛିଟି ଚେତା କରାଇଲେ । ପୁଣି କହିଲେ, "ହେ ସଖୀ ! ତୁମ୍ଭେ ପଦ୍ମନାଭଙ୍କୁ ଦେଖି ସର୍ପ ମନେ କରି ଗରୁଡ଼ଙ୍କୁ ଚିନ୍ତା କରୁଅଛ ।" (ସାମାନ୍ୟ କଥାକୁ ଅତି ବଡ଼ ବୋଲି ମନେ କରୁଅଛ ।)

୬ଷ୍ଠ ପଦ—(ବିରହ ଯନ୍ତ୍ରଣା ଯୋଗୁ ମୃଦୁ ମନ୍ଦପବନ ସୁଦ୍ଧା ପୀଡ଼ାଦାୟକବୋଧ ହେବାରୁ) ସୀତା ତାଙ୍କର ବିଶ୍ୱାସୀ ସଖୀମାନଙ୍କୁ କହିଲେ, "ସଂସାରର ଲୋକମାନେ 'ମରୁତ' ପବନ ବୋଲି ଯାହା କହନ୍ତି ତାହା 'ମରୁତ'--ନଷ୍ଟ ହେଉ । ପୁଣି ସେ ବାତ ଅର୍ଥାତ୍ ଗୋଟାଏ ବ୍ୟାଧି ନାମକୁ ଧାରଣ କରେ, (ତେଣୁ ସେ ପୀଡ଼ାଦାୟକ ଅଟେ) ଓ ମନ୍ଦ ଗୁଣକୁ ସ୍ନେହରେ ରଖିଅଛି, ମନ୍ଦ ମଧ୍ୟ ଅଟେ । ସ୍ୱଭାବରେ ସେ ଅସୁର ଅଟେ, ଇନ୍ଦ୍ର ତାହାକୁ ମିଛରେ ଦେବତା କଲେ କିନା ! (ଦେବତାମାନେ ଅଦିତି ଗର୍ଭରୁ ଜାତ । ପବନ ଦିତି ଗର୍ଭରୁ ଜନ୍ମ ହୋଇଥିଲେ—ତେଣୁ ଅସୁର, ମାତ୍ର ପବନ ଗର୍ଭରେ ଥିଲାବେଳେ ଇନ୍ଦ୍ର ତାଙ୍କୁ ଅଣଚାଶ ଖଣ୍ଡ କରି ଛିଣ୍ଡିଥିଲେ, ପରେ ଦିତିଙ୍କ ତୋଷରୁ ଜର ତାଙ୍କୁ ଅମୃତ ଖୁଆଇ ଦେବତା କଲେ । )

ଦ୍ୱିଜେନ୍ଦ୍ରକର ଗୋଷ୍ଠାଏ ଅଛୁର । ବିଶ (ସ)ଦ ମାର୍ଗରେ ଗମନ କର ।
ବିଦ୍ୟାଗୁରୁ ପତ୍ନୀ ହରଣେ ଅଗ । ବିଦ୍ୟାଂଶୁ କଳଙ୍କ ଧରଇ ଅଙ୍ଗ ।
ବିଷର ସୋଦର ।
ବିସୋର ନୁହେ ବାରୁଣୀ ଅଧର । ୭ ।
ବିଗ୍ରହଯାକହୁଁ ଯାଇଛୁ ଗୋଡ଼ା । ବିଗ୍ରହ ମୋର ସେ ପ୍ରେତର ଲୋଡ଼ା ।
ବାମଲୋଚନା ବୋଲି ଲଜ୍ଜ ନାହିଁ । ବାମମାର୍ଗରେ ଯୋଗଭଙ୍ଗ ଧାଇଁ ।
ବିହଗ ଯୋଡ଼ାଏ ।
ବିହଗ ପୁଣି ଏକାକୀ ପୀଡ଼ାଏ । ୮ ।

---

୭ମ ପଦ—ଦ୍ୱିଜେନ୍ଦ୍ରକର—ଚନ୍ଦ୍ର । ବିଶଦମାର୍ଗ—ଆକାଶମାର୍ଗ । ବିଷଦମାର୍ଗ—ଅସନ୍ମାର୍ଗ । ବାରୁଣୀ—ପଶ୍ଚିମଦିଗ, ମଦ୍ୟବିଶେଷ ।

୮ମ ପଦ—ବିଗ୍ରହଯାକ—ଶରୀରଯାକ । ବିଗ୍ରହ—କଳହ । ପ୍ରେତ—କନ୍ଦର୍ପ । ବାମଲୋଚନ—ସ୍ତ୍ରୀ । ବାମମାର୍ଗରେ—ଅସନ୍ମାର୍ଗରେ । ବିହଗ—ପକ୍ଷୀ ।

---

୭ମ ପଦ—( ଚନ୍ଦ୍ର କରଣ କଷ୍ଟଦେବାରୁ ଚନ୍ଦ୍ରକୁ ଗାଳିଦେଇ ) ପୁଣି କହୁଲେ,—ଆକାଶ ମାର୍ଗରେ ଗମନ କରୁ ନାହଁ ଯେ ସେ ଅସତ୍ ମାର୍ଗରେ ଗମନ କରୁଅଛି । ସେ ବିଦ୍ୟାଗୁରୁ ବୃହସ୍ପତିଙ୍କ ପତ୍ନୀ ତାରାଙ୍କୁ ହରଣ କରିଥିଲେ, (ଏପରି ପାପୀ) ତେଣୁ ନିଜ ଅଙ୍ଗରେ କଳଙ୍କ ଧାରଣ କରିଅଛନ୍ତି । ପୁଣି ବିଷର ଭାଇ ଅଟନ୍ତି ( ବିଷ ଓ ଚନ୍ଦ୍ର ଉଭୟେ ସମୁଦ୍ରରୁ ଜାତ )—( ବିଷ ବୃକ୍ଷରୁ କିପରି ବା ଛାଡ଼ିବେ ? ) ପଶ୍ଚିମ ଦିଗରୂପ ମଦିରାକୁ ଅଧର କରିବାରେ ସେ ସର୍ବଦା ତତ୍ପର (ସେ ମଦୁଆ ଅଟନ୍ତି) ।

୮ମ ପଦ—ସର୍ବାଙ୍ଗ ଦଗ୍ଧ ହୋଇଥିବା କନ୍ଦର୍ପରୂପୀ ପ୍ରେତ ମୋ ସହିତ ଶତ୍ରୁତାଚରଣ କରୁଅଛି । ( ମହାଦେବଙ୍କ ଯୋଗଭଗ୍ନ କରିବାକୁ ଯାଇ କନ୍ଦର୍ପ ଦଗ୍ଧ ହୋଇଥିଲେ ) । ସ୍ତ୍ରୀ ବୋଲି ମୋତେ ଜାଣି ଭୁଲା (ସ୍ତ୍ରୀ ଅବଧ୍ୟ) ସେ ମୋତେ ଲଜ୍ଜା ନାହିଁ । ମନ୍ଦ ମାର୍ଗରେ ଚାଲି ମୋତେ ସଙ୍ଗୀଚ୍ଛା କରୁଅଛି । ପୁଣି ଯୋଡ଼ାଏ ପକ୍ଷୀ—ଭ୍ରମର ଓ କୋକିଳ ମୋତେ ଏକାକିନୀ ଦେଖି ପୀଡ଼ା ଦେଉଅଛନ୍ତି ।

ବକୁଳ ଆସବ ପାନେ ତେ ରଟେ । ବ୍ୟାକୁଳ ତାହା ଜଣାଇ କରଟେ ।
ବମ୍ଫ କରେ ମଧୁରେ ଧୂଆନ । ବ୍ୟସନେ ପାନ ଯେ ନ କରେ ଆନ
ବଧ ମୋ ଇଚ୍ଛନ୍ତି ।
ବୃଜନା ପାଞ୍ଚ ପାଞ୍ଚ କରନ୍ତି । ୯ ।
ବୋଧଇ ଅଳୀ ଯେ ଏହୁ ନିମିତ୍ତ । ବପାବର୍ମ ପାତ ହେଲା ମିତ ।
ବଳି କର୍ମେ ଅଛି ଇନ୍ଦ୍ରପଦବୀ । ବାସବ ବଜ୍ର ପ୍ରହାରେ ନ ଦ୍ରବି ।
ବାମନ ରକ୍ଷଣେ ।
ବମନ ନୋହୁ ବସ୍ୱର ତକ୍ଷଣେ । ୧୦ ।

---

୯ମ ପଦ—ବକୁଳ ଆସବ—ବକୁଳ ମକରନ୍ଦ ଅର୍ଥାତ୍ ମଦ୍ୟ । କରଟ—କାକ । ମଧୁ—ପୁଷ୍ପରସ ରୂପ ମଦ୍ୟ । ବୃଜନା—ପାପୀ ।

୧୦ମ ପଦ—ବପାବର୍ମ—ଦୁର୍ଦ୍ଦଶା । ପାତ—ଶେଷ ।

---

୯ମ ପଦ—କାକ ପାଳିତ କୋକିଳ ଆମ୍ବ ବଉଳର ମଧୁ ପାନ ପୂର୍ବକ ଧ୍ୱନି କରି ମୋତେ ବ୍ୟାକୁଳ କରୁଅଛି । ( କାକଦ୍ୱାରା ପାଳିତ ହେବାରୁ ତାର ମନ୍ଦଗୁଣ କିଛି ଅଛି, ପୁଣି ମଦ୍ୟପାନ କରି ଉନ୍ମତ୍ତ ହୋଇଅଛି ) । ଭ୍ରମର ପୁଷ୍ପରସ ରୂପକ ମଦ୍ୟ ବ୍ୟତୀତ ଅନ୍ୟରସକୁ ପାନ କରେ ନାହିଁ । ତେଣୁ ସେ ସର୍ବଦା ମଦୁଆ ଅଟେ । ସେହି ମଦୁଆ ଭ୍ରମର ମଧ୍ୟ ମୋତେ କଷ୍ଟ ଦେଉଅଛି । ପବନ, ଚନ୍ଦ୍ର, କାମ, କୋକିଳ ଓ ଭ୍ରମର ଏହି ପାଞ୍ଚପାପୀ ମୋତେ ହତ୍ୟା କରିବା ପାଇଁ ପାଞ୍ଚ କରୁଅଛନ୍ତି ।

୧୦ମ ପଦ—ସୀତାଙ୍କ ବ୍ୟାକୁଳତା ଦେଖି ବୋଧ ଦେଇ କହୁଛି, 'ହେ ସଖି ! ତୁମ୍ଭ ଦୁର୍ଦ୍ଦଶା ଶେଷ ହେଲାଣି । ବଳିରାଜା ଭାଗ୍ୟରେ ଇନ୍ଦ୍ରପଦବୀ ପ୍ରାପ୍ତି ଯୋଗ ଥିବାରୁ ସେ ଇନ୍ଦ୍ରଙ୍କ ବଜ୍ରକୁ ଭୟ କରୁ ନ ଥିଲେ । ( ତୁମ୍ଭେ ପବନାଦିମାନଙ୍କୁ ଡରୁଛ କାହିଁକି ? ଅର୍ଥାତ୍ ଡର ନାହିଁ ) । ବଳି ବାମନଙ୍କ ଦ୍ୱାରା ରକ୍ଷିତ ହୋଇଥିଲେ, ( ତୁମ୍ଭେ ସେହିପରି ରକ୍ଷା ପାଇବ ନାହିଁକି ? ) ବିରସମନା ନ ହୋଇ ଏହା ମୁହୂର୍ତ୍ତେ ମାତ୍ର ବସ୍ୱର କର । ( ବଳି ରାଜା ବଜ୍ର ପ୍ରହାରକୁ ନ ଡରି ରହିଥିବାରୁ ବାମନ ତାଙ୍କୁ ରକ୍ଷା କରିଥିଲେ । ତୁମ୍ଭେ ପବନାଦିମାନଙ୍କୁ ନ ଡରି ଧୈର୍ଯ୍ୟ ଧରି ରହିଲେ ରାମଚନ୍ଦ୍ର ଶରୀର ହେଉ ରୂପ ଇନ୍ଦ୍ର ସମ୍ପତ୍ତି ଦାନ କରିବେ । ତୁମ୍ଭେ ଅଧୈର୍ଯ୍ୟ ହୁଅ ନାହିଁ ) ।

ବୋଧ ହେଲା ଉତ୍ତ ସାତ୍ତ୍ୱିକେ ତାର । ବିବ୍ବୋକ ହେଲା ବେନେ ହାସ ତାର
ଜଗତ ପ୍ରସିଦ୍ଧ ପ୍ରସ୍ଥିତ ତାର । ଚେତନ ପାଣି ବେଢେ ଯଥା ଭାର
ବେଦନାରୁ ତାର ।
ବୋଲି ବିଦେହ ସ୍ତୁତ ସେ ବିଧାତାର । ୧୧ ।
ବଇବର୍ଣ୍ଣ୍ୟ ଦଶା ଅବକାଶର । ବର୍ଣ୍ଣ ଦିଶିଗଲା ଦେହେ ଧୂସର ।
ବଇହେଲା କାନ୍ତି କର କେଶର । ବିନସ୍ତୁ ପାଦେ ଦେଖି ସାରସର ।
ଜଳ ନିବାସର ।
ଭଏ ବାହୁଡ଼ାଇ ନେବା ଆଶର । ୧୨ ।
ପୟୋଜରେ ନବ ପାଣ୍ଡୁ ବିଳାସ । ବିଫଳ କି ଶିବ ସେବା ତୁଳାଶ ।
ବହାଇ ଅଣିଲା ଗିରି କୈଳାସ । ଦେହୁଁ ହେଲ ଜାତ କୃକଳାସ ।

---

୧୨ଶ ପଦ—ବଇହେଲା—ବୈର କଲା । ସାରସ—ପଦ୍ମ । ନିବାସର—ଗୃହର ।

୧୩ଶ ପଦ —ପୟୋଜ—ସ୍ତନ । ତୁଳାଶ—ତୁଳନା କରିବା ଇଚ୍ଛା । କୃକଳାସ—ଏଣ୍ଡୁଅ ।

---

୧୧ଶ ପଦ—ସଖୀମାନେ ଏପରି ସାନ୍ତ୍ୱନା ଦେବାରୁ ସୀତାଙ୍କର ଉତ୍ତ ବୋଧ ହେଲା । ସାତ୍ତ୍ୱିକ ବିକାର ପ୍ରକାଶ ପୂର୍ବକ ସେ ହାସ୍ୟ କଲେ । ତ୍ରସ୍ତ କାଳରେ ତାରସ୍ୱର ହୀନପ୍ରଭ ହେଲା ପ୍ରାୟ ତାହା ଜଣାଗଲା । ଭକ୍ତି ମୂଳକ ନାଟକରେ ଯେପରି ବିନୟ ପ୍ରକାଶ କରେ, ସେହିପରି ସୀତା ବିଧାତାଙ୍କୁ ଉଚ୍ଚସ୍ୱରରେ ସ୍ତୁତି କରି କହିଲେ, "ମୋତେ ଏ ବେଦନାରୁ ରକ୍ଷାକର ।"

୧୨ଶ ପଦ— ବିରହାବସ୍ଥାର ଶେଷରେ ତାଙ୍କ ଦେହ ଧୂସର ବର୍ଣ୍ଣ ଦେଖାଗଲା । ତାହା ଦେଖି ବୋଧହେଲା,— ପଦ୍ମ ତାଙ୍କ ପାଦ ତଳରେ ବିନସ୍ତ୍ରୀ ହେବାରୁ ସେ ଅପଣ ଦେହ କାନ୍ତିକୁ କାଢି ନେଇ ପଦ୍ମକୁ ଦେଲେ କି ? ତାଳେ ସୀତା-ଦେଇଥିବା କାନ୍ତିକୁ ପୁଣି ଛଡ଼ାଇ ନେବେ —ଏଇ ଭୟରେ ପଦ୍ମ ଯାଇ ଜଳ ମଧ୍ୟରେ ବାସ କରୁଅଛି କି ?

୧୩ଶ ପଦ— ସ୍ତନଦ୍ୱୟ ନୂତନ ପାଣ୍ଡୁରବର୍ଣ୍ଣ ଧାରଣ କରିବାରୁ କୈଳାସ ପର୍ବତ ଦେଖି ଖୁସି ହୋଇ ମନରେ ଗର୍ବ କଲା, 'ମୁଁ (ସ୍ତନ ଯୁଗଳ ସହିତ ସମାନ ହେବି ବୋଲି ) ମହାଦେବଙ୍କୁ ଯେଉଁ ସେବା କରିଥିଲି, ତାହା ବିଫଳ ହୁଅନ୍ତା କି ? (ଅର୍ଥାତ ମୁଁ ମହାଦେବଙ୍କ ସେବା କରିବାରୁ ଏହାର

ବମ୍ପେ ଅଭିଳାଷ ।

ବହୁଲେ ରଙ୍ଗ ଲକ୍ଷ କୁଚକୁମ୍ଭ । ୧୩ ।

ବଶୀଭୂତ ରାମ ପ୍ରୀତି ଆଦରେ । ବସି ଭୂତପତି-ରିପୁର ଡରେ ।
ବାରବାଣ ହେବ ସୁନ୍ଦରୀ ଖର । ବାରବାଣକୁ ପଞ୍ଚ ବିଶିଖର ।

ବି-ଶାଖା ସୁଭାବେ ।

ବିଶାଖା-ପତି ମୁଖ ଛବି ଲଭେ । ୨୪ ।

ବାହୁଲତା ରେ ରାମ ନେ'ହୁ ଧୀନ । ବାହୁଲତାରେ ତାକୁ କେଉଁଦିନ ।
ବାନ୍ଧ କରଗତ ନ କର ମଠ । ବାନ୍ଧବ ! ବୋଲି ଧରିବ ନର୍ମଠ ।

ବନ୍ଧୁ ମୋ ବଣ୍ଟିଣ ।

ବନ୍ଧୁକ ଅଧରୁ ପିଇବ ସୁଧା । ୧୫ ।

---

୧୪ଶ ପଦ—ଭୂତପତି ରିପୁ—କନ୍ଦର୍ପ । ବାରବାଣ—ସାଞ୍ଜୁ । ବାର ବାଣକୁ—ବାଣସମୂହକୁ । ପଞ୍ଚ ବିଶିଖ—କନ୍ଦର୍ପ । ବି-ଶାଖା—ପ୍ରିୟାହୀନ । ବିଶାଖା-ପତି—ଚନ୍ଦ୍ର ।

୧୫ଶ ପଦ—ନର୍ମଠ—ଓଷ୍ଠ । ବନ୍ଧୁକ—ବଧୂଲି ଫୁଲ ।

---

ସ୍ତନ ଯୁଗଳ ସହିତ ସମାନ ହେଲା) । କିନ୍ତୁ ଏଣୁଅ ପାଚିଲା ବିମ୍ବ ଫଳର ବର୍ଣ୍ଣକୁ ଧାରଣ କରିବାକୁ ଇଚ୍ଛା କଲା ପରି ଏହା ହେଲା । (ଏଣୁଅ ଯେତେ କଲେ ମଧ୍ୟ ବିମ୍ବ ଫଳର ବର୍ଣ୍ଣ ପାଇ ପାରିବ ନାହିଁ — ସେହିପରି କୈଳାସ ପର୍ବତ କେବେ ହେଲେ ସ୍ତନ ଯୁଗଳ ସହିତ ସମାନ ହେବ ନାହିଁ ) ।

୧୪ଶ ପଦ—ରାମଚନ୍ଦ୍ର ସୀତାଙ୍କ ପ୍ରେମରେ ବଶୀଭୂତ ହୋଇ ମହାଦେବଙ୍କ ଶତ୍ରୁ କନ୍ଦର୍ପର ଭୟରେ ଏକାନ୍ତରେ ବସି ଚନ୍ଦ୍ରମୁଖୀ ସୀତାଙ୍କୁ ଭାବନା କରି ବିଚାର କରୁଅଛନ୍ତି, "କନ୍ଦର୍ପପ୍ରେରିତ ବାଣମାନଙ୍କୁ ବାରଣ କରିବା ବିଷୟରେ ସୀତା ସାଞ୍ଜୁ ସ୍ୱରୂପ ଅଟେ ।" [ସୀତାରୂପୀ ସାଞ୍ଜୁ ମୁଁ ଧାରଣ କଲେ—ସୀତାଙ୍କୁ କୋଳ କଲେ, କନ୍ଦର୍ପର ପୀଡ଼ା ମୋତେ ବାଧିବ ନାହିଁ ]

୧୫ଶ ପଦ—"କେଉଁଦିନ ମୁଁ ବିଳମ୍ବ ନ କରି ଧୀନ ଦୁଃଖୀଙ୍କ ପରି ନ ହୋଇ [ଅର୍ଥାତ କୁଣ୍ଠିତ ନ ହୋଇ —ଅବହେଳରେ ] ବାହୁ ଲତାରେ ତାକୁ ବନ୍ଧନ କରିବି ? କେଉଁଦିନ, 'ହେ ବାନ୍ଧବି !' ଏହା କହି ତାହାର ଓଷ୍ଠକୁ ଧରିବି ? କେଉଁ ଦିନ ମୋର ନିର୍ମଳ ହୃଦୟା ଜାନକୀ ସୀତା ଅଧରରୁ ଅମୃତ ପାନ କରିବି ?"

ବଳାହକବେଣୀ ନେତ୍ର ଶବଳା । ବଳାହକସ୍ତନୀ ସ୍ନେହପ୍ରବଳା ।
ବଳାଇଁ ରତରେ ମନ ଯବଳା । ବଳାରି ସୁଖକୁ ହେବ କବଳ ।
ବଳାଇବ ବଳା ।
ବଳାତ୍କାରେ ମାର ହେବ ଦୁର୍ବଳା । ୧୬ ।

ବିଶଲ୍ୟ ସମା ପ୍ରାପତେ ହୁତାଶ । ବିଷୟ ଅନ୍ତର ଅଶନ ବିଷ ।
ବୀଶ-ପ୍ରଭୁ ପ୍ରେମ-ବାଣିଜ୍ୟେ ବିଶ । ବିଶଦଭାନୁ ଭାନୁ ଏ କିଲ୍‌ବିଷ ।
ବିଷଧର ବିଷ ।
ବିଷମତାପ ବିଷ ଏ ଉବିଷ୍ୟ । ୧୭ ।

ବସି ପାରିବାତ କୁଞ୍ଜ କୃତ ସ୍ଥାନେ । ବଶିଷ୍ଠ ଆଦି ଆସେ ସୁଖାସନେ ।
ବ୍ୟଥିରେ ଶ୍ୟାମଳ କମଳବାସୀ । ବୀଥିରେ ଦେଖିବା ଅଯୋଧ୍ୟାବାସୀ ।

---

୧୬ଶ ପଦ—ବଳାହକବେଣୀ—ଘନବେଣୀ । ଶବଳା—ବିବିଧବର୍ଣ୍ଣ-ବିଶିଷ୍ଟା । ବଳାହକସ୍ତନୀ—ପର୍ବତସ୍ତନା । ସ୍ନେହପ୍ରବଳା—ସ୍ନେହମୟୀ । ବଳାରି—ଇନ୍ଦ୍ର ।

୧୭ଶ ପଦ—ବୀଶ—ଗରୁଡ । ବିଶଦ ଭାନୁ—ଚନ୍ଦ୍ର । କିଲ୍‌ବିଷ—ପାପ ।

୧୮ଶ ପଦ—ସୁଖାସନେ—ସ୍ଥାନରେ । ବ୍ୟଥିରେ—ଅସ୍ଥିର ହୋଇ । ବୀଥିରେ—ଏକତ୍ରରେ ।

---

୧୬ଶ ପଦ—"ଘନବେଣୀ, ଶ୍ୱେତ ଓ କୃଷ୍ଣବର୍ଣ୍ଣ ମିଶ୍ରିତ ନୟନା, ପର୍ବତସ୍ତନା, ସ୍ନେହପ୍ରବଣା ସୀତା ଯେତେବେଳେ ରତରେ ମନ ବଳାଇବ, ସେତେବେଳେ ଇନ୍ଦ୍ର ସମ୍ପଦ ମୋର ହସ୍ତଗତ ହେବ । ( ସେ କାମାସକ୍ତ ହୋଇ ମୋ ପାଖକୁ ଆସିଲେ, ମୁଁ ତା ସହିତ ବିହାର କରି ଇନ୍ଦ୍ର ସମ୍ପତ୍ତିକୁ ତୁଚ୍ଛ ମନେ କରିବି ) । ତାହାର କଳାଧର କନ୍ଦର୍ପକୁ ବଳାତ୍କାରରେ ଦୁର୍ବଳ କରି ପକାଇବ । ( କନ୍ଦର୍ପ ପରାଜିତ ହୋଇ ପଳାୟନ କରିବ ) ।"

୧୭ଶ ପଦ—କାମପୀଡ଼ାର ବିଶଲ୍ୟକରଣୀ ଔଷଧ ପ୍ରାୟ ସୀତାଙ୍କୁ ପାଇବାପାଇଁ ରାମଚନ୍ଦ୍ର ବ୍ରତ ଆଚରଣ ପୂର୍ବକ ହୁତାଶ ପାଳନ କଲେ । ତାଙ୍କ ମନରୁ ଅନ୍ୟ ସବୁ ଚିନ୍ତା ଅନ୍ତର ହେଲା । ଭୋଜନ ବିଷ ପ୍ରାୟ ବୋଧ ହେଲା । ଗରୁଡର ପ୍ରଭୁ ରାମଚନ୍ଦ୍ର ବୈଶ୍ୟ ପରି ପ୍ରେମ ବାଣିଜ୍ୟରେ ମଗ୍ନ ହୋଇ ରହିଲେ । ଚନ୍ଦ୍ରର କିରଣ ତାଙ୍କୁ ସନ୍ତାପ ଦେଲା, ପଦ୍ମର ମୃଣାଳ ବିଷଧର ସର୍ପ ପ୍ରାୟ ପ୍ରତୀତ ହେଲା । ସୀତାଙ୍କ ବିରହରେ ଏପରି ବିପରୀତ କଥା ସବୁ ଘଟିଲା ।

୧୮ଶ ପଦ—ଶ୍ୟାମଳବର୍ଣ୍ଣ ପଦ୍ମଗନ୍ଧ ବିଶିଷ୍ଟ ଶରୀର ରାମଚନ୍ଦ୍ର, କପୋତ ହୁଁକାର ଧ୍ୱନି କରନ୍ତେ, ବଶିଷ୍ଠାଦି ଅଯୋଧ୍ୟା ପ୍ରଧାନ

ବିତର୍କି ଶରୁରେ
ବଚରଣବୃତ ନେଜ ଭାତରେ ।୧୮ ।
ବିଭ୍ରାନ୍ତ ପଲାଶହୀନ ପଲାଶ । ବିଭ୍ରାନ୍ତ ହୁଏ ପଦପ ବିଳାସ ।
ବଳାକାପନ୍ତି ଯାଇଁ ହିକସାର । ବଳାନ୍ତି ଶରୁ ପତାକା ପ୍ରସାର ।
ବଳସେ ସୁମନ ।
ବରମ୍ଭ ତେଜି କଲେ ତ ଗମନ । ୧୯ ।
ବିରଳେ ଆଦ୍ୟ ଯମକେ ବଦ୍ୟକ । ବିଭୂଷିତ ଧ୍ୱନି ପ୍ରାନ୍ତ ଯମକ ।
ବିଶ୍ରାମ ଯମକ ଆଦ୍ୟ ପ୍ରାନ୍ତରେ । ବିଶ୍ୱଳ ରୂପକ ବଂଶ ପଦରେ ।
ବୀରବର ଭଞ୍ଜ ।
ଧାଳିଲେ ବିସ୍ମୃତ ବିଧଙ୍କୁ ମୋହ । ୨୦ ।

---

ଲୋକମାନେ ଫେରିବାର କରି ଅଇଲେ କି ?' ( ଶୀଘ୍ର କପଟ ବିଶ୍ୱାସ ହେବ, ସେଥିପାଇଁ ଚିତ୍ତ ଉଦ୍‌ବିଗ୍ନ ଥିବାରୁ ଏପରି ଭ୍ରମ ଜାତ ହେଲା ) ଏହା ବିଚାରି ସେମାନଙ୍କୁ ଟାଳି ଯାଇ ପଥ ମଧ୍ୟରେ ଭେଟିବା ପାଇଁ ଗୃହଅଗ୍ରେ ନେତ୍ରପାତ କଲେ ।

୧୯ଶ ପଦ - ପତ୍ରବିହୀନ ପଲାଶ ଗଛରେ ଦୃଷ୍ଟି ପଡ଼ନ୍ତେ, ( ବସନ୍ତ ସମୟରେ ପଲାଶ ଗଛରେ ପତ୍ର ନ ଥାଏ, ମାତ୍ର ଲାଲବର୍ଣ୍ଣ ଫୁଲରେ ବୃକ୍ଷ ପୂର୍ଣ୍ଣ ହୋଇଥାଏ—ସେହି ଲାଲବର୍ଣ୍ଣରେ ରଞ୍ଜିତ ବୃକ୍ଷକୁ ଦେଖି )—ପଦାତିକମାନେ ବାହାର କରି ଅଛନ୍ତି କି ?—ଏହି ଭ୍ରମ ଜାତ ହେଲା । ବକ ଦଳ ତାଙ୍କର ଗଛରୁ ଉଡ଼ିଯିବାର ଦେଖି ମନେ କଲେ, ( ପଦାତିକମାନେ ଆସୁଥିବାରୁ ) "ପତାକା ଉଡ଼ୁଅଛି ।" ତାଙ୍କର ମନରେ 'ଅଯୋଧ୍ୟା ଲୋକେ ଆସୁ ଅଛନ୍ତି'— ଏ ଦୃଢ଼ ଧାରଣା ହେବାରୁ ସେ ଶୀଘ୍ର ପଥ ମଧ୍ୟକୁ ଗମନ କଲେ ।

୨୦ଶ ପଦ—ନିର୍ମଳ ଆଦ୍ୟଯମକ ଶୋଭିତ, ଧ୍ୱନି ଓ ପ୍ରାନ୍ତ ଯମକ ବିଭୂଷିତ, ଆଦ୍ୟ ପ୍ରାନ୍ତ ଯମକର ବିଶ୍ରାମ କରି ପୁଣି ରୂପକାଳଙ୍କାରରେ ମଣ୍ଡିତ ଏହି ଛାନ୍ଦକୁ ଉପେନ୍ଦ୍ର ରଚନା କଲେ । ଏହା ଶ୍ରବଣରେ ମୂର୍ଖ ଲୋକେ ବିସ୍ମିତ ଓ ପଣ୍ଡିତମାନେ ମୋହିତ ହେବେ ।

---

# ତ୍ରୟୋଦଶ ଛାନ୍ଦ

## ରାଗ—ଭୂପାଳ

ବସିଛନ୍ତି ଦଶରଥ ସଭା ମଧ୍ୟେ ।
ବେତ୍ର-ହସ୍ତ ଦ୍ୱାଃସ୍ଥ କହେ ଅଭିଷଙ୍ଗେ । ୧ ।
ବାରଣାର ଦ୍ୱାରେ ହୋଇଛନ୍ତି ସ୍ଥିତ ।
ବହୁ ଶ୍ରୀରାମବାର୍ତ୍ତା ମିଥିଳା ଦୂତ । ୨ ।
ବେଗେ ରାଜା ଆଣ ବୋଲନ୍ତ ନେଲ ମୁନି ।
ବଶିଷ୍ଠରେ ଜଡି ନୃପମାନ୍ୟ ଘେନି । ୩ ।
ବାର୍ତ୍ତା କହେ ସରୂପକେ ଶତାନନ୍ଦ ।
ବିଶ୍ୱାମିତ୍ରଗୁରୁ ସଙ୍ଗେଁରାମଚନ୍ଦ୍ର । ୪ ।
ବନ-ବ୍ୟୋମେ ଉଦେ କର ପ୍ରଭାକର ।
ବିଧ୍ୱଂସିଲେ ତାଡ଼କା ଘୋରାନ୍ଧକାର । ୫ ।
ବିଚେଷ୍ଟିତ ମାରୀଚ ବାୟସ କରୁ ।
ବିଘଟିତ ସୁବାହୁକୁ ସେ ନିବାରୁ । ୬ ।

---

## ତ୍ରୟୋଦଶ ଛାନ୍ଦ

୧ମ—୩ୟ ପଦ—ଦଶରଥ ସଭା ମଧ୍ୟରେ ବସି ଅଛନ୍ତି । ସେହି ସମୟରେ ବେତ୍ରଧାରୀ ଦ୍ୱାରପାଳ ଅତି ଶ୍ରଦ୍ଧାରେ କହିଲା, "ମୈଥିଳାପୁରର ଦୂତ ଶ୍ରୀରାମଙ୍କ ବାର୍ତ୍ତା ଆଣି ସିଂହଦ୍ୱାରରେ ବସି ଅଛନ୍ତି ।" ତାହା ଶୁଣି "ଶୀଘ୍ର ତାଙ୍କୁ ଆଣ" ରାଜା ଏପରି କହନ୍ତେ ଦ୍ୱାରୀ ଶତାନନ୍ଦ ମୁନିଙ୍କୁ ସଭାକୁ ନେଲା । ସେ ମୁନି ବଶିଷ୍ଠଙ୍କୁ ନମସ୍କାର କଲେ ଓ ଦଶରଥ ରାଜାଙ୍କର ମାନ୍ୟ ଗ୍ରହଣ କଲେ ।

୪ର୍ଥ ପଦ—ଶତାନନ୍ଦ ରୂପକ ସହିତ ବାର୍ତ୍ତା କହିଲେ,—ବିଦ୍ୟାଗୁରୁ ବିଶ୍ୱାମିତ୍ର ବୃହସ୍ପତି ହେଲେ, ତାହାଙ୍କ ସଙ୍ଗରେ ରାମଚନ୍ଦ୍ର ରମଣୀୟଚନ୍ଦ୍ର ହେଲେ ।

୫ମ ପଦ—ଅରଣ୍ୟ ଆକାଶରେ 'ରାମଚନ୍ଦ୍ର' ମନୋହର ଚନ୍ଦ୍ର ଉଦିତ ହୋଇ ନିଜ ହସ୍ତ ପ୍ରଭା ରୂପ କିରଣ ପ୍ରଭାବରେ ଘୋର ଅନ୍ଧକାର ରୂପା ତାଡ଼କାକୁ ବିନାଶ କଲେ । ( ଚନ୍ଦ୍ରର କିରଣରେ ଅନ୍ଧକାର ଦୂର ହେଲାପରି ରାମଚନ୍ଦ୍ରଙ୍କ ବାହୁ ବଳରେ ତାଡ଼କା ମଲା ) ।

୬ଷ୍ଠ ପଦ—ମାରୀଚ ରୂପ ବାୟସକୁ ବିଚେଷ୍ଟିତ ଓ ସୁବାହୁରୂପ ବିଟ ପୁରୁଷକୁ ନିବାରିତ କଲେ । ( ଚନ୍ଦ୍ର ଉଦିତ ହେଲେ ବାୟସମାନେ ନିଦ୍ରାରେ ବିଚେଷ୍ଟିତ ହୁଅନ୍ତି ଓ ବିଟପୁରୁଷମାନେ ଭୟରେ ଗମନା ଗମନ ବନ୍ଦ କରି ଦିଅନ୍ତି । ସେହିପରି ରାମଚନ୍ଦ୍ର ମାରୀଚକୁ ହତମାନ କଲେ ଓ ସୁବାହୁ ରାକ୍ଷସକୁ ବିନାଶ କଲେ ) ।

ବିକଶିତ ଯେ ପଙ୍କ କୁମୁଦ କଲେ ।
ବିଟୂଳିଲା ଅହଲ୍ୟାକୁ ଦ୍ରବାଇଲେ । ୭ ।
ବ୍ୟବସ୍ଥିତେ ପୁଣି ସଲକ୍ଷଣ ସେହୁ ।
ବୈଦେହକ ଜନ ଚକୋରକୁ ମୋହୁ । ୮ ।
ବଇଦେଶ ଧୈର୍ଯ୍ୟ ଧନୁ ଅଜଗବ ।
ବିଭଞ୍ଜନ କଲେ ସ୍ମରଣରେ ଜବ । ୯ ।
ବସୁପତି ସଦ୍ମ ମୁଦ ଲଜ୍ଜାବଳେ ।
ବସାଇବେ ସୀତା ସ୍ୱେହଣୀକି କୋଳେ । ୧୦ ।
ବିଧୁରେତ ଜନକ ସାଗର ସତ ।
ବିଶ୍ୱାସ ଛଳେ ତୋଷ ଉଚ୍ଛୁଳିତ । ୧୧ ।

---

୭ମ ପଦ—ରାମଚନ୍ଦ୍ର, ପଙ୍କରୂପ କୁମୁଦକୁ ବିକାଶ କଲେ ଓ ଅହଲ୍ୟାରୂପ ଚନ୍ଦ୍ରକାନ୍ତମଣିକୁ ତରଳାଇଲେ ( ପ୍ରସ୍ତର ତରଳାଇ ନାରୀରୂପ କଲେ ) ।

୮ମ ପଦ—ଲକ୍ଷ୍ମଯୁକ୍ତ ଚନ୍ଦ୍ର, ଚକୋରମାନଙ୍କୁ ମୋହିତ କଲାପରି, ଲକ୍ଷ୍ମଣଯୁକ୍ତ ରାମଚନ୍ଦ୍ର ବିଦେହ ଦେଶର ଲୋକମାନଙ୍କୁ ମୋହିତ କଲେ ।

୯ମ ପଦ—ଚନ୍ଦ୍ର, ବିଦେଶୀ ଲୋକର ଅର୍ଥାତ୍ ବିରହୀ ଲୋକର ଧୈର୍ଯ୍ୟ ଭଙ୍ଗ କଲାପରି ରାମଚନ୍ଦ୍ର, ବିଦେହଙ୍କ ଅଜଗବଧନୁକୁ ଛୁଇଁବା ମାତ୍ରକେ ଭଗ୍ନ କଲେ ( ଅନାୟାସରେ ଭାଙ୍ଗି ଦେଲେ ) ।

୧୦ମ ପଦ—ଚନ୍ଦ୍ର, ପଦ୍ମକୁ ମୁଦ୍ରିତ କରି ରୋହିଣୀକୁ କୋଳରେ ବସାଇଥିଲେ; ସେହିପରି ରାମଚନ୍ଦ୍ର, ପୃଥିବୀର ରାଜାମାନଙ୍କୁ ଲଜ୍ଜା ଦେଇ ଅଛନ୍ତି । ଏହାପରେ ସୀତାଙ୍କୁ କୋଳରେ ବସାଇବେ ।

୧୧ଶ ପଦ—ଦଶରଥ ସଗର ବଂଶରୁ ଜାତ—କେଣୁ ସେ ସାଗର ହେଲେ । ପୁଣି ଚନ୍ଦ୍ର, ସାଗରରୁ ଉତ୍ପନ୍ନ । ରାମଚନ୍ଦ୍ର, ତ ଦଶରଥଙ୍କଠାରୁ ଜାତ । ଏହା ମିଥ୍ୟା ନୁହେ । ଚନ୍ଦ୍ର, ନିଜ କିରଣରେ ସମୁଦ୍ରରେ ତରଙ୍ଗ ଉତ୍ପାଦନ କଲା ପରି ରାମଚନ୍ଦ୍ରଙ୍କ ଯଶ କଥା ଶୁଣି ଦଶରଥଙ୍କର ହୃଦୟରେ ସନ୍ତୋଷର ଢେଉ ଖେଳିଗଲା ।

ବେଳା ଅତିକ୍ରମି ହେଲେ ସ୍ନେହ-ଦାର ।
ଜହ୍ନରଲେ ସଙ୍ଗେ ମୀନ ସଣିଦାର ।୧୨।
କାର୍ଣ୍ଣଠ କି ଗଜଯୂଥ ଭେଳା ହୟ ।
ବହିତ୍ର କି ରଥ ଭେକ ପଦାତୟ ।୧୩।
ବାଦ୍ୟନାଦ ଗରଜନ ତହିଁ ମେଳ ।
ବଡ଼ ବଡ଼ ଲୋକ ନିଶ୍ଚେ ପୋତପାଳ ।୧୪।
ବନ୍ଦର ଯେ ମିଥିଳା ମିଳବେ ଯାଇଁ ।
କଲେକଲ୍ପଣି ସ୍ୱଆ-ରତ୍ନ ତହିଁ ।୧୫।
ବୋଲିବେ ଯେ କି ଉପମା ଏ ଅମୂଲ୍ୟ ।
ଲୁମ୍ୟପୃଷ୍ଠିରେ ଭବ ଭଲ ଏତେ ମୂଲ୍ୟ ।୧୬।

---

୧୨ଶ ପଦ - ବେଳା—ସମୁଦ୍ରତଟ, ଅଶୁଭ ସମୟ । ସ୍ନେହଦାର—ସ୍ନେହଜଳ । ମୀନା ସ୍ୱଣିଦାର—ମୀନଜାତି ଓ ରତ୍ନାଦି ଜାର ସମୁଦ୍ର ।

୧୩ଶ ପଦ—କାର୍ଣ୍ଣଠ—କୁମ୍ଭୀର । ହୟ—ଘୋଡ଼ା । ବହିତ୍ର—ବୋଇତ । ପଦାତୟ—ପଦାତି ସମୂହ ।

---

୧୨ଶ ପଦ—ସମୁଦ୍ର ଉଦ୍‌ବେଳିତ ହେଲବେଳେ ମୀନାଦି ଜଳଚର ପ୍ରାଣୀକୁ ଦେହରେ ଧାରଣ କରି ତୀର ପ୍ରଦେଶକୁ ଅତିକ୍ରମ କରେ—ସେହିପରି ଦଶରଥ ଆନନ୍ଦିତ ହୋଇ କାରବେଳା, କାଳବେଳା ଇତ୍ୟାଦି ଅତିକ୍ରମ କରି (ଶୁଭାଶୁଭ କିଛି ନ ମାନି) ମାଛ ଓ ଦହି ସ୍ୱର ଧରି ବାହାରିଲେ ।

୧୩ଶ ପଦ— ସମୁଦ୍ରରେ କୁମ୍ଭୀର, ଭେଳା, ବୋଇତ ଓ ବେଙ୍ଗ ସବୁ ଦେଖାଗଲା ପରି ଦଶରଥଙ୍କ ସହିତ ହସ୍ତୀ, ଅଶ୍ୱ, ରଥ ଓ ପଦାତିକ ସବୁ ଗମନ କଲେ । ( ଏହାଦ୍ୱାରା ଚତୁରଙ୍ଗବଳ ଯାଉଥିବାର ସୂଚିତ ହେଲା ) ।

୧୪ଶ ପଦ—ସମୁଦ୍ରରେ ଲହରୀସମୂହ ଗର୍ଜନ କଲାପରି ଏଠାରେ ବାଦ୍ୟନାଦର ଗର୍ଜନ ହେଉଅଛି । ତହିଁରେ ପୋତାଧ୍ୟକ୍ଷମାନେ ଥିଲାପରି ଏଠାରେ ଜଣିପ୍ସୁ ସୁମନ୍ତ୍ରାଦି ବଡ଼ ବଡ଼ ଲୋକମାନେ ଅଛନ୍ତି ।

୧୫ଶ ଓ ୧୬ଶ ପଦ—ମିଥିଳା ଦେଶ ବନ୍ଦର ସ୍ୱରୂପ ହେଲା । ଏମାନେ (ଦଶରଥ ଓ ତାଙ୍କ ଦଳବଳମାନେ) ସେଠାରେ ପହଞ୍ଚି ମିଥିଳାର ରମଣୀ ରତ୍ନମାନଙ୍କୁ ଦେଖିଲାକ୍ଷଣି କହିବେ, 'ଏମାନଙ୍କୁ ଆଉ ଉପମା ନାହିଁ ।' କବି କହୁଛନ୍ତି ଚନ୍ଦ୍ରାକର ସୁଦ୍ଧା ସେ ରତ୍ନମାନଙ୍କର ମଲ୍ୟ ନିରୂପଣ କରି ନ ପାରି ତାହାଙ୍କୁ ଅମୂଲ୍ୟ ଆଖ୍ୟା ଦେଲେ । ( ପୋତାଧ୍ୟକ୍ଷମାନେ ବନ୍ଦରରେ ପହଞ୍ଚି ମୂଲ୍ୟ ଦେଇ ରତ୍ନ କିଣନ୍ତି । ମାତ୍ର ମିଥିଳା ବନ୍ଦରରେ ଥିବା ରମଣୀରତ୍ନ ସବୁ ଅମୂଲ୍ୟ) ।

ବାଣୀ ଏ ବୃଷ୍ଟି ଜନକ ସଜନଙ୍କି ।
ବାଲ୍ମୀକ କୌଶିକ ଗୌତମମିଶି । ୧୭ ।
ବୈଖାନସଗଣ ଘେନି ବାଟେ ମେଳି ।
ବାରାନିଧି ସଙ୍ଗମ କି ଋଷିକୁଲ୍ୟା । ୧୮ ।
ବଣ୍ଡାମକ ସୁଖାସନ କୂଳେ କଚ୍ଛୁ ।
ବୃନ୍ଦବୃନ୍ଦେକ ପୁରୁଷୋତ୍ତମ ଅଛୁ । ୧୯ ।
ବ୍ୟାପ୍ତ ଦବ୍ୟ କଟକରେ ନେଇ କରୁ ।
ବସା ଲବାସେ ରଖି ଜନକ ଠାରୁ । ୨୦ ।
ବସ୍ତୁରହିଁ ହୋଇଥିଲେ ଶତାନନ୍ଦ ।
ବଶିଷ୍ଠରେ କହିଲେ ଏ ଗୂଢ଼ପଦ । ୨୧ ।

---

୧୮ଶ ପଦ—ବୈଖାନସ ଗଣ—ଋଷିମାନେ । ବାରାନିଧି—ସମୁଦ୍ର ।
୧୯ଶ ପଦ—ସୁଖାସନ—ଅନନ୍ତ ଶୟନ. ଯାନ ବାହନ ଇତ୍ୟାଦି ।
୨୦ଶ ପଦ—କଟକ—ନଗର । ସାମୁଦ୍ର—ଲବଣ ।

---

୧୭ଶ ଓ ୧୮ଶ ପଦ—ବହୁତ ଉପନଦୀସହ ଋଷିକୁଲ୍ୟାନଦୀ ଯାଇ ସମୁଦ୍ରରେ ମିଶିଲାପରି ଜନକ ବାଲ୍ମୀକି, ବିଶ୍ୱାମିତ୍ର, ଗୌତମ ଆଦି ଋଷିମାନଙ୍କୁ ସଙ୍ଗରେ ନେଇ ଯାଇ ଦଶରଥଙ୍କ ସହିତ ମିଳିତ ହେଲେ ।

୧୯ଶ ପଦ—ଯେଉଁ ସମୁଦ୍ରର କନ୍ଦରରେ ପୋତ ରହେ ତାହାର ବିସ୍ତୃତ୍ କୂଳରେ ପୁରୁଷୋତ୍ତମ ନାରାୟଣ ଅନନ୍ତ ଶଯ୍ୟାରେ ସୁଖରେ ଶୟନ କରିଥାନ୍ତି ଓ କନ୍ଦରରେ ଗରଳ ଥାଏ । ସେହିପରି ମିଥିଳା ରାଜ୍ୟ ସୀମାରେ ଦଶରଥ ସୈନ୍ୟସହ ଉପସ୍ଥିତ ହେଲେ, ତାଙ୍କ ସହିତ ବଶିଷ୍ଠ ରହିଅଛନ୍ତି ଓ ସେହି ସୀମାର ବିସ୍ତୃତ୍ କୂଳରେ ରାଜଉପବନରେ ପୁରୁଷୋତ୍ତମ ରାମଚନ୍ଦ୍ର ସୁଖରେ ବିରାଜମାନ କରିଅଛନ୍ତି ।

୨୦ଶ ପଦ—ସମୁଦ୍ର ଲବଣରେ ବ୍ୟାପ୍ତ ହୋଇଥିଲାପରି ଦଶରଥ ମିଥିଳା ରାଜଧାନୀରେ ସୈନ୍ୟସହ ପରିବ୍ୟାପ୍ତ ହୋଇଗଲେ । ଜନକଙ୍କ ଇଙ୍ଗିତକ୍ରମେ ଭୃତ୍ୟମାନେ ସେମାନଙ୍କୁ ନେଇ ବସା ଗୃହମାନଙ୍କରେ ରଖିଲେ ।

୨୧ଶ ପଦ—ଶତାନନ୍ଦ ଜନକଙ୍କ ସହିତ ପୂର୍ବରୁ ବସ୍ତୁର କରିଥିଲେ । ବର୍ତ୍ତମାନ ସମୟ ଜାଣି ବଶିଷ୍ଠଙ୍କୁ ଏହି ଗୂଢ଼ପଦ କହିଲେ—

ଦେଖନ୍ତୁ ଶ୍ରୀରାମ ହେଲେ ତ୍ରିପୁରଜେତା ।
ବରନ୍ତୁ ତାଙ୍କ ଧାର୍ମିକାସ୍ତ୍ରୀ ସୀତା । ୧୨ ।
ତାଙ୍କ ଲକ୍ଷ୍ମଣ ଗମ୍ଭୀର-ଗୁଣଶ୍ଳାଘ୍ୟ ।
ବନ୍ତୁ ଊର୍ମିଲକନ୍ୟା କେଳିକି ସେହି । ୧୩ ।
ଦୀପ୍ୟମାନ ଶୁଭବନ୍ତ ସୁମୂର୍ତ୍ତିଙ୍କ ।
ବିଧି ନ ଦେବା ସୁମନେ ମାଳିନୀକି । ୧୪ ।
ବୈର-ଘନ ସୁକୀର୍ତ୍ତିରେ ଯୁକ୍ତ ସତ ।
ଜନକରେ ଶତାନନ୍ଦ କହିଲ ଜାତ । ୧୫ ।

---

୧୩ଶ ପଦ—ଊର୍ମିଲକନ୍ୟା—ମନୋହର ଢେଉ, ଊର୍ମିଳା ।

୧୪ଶ ପଦ—ଦୀପ୍ୟମାନ—ଦେଦୀପ୍ୟମାନ । ସୁମୂର୍ତ୍ତି—ମନୋହର ମୂର୍ତ୍ତି । ସୁମନେ—ନିର୍ମଳ ମନରେ ।

୧୫ଶ ପଦ—ବୈରଘନ—ଶତ୍ରୁ ହନ୍ତା ।

---

୧୨ଶ ପଦ— ତ୍ରିପୁର ବିଜୟୀ ମହାଦେବ ଗଙ୍ଗାଙ୍କୁ ଧାରଣ କରିଥିଲନ୍ତି । ସେହିପରି ଯେତେବେଳେକି ରାମଚନ୍ଦ୍ର ତ୍ରିପୁରଜେତା ବୋଲି ଜଣା ଗଲେଣି, ମୁଁ ବିଚାରୁଛି; ଗଙ୍ଗାରୂପୀ ସୀତାଙ୍କୁ ତାଙ୍କର ଧାରଣ କରିବା ଉଚିତ । ( ରାମ ତ୍ରିପୁରବିଜୟୀ ଶିବଙ୍କର ଧନୁ ଭଙ୍ଗିଲେହେତୁ ତ୍ରିପୁରଜେତା ବୋଲି ଜଣା ଗଲେଣି ) ।

୧୩ଶ ପଦ—ସୁଗମ୍ଭୀର ସମୁଦ୍ରରେ 'ଊର୍ମି' ଢେଉ ଯେପରି ସୁନ୍ଦର କେଳି ରଚନା କରେ, ସେହିପରି ଗମ୍ଭୀର ଓ ଶୌର୍ଯ୍ୟାଦି ଗୁଣ ମଣ୍ଡିତ ଲକ୍ଷ୍ମଣଙ୍କ ହୃଦୟରେ 'ଊର୍ମିଳା' ସୀତାଙ୍କ ଭଗ୍ନୀ ଶୋଭା ବିସ୍ତାର ପୂର୍ବକ କ୍ରୀଡ଼ା କରନ୍ତୁ । ( ଲକ୍ଷ୍ମଣ ଊର୍ମିଳାଙ୍କୁ ବିବାହ କରନ୍ତୁ ) ।

୧୪ଶ ପଦ—ମଙ୍ଗଳପ୍ରଦ ସୁନ୍ଦର ବରଙ୍କୁ ପୁଷ୍ପମାଳ ଦେବା ବିଧି ନୁହେ କି ? ସେହିପରି ସୁନ୍ଦର ଓ ଶୌର୍ଯ୍ୟଶାଳୀ ଭରତଙ୍କୁ ମାଳିନୀ ( ମାଣ୍ଡବୀ ) କନ୍ୟାଙ୍କୁ ଉତ୍ତମ ଚିତ୍ତରେ ପ୍ରଦାନ କରିବା ଉଚିତ ।

୧୫ଶ ପଦ—ଶତ୍ରୁହନ୍ତା ଲୋକ ସୁକୀର୍ତ୍ତିଯୁକ୍ତ ହେଲେ ପରି ଶତ୍ରୁଘ୍ନ ସୁକୀର୍ତ୍ତି ( ଶ୍ରୁତକୀର୍ତ୍ତି ) ରେ ଶୋଭିତ ହୁଅନ୍ତୁ ( ଶତ୍ରୁଘ୍ନ ଶ୍ରୁତକୀର୍ତ୍ତିଙ୍କୁ ବିବାହ କରନ୍ତୁ ) । ଶତାନନ୍ଦ ଏହି କଥା ଋଷିଙ୍କୁ କହିଲେ ।

ବଖନକୁ ପ୍ରଶଂସନ୍ତି ସାଧୁଜନେ ।
ବର ଯୁବ ଯୁବ କନ୍ୟା ଏକସ୍ଥାନେ । ୨୬ ।
ବିହୁଥିଲ ନୋହୁଥିଲେ କାହିଁ ବିହି ।
ବାହୁଡ଼ିଲେ ଜନକ ପ୍ରମୋଦ ବହି । ୨୭ ।
ବ୍ୟତିପାତ ବିଷ୍ଟି ବିବର୍ଜିତ ଦିନ ।
ବୁଝି କନ୍ୟା ଦେଖିବାକୁ ଆଗମନ । ୨୮ ।
ବାମଦେବ ଜାବାଳି କଶ୍ୟପ ତିନ ।
ବଶିଷ୍ଠଙ୍କୁ ସୁମନ୍ତଙ୍କୁ ସଙ୍ଗେ ଘେନି । ୨୯ ।
ବିଜେ ଜନକମନ୍ଦିରେ ଦଶରଥ ।
ବେଲେକାମାଙ୍କୁ ଅଣ ଦେଖନ୍ତି ଅଥ । ୩୦ ।
ବେଶ କରି ସାରିଥିଲେ ଅଗୁ ଜାଣି ।
ବେହରଏ ସବୁ ଶୋଭାପୁରୀ ପୁଣି । ୩୧ ।

---

୨୬ଶ ପଦ—ବିଖନ—ବିଧାତା ।

---

୨୬ଶ ଓ ୨୭ଶ ପଦ—ଏପରି ଯୁବେଟି ବର ପାଇ ସର୍ବାଂଶରେ ଉପଯୁକ୍ତା ଯୁବ କନ୍ୟା ଏକସ୍ଥାନରେ ଘଟନ ହୋଇଥିବାର ଦେଖି ପଣ୍ଡିତମାନେ (ବଶିଷ୍ଠାଦିମାନେ) ବିଧାତାଙ୍କୁ ପ୍ରଶଂସା କରି କହିଲେ, "ଏହିପରି ଉପଯୁକ୍ତ ବର କନ୍ୟା ବିଧାନ କରୁ ନ ଥିଲେ ସେ ବିଧାତା ନାମ କାହିଁକି ବୋଲନ୍ତେ ?" ଏଥିରୁ କବିଶ୍ରେଷ୍ଠଙ୍କର ସମ୍ମତି ପ୍ରକାଶ ପାଇଲା) । ତତ୍ପରେ ଜନକ ବୋଧ ହୋଇ ଆନନ୍ଦ ମନରେ ଯୁବକୁ ଚାହୁଁଲେ ।

୨୮ଶ ଓ ୨୯ଶ ପଦ—ବ୍ୟତିପାତ ଓ ବିଷ୍ଟି ବିବର୍ଜିତ ଦିନ (ଶୁଭଦିନ) ବୁଝି କନ୍ୟା ଦେଖିବା ନିମନ୍ତେ ବାମଦେବ, ଯାବାଳି, କଶ୍ୟପ, ଏ ତିନିଜଣ ବଶିଷ୍ଠ ଓ ସୁମନ୍ତଙ୍କୁ ସଙ୍ଗରେ ଘେନି ଆଗମନ କଲେ ।

୩୦ଶ ପଦ—ଦଶରଥ ଜନକଙ୍କ ମନ୍ଦିରରେ ବିଜେ କରି କହିଲେ, "ଦେଖିବା ନିମନ୍ତେ ରାଜକନ୍ୟାମାନଙ୍କୁ ଆଣ ।"

୩୧ଶ ପଦ—ପୂର୍ବରୁ ଜାଣି ବେଶକାରିଣୀମାନେ ସୀତା ପ୍ରଭୃତିଙ୍କୁ ବେଶ କରି ସାରିଥିଲେ । 'ବେହରଣକାରୀମାନେ' କହିଥାନ୍ତି ଅଯୋଧ୍ୟାର ଲୋକେ ମିଥିଳାର ରାଜକନ୍ୟାଙ୍କୁ ଦେଖି ମନେ କଲେ, ଏ କନ୍ୟା ସବୁ ଶୋଭାର ସ୍ଥାନ ଅଟନ୍ତି ।

ବିଦ୍ୟୁତ୍‌କୁନ୍ତଳ ଚମ୍ପାପୁଷ୍ପାଲଙ୍ଗନ ।
ବିମଳକ ଶ୍ରେଷ୍ଠ ମାଳତୀରେ ପୁନ । ୩୨ ।
ବିଚଳିତ କାଞ୍ଚନ କଙ୍କଣ କାଞ୍ଚୀ ।
ବେଳେବେଳେ ଖଞ୍ଜିତ ହେବାର ପାଇଁ । ୩୩ ।
ବିଭୂଷଣ ରତ୍ନପୁର ଶ୍ରୀନଗର ।
ବିଶାଳରେ କରିଅଛି ସେ ଅଦର । ୩୪ ।
ବାହ୍ଲୀକରେ ଅଙ୍ଗକୁ କରାଇ କୋଳ ।
ବର୍ଦ୍ଧମାନ କରେ ହାସ ମହୋତ୍ଫୁଲ୍ଲ । ୩୫ ।
ବଳାଇ ଯେ ପୁରୁଁ ଅଣିବାରେ ଦାସୀ ।
ବିଧି ଯନ୍ତ୍ର ପିତୁଳାପ୍ରାୟ ଦିଶି । ୩୬ ।

---

୩୩ଶ ପଦ—କାଞ୍ଚନ- କଙ୍କଣ—ସୁବର୍ଣ୍ଣ କଙ୍କଣ, ଲଙ୍କାପୁରୀ । କାଞ୍ଚୀ—କିଙ୍କିଣୀ, କାଞ୍ଚୀନଗରୀ ।

୩୫ଶ ପଦ—ବାହ୍ଲୀକ—କୁଙ୍କୁମ, ନଗର ବିଶେଷ ।

---

୩୨ଶ ପଦ—କନ୍ୟାମାନଙ୍କ କେଶରେ ଚମ୍ପାପୁଷ୍ପ ଭୂଷିତ ହୋଇଥିବାରୁ କୁନ୍ତଳ ପୁରୀ ଓ ଚମ୍ପାପୁରୀ ସୂଚନା ଦେଉଛି । ପୁଣି ନିର୍ମଳ କାଞ୍ଚିଲକୁ ଶ୍ରେଷ୍ଠ ହୋଇ ସବୁ ଆଲିଙ୍ଗନ କରିଥିବା କୃଷ୍ଣ ଶ୍ୱେତ ପୁରୀ ଓ ମାଳବ ପୁରୀର ଇଙ୍ଗିତ ଦେଉଛି ।

୩୩ଶ ପଦ—ସମସ୍ତ ସମୟରେ ଅନ୍ଦୋଳିତ ହେବ ବୋଲି ଭାବି ସଖୀମାନେ ସୁବର୍ଣ୍ଣ ବଳୟ ଓ କାଞ୍ଚୀ ( କଟୀ ଭୂଷଣ ବିଶେଷ ) ଖଞ୍ଜିଥିଲେ ( ହସ୍ତ ଚାଳନାରେ ବଳୟ ଓ ଗମନରେ କାଞ୍ଚୀ ବିଚଳିତ ହେବ )—ଏହା ଦ୍ୱାରା ଲଙ୍କାପୁରୀ ଓ କାଞ୍ଚୀପୁର ସୂଚିତ ହେଲା ।

୩୪ଶ ପଦ—କନ୍ୟାମାନେ ନାନାରତ୍ନ ମାନଙ୍କରେ ମଣ୍ଡିତ ହୋଇ ବିଶାଳ ଶୋଭାର ଆଧାର ହୋଇ ଅଛନ୍ତି ( ଖୁବ୍ ଶୋଭା ଦିଶୁଅଛନ୍ତି ) ଏହାଦ୍ୱାରା ରତ୍ନପୁର ଶ୍ରୀନଗର ଓ ବିଶାଳା ପୁରୀର ସଙ୍କେତ ଦିଅଗଲା ।

୩୫ଶ ପଦ—କନ୍ୟାଗଣ ଶରୀରରେ କୁଙ୍କୁମ ବୋଳି ହୋଇଥିଲେ ଓ ହାସ୍ୟ ପ୍ରକାଶ କରୁଥିଲେ । ଏହା ବାହ୍ଲୀକ ନଗରୀ, ଅଙ୍ଗ ଓ ବର୍ଦ୍ଧମାନର ଭ୍ରମ ଜନ୍ମାଇଲା ।

୩୬ଶ ପଦ—ତତ୍ପରେ ଦାସୀମାନେ ସେମାନଙ୍କୁ ପୁରରୁ ବେଳ ଅଣିବା ସମୟରେ ସେମାନେ ବିଧାତାଙ୍କର ଯନ୍ତ୍ର ନିର୍ମିତ ପିତୁଳା ପ୍ରାୟ ଦିଶିଲେ । (ବିଧାତା ସ୍ୱହସ୍ତରେ ନିର୍ମାଣ ନ କରି ଯନ୍ତ୍ର ସାହାଯ୍ୟରେ ନିର୍ମାଣ କରି ଅଛନ୍ତି) ।

ବିଲୋକିତ ହେଲେ ସେ ରମଣୀ ରୂପ ।
ବ୍ୟତେକେ ରମଣୀୟା ନାହିଁ ନାସ୍ତି । ୩୭ ।
ବେଧୀଶ ବିଚଳନ୍ତି କର୍ମ ଆରମ୍ଭଣେ ।
ବଳ ଜ୍ୟାରୁ ଜନ୍ମ ଅନୁପମେ ଜଣେ । ୩୮ ।
ବଳାରିକର ଅବଳା ଉମା ରମା ।
ବନ୍ଧୁ ଏକ ମୂରତି ନୋହିବେ ସମା । ୩୯ ।
ବ୍ୟକ୍ତେ ତାଙ୍କୁ ଦେବୁ ଅଧିକ ଧବ ।
ବୋଲାଇଲେ ଏ ସୁନ୍ଦରୀ-ପୁରନ୍ଦରୀ । ୪୦ ।
ବାଣୀ ବିଖ୍ୟାତ ଗଉରୀ ଶିରୋମଣି ।
ବିଦ୍ୟାବନ୍ତେ ଯେ କମଳାସାର ଭଣି । ୪୧ ।

---

୩୮ଶ ପଦ—ବେଧୀଶ—ବ୍ରହ୍ମା । ଜ୍ୟାରୁ—ପୃଥିବୀରୁ ।
୩୯ଶ ପଦ—ବଳାରିକଅବଳା—ଶଚୀ ।

---

୩୭ଶ ପଦ— ଦଶରଥାଦିମାନେ ଯେଉଁ ଗୁଣ କନ୍ୟାଙ୍କୁ ଦେଖିଲେ, ତାଙ୍କ ପରି ସୁନ୍ଦରୀ ଆଉ ଏ ସଂସାରରେ କେହି ନାହାନ୍ତି,—ଏମନ୍ତ ମନେ କଲେ ।

୩୮ଶ ପଦ—ଦଶରଥ, ବଶିଷ୍ଠାଦିମାନେ ଭାବିଲେ, ବିଧାତା ଏହାଙ୍କୁ ନିର୍ମାଣ କରିବାର ଆରମ୍ଭରେ ମନେ କଲେ, ପୃଥିବୀରେ ଉପମା ରହିତା ସୁନ୍ଦରୀ ହୋଇ ଏମାନେ ଜନ୍ମ ହୁଅନ୍ତୁ । ( ଅର୍ଥାତ୍ ଏ ଗୁଣକନ୍ୟାଙ୍କର ଶୋଭାର ତୁଳନା ସାରା ସଂସାରରେ ଅନ୍ୟତ୍ର ଦୁର୍ଲ୍ଲଭ )

୩୯ଶ ପଦ—ଶଚୀ, ପାର୍ବତୀ, ଲକ୍ଷ୍ମୀ ଏ ତିନିଜଣ ଏକ ମୂର୍ତ୍ତି ହେଲେ ସୁଦ୍ଧା ଏହାଙ୍କ ( ସୀତାଙ୍କ ) ସହିତ ସମାନ ହେବେ ନାହିଁ ।

୪୦ଶ ପଦ—ଶଚୀ, ରମା, ଉମାଙ୍କଠାରୁ ଏ କନ୍ୟା 'ସୀତା' ଅଧିକ ଶ୍ରେଷ୍ଠା ଅଟନ୍ତି । ଶଚୀ ଦେବଙ୍କ ମଧ୍ୟରେ ପୁରନ୍ଦରୀ ବୋଲାନ୍ତି, ମାତ୍ର ଏ ସୁନ୍ଦରୀଙ୍କ ମଧ୍ୟରେ ପୁରନ୍ଦରୀ ଅଟନ୍ତି । ( ତେଣୁ ଶଚୀଙ୍କଠାରୁ ଶ୍ରେଷ୍ଠା ହେଲେ ) ।

୪୧ଶ ପଦ—ଉମାଙ୍କର ଗୌରୀ ନାମ ବଚନରେ ଖ୍ୟାତ ଅଟେ, ମାତ୍ର ଏ ସୀତା ଗୌରୀଶିରୋମଣି ( କନ୍ୟା ଶିରୋମଣି ) ଅଟନ୍ତି । ତେଣୁ ଗୌରୀଙ୍କଠାରୁ ଶ୍ରେଷ୍ଠା ) । ପଣ୍ଡିତମାନେ ଲକ୍ଷ୍ମୀଙ୍କର ନାମ କମଳା ଦେଇଥାନ୍ତି, ମାତ୍ର ସେହିମାନେ ଏହାଙ୍କୁ କମଳାସାର ( କରସ୍ତ୍ରୀ—ଶ୍ରେଷ୍ଠାସ୍ତ୍ରୀ ) କହି ଅଛନ୍ତି । ( ସେହି ହେତୁରୁ ଲକ୍ଷ୍ମୀଙ୍କଠାରୁ ଶ୍ରେଷ୍ଠା ହେଲେ ) ।

ବନାଇବାରେ ପୁଣି ଯେ ପ୍ରତିମାଏ ।
ବପୁବନ୍ତ ହେଲା ଧ୍ୱଣଷର ପ୍ରାୟେ ।୪୨ ।
ବୋଲି ସ୍ତ୍ରିଗ୍ରି ମଧ୍ୟେ ସାର ଯେଉଁ ରମ୍ଭା ।
ବେଗେ ପାଦଦେଶ ଭେ ସେ ସରବମ୍ଭା ।୪୩ ।
ବିଶ୍ୱକର୍ମାଙ୍କୁ ସେନା ଗଢ଼ିଲେ ଦୁଇ ।
ବିଜ୍ଞାନିତ୍ୱ ବଦାଦଙ୍କୁ ସେ ଦେଖାଇ । ୪୪ ।
ବାଲୀ ଏକ ତଳେ ତଲୋତ୍ତମା ହେଲା ।
ବାଲୀ ଏକ ରତ ରୂପ ତାଙ୍କୁ ଦେଲା ।୪୫ ।
ବିଷ୍ଣୁ ମୋହିନୀରୂପକୁ ଧରିଥିଲେ ।
ବୃଷାସନ ଦମ୍ଭକୁ ହରିବେ ବଳେ ।୪୬ ।
ବାଦେ ଅଶେଷ ଲବଣ୍ୟଶିଗ୍ରି ଅଣି
ବନ୍ଧୁକାଲେ ଦେଖାଇଲେ ଶିଗ୍ରି ଅଣି ।୪୭ ।

---

୪୬ଶ ପଦ —ବୃଷାସନ—ମହାଦେବ ।
୪୭ଶ ପଦ—ଲବଣ୍ୟଶିଗ୍ରି—ଶୋଭାସଂପଦ । ଶିଗ୍ରି —ଲକ୍ଷ୍ମୀ ।

---

୪୨ଶ ପଦ—କାଠ ପାଠ ବାଟି ବାଟି ଯେପରି ଅକ୍ଷର ସୃଷ୍ଟି ହୋଇଯାଏ, ସେହିପରି ପ୍ରତିମା ଗଢ଼ୁ ଗଢ଼ୁ ଏ ଉର୍ମିଳା କନ୍ୟା ଶରୀର ଧାରଣ କଲେ କି ?

୪୩ଶ ପଦ—ସ୍ତ୍ରୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ବୋଲି ଯେଉଁ ରମ୍ଭା ଖ୍ୟାତ ଅଛନ୍ତି, ସେହି ରମ୍ଭା ଉର୍ମିଳାଙ୍କର ପାଦଦେଶରେ ଶରଣାପନ୍ନ ହୋଇ ଅଛନ୍ତି କି ? ( ତାଙ୍କ ଉରୁ ରମ୍ଭା ବୃକ୍ଷ ସଦୃଶ ଦେଖା ଯାଉଥିଲା ) ।

୪୪ଶ ଓ ୪୫ଶ ପଦ—ବ୍ରହ୍ମା ବିଶ୍ୱକର୍ମା ସହିତ ଶିଳ୍ପ ନୈପୁଣ୍ୟରେ ବାଦ ଲଗାଇବା ପାଇଁ ( କିଏ ଶ୍ରେଷ୍ଠ ଶିଳ୍ପୀ ଏହା ଦେଖାଇବା ପାଇଁ ) ଦୁଇଟି କନ୍ୟା ନିର୍ମାଣ କଲେ । ସେ ଦୁଇ କନ୍ୟା ତଲୋତ୍ତମା ଓ ରତି । ମାଳମା ତଲୋତ୍ତମାକୁ ତଳର ସହିତ ତୁଳନା କଲା । ( ମାଳମା ସହିତ ତଲୋତ୍ତମା ତଳେ ପ୍ରମାଣରେ ସୁଦ୍ଧା ସମାନ ହେବେ ନାହିଁ ) । ଅଉ ବାଲୀ ଭ୍ରୂଭଙ୍ଗୀ ରତିକୁ ରତିପ୍ରମାଣରେ ଗଣନା କଲା । ( ମାଳମା ଓ ଭ୍ରୂଭଙ୍ଗୀ ତଲୋତ୍ତମା ଓ ରତିଙ୍କଠାରୁ ବହୁତ ଗୁଣରେ ସୁନ୍ଦରୀ ଅଛନ୍ତି ) ।

୪୬ଶ ଓ ୪୭ଶ ପଦ—ବିଷ୍ଣୁ ମୋହିନୀ ରୂପକୁ ଧରି ( ସମୁଦ୍ର ମନ୍ଥନ ସମୟରେ ) ବଳାତ୍କାରରେ ମହାଦେବଙ୍କ ଧୈର୍ଯ୍ୟକୁ ଧ୍ୱଂସ କରିଥିଲେ । ( ତାହାର ପ୍ରତିଶୋଧ ନେବା କାରଣ ମହାଦେବ ) ବିଷ୍ଣୁଙ୍କର ଧୈର୍ଯ୍ୟ ଧ୍ୱଂସ କରିବା ପାଇଁ ଅଶେଷ ଲବଣ୍ୟର ଶୋଭା ଏକାଠି ଟୁଳ କରି ବନ୍ଧୁକାଳ ବସି ଲକ୍ଷ୍ମୀରୂପା ସୀତାଙ୍କୁ ନିର୍ମାଣ କରିଅଛନ୍ତି କି ?

ରାଜା-ଜ୍ୟେଷ୍ଠା ଶ୍ରେଷ୍ଠା କୋଟି ବ୍ରହ୍ମାଣ୍ଡରେ ।
ବିଭୂଷଣା ଅଛ ତିନି ତିନି ପୁରେ । ୪୮ ।
ବିଶ୍ୱମୋହନୀ ରୂପ ସୀତାଙ୍କୁ ସାଜି ।
ବର ହେଲେ ରାମରୂପେ ବିଷ୍ଣୁ ହେଜି । ୪୯ ।
ବର୍ଣ୍ଣୁଥିଲେ ନବ ପଦ ହୋଇ ଭବି ।
ବଇଷ୍ଣବ ଗୁଣେ ଗୁରୁପଦ ଭାବି । ୫୦ ।
ବଧୂ ଦେଖାକୁ ବହୁତ ଅଳଙ୍କାର ।
ବତା ହୋଇଥିଲା ତହୁଁ ନରେଶ୍ୱର । ୫୧ ।
ବନିତାରେ ମଥାମଣି ଦେଲେ ତୋଳି ।
ବନିତାରେ ଏ ପଦ ନ ବୋଲି ବୋଲି । ୫୨ ।
ବିଷ୍ଣୁ ଉରସ୍ଥ କୌସ୍ତୁଭ ନୃପମଣି ।
ବହି ଯେଉଁ ରାମ ନାମ ଗୁଣି ଭଣି । ୫୩ ।

---

୫୩ଶତ୍ ପଦ—ନୃପମଣି—ମଣିଶ୍ରେଷ୍ଠ ।

---

୪୮ଶ ପଦ—ଜ୍ୟେଷ୍ଠା କନ୍ୟା ସୀତା କୋଟିବ୍ରହ୍ମାଣ୍ଡରେ ଶ୍ରେଷ୍ଠା ଅଟନ୍ତି । ଅନ୍ୟ ତିନି କନ୍ୟା ତିନିପୁରର ( ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳର ) ମଣ୍ଡନ ସ୍ୱରୂପା ଅଟନ୍ତି ।

୪୯ଶତ୍ ପଦ—ସୀତା ବିଶ୍ୱମୋହନୀ ରୂପକୁ ସାଜି ଅଛନ୍ତି ( ଏହା ଦ୍ୱାରା ସାକ୍ଷାତ୍ ଲକ୍ଷ୍ମୀ ବୋଲି ସୂଚନା ଦିଆ ଯାଉଛି ) । ଏହା ଜାଣିପାରି ବିଷ୍ଣୁ ମନୋହର ରାମ ରୂପରେ ଅବତୀର୍ଣ୍ଣ ହୋଇ ତାଙ୍କର ବର ହେଲେ ।

୫୦ଶତ୍ ପଦ—ରାମ ସୀତାଙ୍କର ଗୁରୁପାଦ ସ୍ମରଣ କରି ତାଙ୍କର ଶୋଭା ବର୍ଣ୍ଣନା କରୁଥିଲେ ବିଷ୍ଣୁ ଭକ୍ତ କବିମାନଙ୍କର ମନରେ ନୂତନ ଭାବମାନ ସ୍ଫୁରିତ ହୁଏ ( ଅର୍ଥାତ୍ ଯେତେ ବର୍ଣ୍ଣନା କଲେ ହେଁ ତାହା ଶେଷ ହୁଏ ନାହିଁ, ତେଣୁ ଆଉ ବେଶୀ ବର୍ଣ୍ଣନା କରିବାକୁ ନବଳୁଅଛି ) ଅଥବା—ବିଷ୍ଣୁଭକ୍ତ ବ୍ୟକ୍ତି ଏହି ଗୁରୁପଦ ଗୀତ ( ବିଷ୍ଣୁ ମୋହନୀ ରୂପକୁ ଧରିଥିଲେ—ଠାରୁ )ର ଭାବ ଚିନ୍ତା କଲେ ବିଷ୍ଣୁ ପଦକୁ ନିଶ୍ଚୟ ଲାଭ କରିବ ।

୫୧ଶତ୍ ଓ ୫୨ଶତ୍ ପଦ—ବଧୂମାନଙ୍କ ଦେଖା ନିମନ୍ତେ ( ସେମାନଙ୍କ ମୁହଁ ଦେଖି ଦେବା ନିମନ୍ତେ ) ବହୁତ ଅଳଙ୍କାର ଆସି ଥୁଆ ହୋଇଥିଲା । ତା ମଧ୍ୟରୁ ଦଶରଥ ସୀତାଙ୍କୁ ସ୍ତ୍ରୀମାନଙ୍କ ମଧ୍ୟରେ ଏ ଶିରୋମଣି'—ଏହା ବିଚାର କରି ମନଃ ପ୍ରକାଶରେ କିଛି ନ କହି ମଥାମଣି ଅଳଙ୍କାରକୁ ଦେଲେ ।

୫୩ ଓ ୫୪ଶ ପଦ—( ଦଶରଥ ସୀତାଙ୍କୁ ମଥାମଣି ଦେବାରୁ ମନେ ହୁଏ ) କୌସ୍ତୁଭ ନାମକ ରତ୍ନ ଯୋଗରେ କ[illegible] ଉଦ୍‌ବେଗ୍ୟୁ ହୋଇ ରାମ

ବିଚ୍ଛୁର କି ହୁଅନ୍ତା ସେ ମୂର୍ତ୍ତି ପାଟେ ।
ବ୍ୟାଜ ଏ ମଣିରୂପେ ପ୍ରକଟେ ଗୁପ୍ତେ । ୫୪ ।
ବକ୍ଷେ ବିହରିବ ପୁଣି କାଳାନ୍ତରେ ।
ବଳେ ଏବେ ସୀତାରାମ ଭାବନାରେ । ୫୫ ।
ବିଶଙ୍କିତ ଉପେନ୍ଦ୍ର ଭଞ୍ଜ ମନେ ।
ବିରଚନା ବିସ୍ତରିବ ସାଧୁଜନେ । ୫୬ ।
ବିଭୂଷିତ କରୁ ଶିରେ ଶିଳ୍ପକାରୀ ।
ବିବିଧରେ ଉତ୍ପ୍ରେକ୍ଷାକୁ ଜାତ କରି । ୫୭ ।
ବିମଳନ ନୀଳୋତ୍ପଳଦଳେ ଜଳ ।
ବିପ୍ରୁଷ କି ପାଣ୍ଡୁତାରେ ତଳ ତଳ । ୫୮ ।

---

୫୪ଶତ୍ ପଦ—ବିଚ୍ଛୁର—ବିଯୁକ୍ତ ।
୫୮ଶତ୍ ପଦ—ଜଳବିପ୍ରୁଷ—ଜଳବିନ୍ଦୁ ।

---

ନାମ କୀର୍ତ୍ତନ କରିବାରୁ କାଳକ୍ରମେ ମଣି ରୂପରେ ବିଷ୍ଣୁଙ୍କର ବକ୍ଷସ୍ଥଳରେ ସ୍ଥାନ ପାଇଲା । (ତେଣୁ ତାର ନାମ କୌସ୍ତୁଭମଣି ହୋଇଅଛି ) । ସେହି ରାମ ବର୍ତ୍ତମାନ ଅବତାର ହୋଇଅଛନ୍ତି । ତାଙ୍କଠାରୁ ବିଚ୍ଛେଦ ନ ହେବା ନିମନ୍ତେ ସେ ଗୁପ୍ତ-ରୂପରେ ଆସି ଏଠାରେ (ଏ ମଥାମଣି ରୂପରେ) ଉପସ୍ଥିତ ହେଲା କି ?

୫୫ଶତ୍ ପଦ—ପୁଣି କାଳକ୍ରମେ ସେ ମଣି ରାମଙ୍କ ବକ୍ଷରେ ବିହାର କରିବ । (ଲଙ୍କାରୁ ହନୁମାନ ସୀତାଙ୍କର ସଙ୍କେତରୂପେ ଆଣି ରାମଚନ୍ଦ୍ରଙ୍କୁ ଦେଲେ, ରାମ ତାକୁ ବକ୍ଷରେ ଧରି ସୀତାଙ୍କ ବିଚ୍ଛେଦ ଯନ୍ତ୍ରଣା ଭୁଲିବେ ) । ଏହା ଭାବି ସେ ବର୍ତ୍ତମାନ ରାମଚନ୍ଦ୍ରଙ୍କୁ ଛାଡ଼ି ସୀତାଙ୍କ ପାଖରେ ରହିଲା ।

୫୬ଶତ୍ ପଦ— ଉପେନ୍ଦ୍ର ଭଞ୍ଜ କବି ମନରେ ( ମଥାମଣି ସମ୍ବନ୍ଧରେ ) ଯେଉଁ ଭାବନା ଖେଳିଲା, ସେ ତାକୁ ପ୍ରକାଶ କଲେ । ସେ କଥା ସାଧୁଜନମାନେ ହୃଦୟରେ ବିଚାର କରିବେ ।

୫୭ଶତ୍ ପଦ—କେଶକାରିଣୀ ଯେ ମଣିକୁ ସୀତାଙ୍କ ଶିରରେ ବିଭୂଷିତ କରନ୍ତେ ତାହା ନାନାପ୍ରକାର ଉପମାକୁ ଜାତ କଲା ।

୫୮ଶତ୍ ପଦ—ନିର୍ମଳ ନୀଳପଦ୍ମର ପାଣ୍ଡୁତାରେ ଜଳ ବିନ୍ଦୁ ପଡ଼ି ତଳ ତଳ ହେଉଅଛି କି ? ( ସୀତାଙ୍କ ମସ୍ତକରେ ସେ ମଣି ଜ୍ୱଳୁଥିବାର ଦେଖି ଏ ଭାବନା ଆସିଲା । ଜଳବିନ୍ଦୁ ଶୁକ୍ଳବର୍ଣ୍ଣ ଓ ମଣି ଶୁକ୍ଳବର୍ଣ୍ଣ । )

ବୃଷା-ନୀଳମଣି-ବୃନ୍ଦ ପ୍ରଭ ଗୌର ।
ବକ୍ରୁଠାରୁ କରି କବା କୋଳେ ଧରି । ୫୯ ।
ବକ୍ଷୁଳତ କାଳୀମଣି କାଳିନ୍ଦୀରେ ।
ବାଣ କୁଅଁତେ କବା ଗୃହଲ୍ୟ ଧରେ । ୬୦ ।
ବଦିତ ଯେ ସନ୍ଧ୍ୟାକାଳେ ହେଲ ଶସ୍ତ ।
ବହ୍ନାସ୍ବସେ ଏକ କାବ୍ୟ ଦିବ୍ୟ ଭାସ୍ ।
କାରକାନ୍ତ ଭେଦି ଇନ୍ଦୁ ଉଦେ ତର୍କି ।
କାହାରଙ୍କୁ ଜ୍ୟୋତ୍ସ୍ନାରେ କରଣି କି ? ୬୧ ।
କାଳା ଅଶେଷ ଶୋଭା କହିବାପାଇଁ ।
କାଞ୍ଚିବନ୍ଧ ହୋଇ ପ୍ରଭା ଯଶ ଯାଇ । ୬୩ ।
ବଧୂ ତନିକି ଯେ ସ୍ତ୍ରୀ ସ୍ବରୂପ ଘେନ ।
ବଟୋଇଲେ ଅମୂଲ୍ୟ ରତନ ତନି । ୬୪ ।

---

୫୯ତମ ପଦ—ବୃଷା ନୀଳମଣିବୃନ୍ଦ—ଇନ୍ଦ୍ରନୀଳମଣି ସମୂହ । ବକ୍ରୁଠାରୁ—ସ୍ବର୍ଣ୍ଣଠାରୁ ।
୬୧ତମ ପଦ—ବହ୍ନାସ୍ବସ—ଆକାଶ । କାବ୍ୟ—ଶୁକ୍ରତାରା ।
୬୨ତମ ପଦ—କାରକାନ୍ତ—ମେଘ । ଇନ୍ଦୁ—ଚନ୍ଦ୍ର ।

---

୫୯ତମ ପଦ—ପୁଣି ମନେ ହୁଏ ଇନ୍ଦ୍ର ନୀଳମଣି ସମୂହ ସ୍ବର୍ଣ୍ଣଠାରୁ ଜ୍ୟୋତ ଗୌର କରି ନିଜ କୋଳରେ ଧାରଣ କରି ଅଛନ୍ତି କି ?

୬୦ତମ ପଦ—ଯମୁନାର କୂଅଁତ ଉପରେ ପ୍ରଜ୍ଜ୍ୱଳିତ କାଳୀୟ ସର୍ପର ମଣି ଚଞ୍ଚଳ ଗତରେ ଭାସୁଅଛି କି ? [ ସୀତାଙ୍କ କୂଅଁତ ଦେଶଦାମ ସହିତ ଯମୁନାର ଲହରୀ ଓ ମଥାମଣି ସହିତ କାଳୀୟ ସର୍ପର ମଣି ଉପମିତ । ]

୬୧ତମ ପଦ—ଅର୍ଦ୍ଧିତାସୁ ଉଜ୍ଜ୍ୱଳ ଶୁକ୍ରତାରା ସନ୍ଧ୍ୟାକାଳୀନ ଆକାଶରେ ପ୍ରକାଶିତ ହେଲା ପ୍ରାୟ ଦିଶେ ।

୬୨ତମ ପଦ—ମେଘକୁ ବିଦାରଣ କରି ଚନ୍ଦ୍ର ଉଦିତ ହୋଇଅଛନ୍ତି କି ? ଗାଢ଼ ଜଳକର୍ଣ୍ଣ କେଶ ମେଘ ସହିତ ଉପମିତ ହୋଇଅଛି ) । ତେଣୁ ଚନ୍ଦ୍ରର ଜ୍ୟୋତ୍ସ୍ନାଚ୍ଛଳରେ ମଣିର ଜ୍ୟୋତ ପ୍ରକାଶିତ ହେଉଅଛି ।

୬୩ତମ ପଦ—ଦେଶର ଅବର୍ଣ୍ଣନୀୟ ଶୋଭାର ଯଶକୁ ପ୍ରଚାର କରିବା ପାଇଁ, ସେ ନିଜ ପ୍ରଭାକୁ ଦୂତ କରି ପ୍ରେରଣ କରୁଅଛନ୍ତି କି ?

୬୪ତମ ପଦ—ଦଶରଥ ଅନ୍ୟ ବଧୂ ତନିଙ୍କୁ ସ୍ତ୍ରୀ ରତ୍ନ ମନେ କରି ସେମାନଙ୍କୁ ତନିଗୋଟି ଅମୂଲ୍ୟ ରତ୍ନ ଦେଲେ ।

ବିଲମ୍ବାଇଲେ ହାର ତାହାର ହୃଦେ ।
ସ୍ତନ୍ୟେରି ପାଶେ କି ଅଗସ୍ତ୍ୟ ଉଦେ । ୬୫ ।
ବାନ୍ଧି ମଣି ବାହୁରେ କାହାର ଆଳି ।
ବନଜବୃନ୍ତ ନାଳମୂଳେ କି ବା ଅଳି । ୬୬ ।
ବିଭୂଷଣେ କଲେ କାନ୍ତା କଣ୍ଠ ଶୋଭା ।
ବୋଳ ପାନର ଫୁଟି ଦିଶିଲା ପ୍ରଭା । ୬୭ ।
ଚାହୁଡ଼ାଇଲେ କନ୍ୟା ସୈରନ୍ଧ୍ରୀବୃନ୍ଦ ।
ବୋଧିଗଲା ଚକୋର ଦ୍ୱିତୀୟା ଚନ୍ଦ୍ର । ୬୮ ।

---

୬୮ତମ ପଦ—ସୈରନ୍ଧ୍ରୀବୃନ୍ଦ—କେଶକାରିଣୀମାନେ ।

---

୬୫ତମ ପଦ—ସେହି ଜନରତ୍ନ ମଧ୍ୟରୁ ସଖୀମାନେ କେଉଁ କନ୍ୟାର ହୃଦୟରେ ଗୋଟିଏ ରତ୍ନ ଲମ୍ବାଇ ଦେଲେ । ତାହା ସ୍ତନ୍ୟଗିରି ପାଶରେ ଅଗସ୍ତ୍ୟ ନକ୍ଷତ୍ର ଉଦିତ ହେଲା ପ୍ରାୟ ଦିଶିଲା । ( ଅଗସ୍ତ୍ୟ ନକ୍ଷତ୍ର ରକ୍ତବର୍ଣ୍ଣ; ମଣି ତାହା ସହିତ ତୁଳିତ ହୋଇଥିବାରୁ ଏହା ପଦ୍ମରାଗ ମଣି ବୋଲି ଜଣାଯାଉଛି) ।

୬୬ତମ ପଦ—ପୁଣି ସଖୀ କେଉଁ କନ୍ୟାର ମଣିବନ୍ଧରେ ଗୋଟିଏ ରତ୍ନ ବାନ୍ଧି ଦେଲା । ତାହା ପଦ୍ମନାଳ ମୂଳରେ ବସିଥିବା ଭ୍ରମରର ଶୋଭାକୁ ଧାରଣ କଲା । (ଭ୍ରମର ନୀଳବର୍ଣ୍ଣ—ତେଣୁ ଏହା ନୀଳମଣି ବୋଲି ଜଣାଯାଏ ) ।

୬୭ତମ ପଦ—କେଉଁ କନ୍ୟାର କଣ୍ଠରେ ସଖୀମାନେ ରତ୍ନ ଭୂଷିତ କଲେ । ପାନର ବୋଳ କଣ୍ଠରେ ଫୁଟି ଦେଖାଗଲା ପ୍ରାୟ ତାହା ଶୋଭା ପାଇଲା । (ପାନ ବୋଳ ସହିତ ତୁଳନା କରାଯିବାରୁ ଓ କଣ୍ଠର ଭୂଷଣ ହୋଇଥିବାରୁ ତାହା ପ୍ରବାଳ ବୋଲି ଅନୁମିତ ହୁଏ । )

୬୮ତମ ପଦ—ରତ୍ନ ଭୂଷିତ କଲା ପରେ କେଶକାରିଣୀମାନେ କନ୍ୟାମାନଙ୍କୁ ଅନ୍ତଃପୁରକୁ କାହୁଡ଼ାଇ ନେଲେ । ଦ୍ୱିତୀୟା ଚନ୍ଦ୍ର ଚକୋର ପକ୍ଷୀକୁ ବୋଧ ଦେଇଗଲା ପ୍ରାୟ ପ୍ରତୀତ ହେଲା । ( ଦ୍ୱିତୀୟା ଚନ୍ଦ୍ର ଅଳ୍ପ ସମୟ ଦେଖା ଦେଇ ଲୁଚିଯାଏ । କନ୍ୟାମାନେ ଅଳ୍ପ ସମୟ ରହି ବରଙ୍କ ନେତ୍ରକୁ ମୋହିତ କରି ପୁଣି ଲୁଚିଗଲେ )।

ଝଲଷିତ ଏହୁ ଲକ୍ଷ ଦରଶନେ ।
ଝଟୁ୍ୟ ଟିଙ୍କିବା କାନ୍ତି ସରସନେ । ୬୯ ।
ବହୁ ଇକାର ନିଜ ନାମରେ କହୁ ।
ବଶିଷ୍ଟ ଯେ ସର୍ବ କନ୍ୟାଗଣେ ଏହୁ । ୭୦ ।
କାମଦେବ ଯେ ସଫଳ ହେଲ ବୋଲେ ।
କାମଦେବ ଯା କିନେନ ବହୁଥିଲେ । ୭୧ ।
ବିଚକ୍ଷଣଙ୍କ ମନ ହୋଇଲା ତୋଷ ।
ବାର ଅଧିକ ବିଂଶ ଛନ୍ଦେ ଶେଷ । ୭୨ ।

---

୬୯ତମ ପଦ—ସେହି କନ୍ୟାମାନଙ୍କ ଦର୍ଶନରେ ଏହି ଚନ୍ଦ୍ର ଚକୋର ଲକ୍ଷ ଉପଚିତ ହେଲା । ବିଦ୍ୟୁତ୍ ପ୍ରାୟ ସେମାନଙ୍କ କ୍ୟାଙ୍ଗ ଝଟକି ଅଳ୍ପ ସମୟ ପରେ ଅପସାରିତ ହେଲା । ( ବିଦ୍ୟୁତ୍ କ୍ଷଣପ୍ରଭା—ସେହିପରି ଏମାନଙ୍କ ଉଜ୍ଜ୍ୱଳ କାନ୍ତି କ୍ଷଣକାଳ ରହି ଦୂର ହୋଇଗଲା । )

୭୦ତମ ପଦ—ସେ ସମୟରେ ବଶିଷ୍ଟ ନିଜ ନାମରେ ଇକାର ବିଧାନ କରି ( ବଶିଷ୍ଠ ) କହିଲେ, ସମସ୍ତ କନ୍ୟା ମଧ୍ୟରେ ଏମାନେ ବଶିଷ୍ଠ ଅର୍ଥାତ୍ ପ୍ରଧାନ ।

୭୧ତମ ପଦ—କାମଦେବ ଭଳି କହିଲେ, "ମହାଦେବ ଯାହା କିନେତ୍ର ଧାରଣ କରିଅଛନ୍ତି—ତା ସଫଳ ହେଲା । ( ସେ ତ୍ରିନେତ୍ରରେ ଦେଖି ସନ୍ତୋଷ ଲାଭ କରିବେ—ଅନ୍ୟମାନେ ଦୁଇ ନେତ୍ରରେ ସେପରି ଦେଖି ପାରିବେ ନାହିଁ ) ।

୭୨ତମ ପଦ—ସେ କନ୍ୟାଙ୍କ ଶୋଭା ଦେଖି ପଣ୍ଡିତମାନଙ୍କ ମନ ତୋଷ ହେଲା । ଏ ଛନ୍ଦ ବାସ୍ତବ ପଦରେ ଶେଷ ହେଲା ।

---

କଟକ ନବଭାରତ ପ୍ରେସରେ ଶ୍ରୀ ବନମାଳୀ ମିଶ୍ରଙ୍କ ଦ୍ୱାରା
ମୁଦ୍ରିତ । ୧୯୪୯

